ଓଁ ପରଂବ୍ରହ୍ମ ଗୁରୁ ଶ୍ରୀଗୁରୁ ଅଚ୍ୟୁତ ଗୋଲୋକନାଥାୟ ନମଃ ।



ବ୍ୟାସଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱିତା ।
ପ୍ରଣୀତଂ ପ୍ରଭୁଦତ୍ତେନ ମାଲା 'ଭାଗବତୀ କଥା' ॥

: ଶ୍ରୀ ହରି :

# ଭାଗବତ କଥା

( ସପ୍ତଚତ୍ୱାରିଂଶତ୍ ଖଣ୍ଡ )


ଲେଖକ

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା

ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ଅନୁବାଦ

ଶ୍ରୀ ଉପେନ୍ଦ୍ର ନାଥ ହୋତା



ପ୍ରକାଶକ



ଅର୍ଦ୍ଧ ଶତାବ୍ଦୀର ସନ୍ଦେଶ

ଭାଗବତ କଥା
( ସପ୍ତଚତ୍ୱାରିଂଶତ ଭାଗ )

ପ୍ରକାଶକ :

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ—୭୫୩୦୦୨

ପ୍ରଥମ ସଂସ୍କରଣ   ୧୯୯୪

ପ୍ରକାଶନ ଉପଦେଷ୍ଟା ଓ ସମ୍ପାଦନା
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ମୁଦ୍ରଣ :
ଆନନ୍ଦ ପ୍ରେସ୍
ପିଠାପୁର, କଟକ -୧

ମୂଲ୍ୟ—ଟ ୩୦-୦୦ ମାତ୍ର

BHAGABATA KATHA
47th Part

Publisher :
Cuttack Students' Store
Cuttack—753002

Publication Adviser :
Sri N. P. Misra

First Edition :—1994

Printer :
Anand Press, Pithapur, Cuttack-1

Price :
Rs. 30 00 only

# ମୁଖବନ୍ଧ

ପୃଥିବୀର ଶ୍ରେଷ୍ଠ ଭାଗବତ-ପ୍ରବକ୍ତା ହେଉଛନ୍ତି ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ । ସମଗ୍ର ବିଶ୍ୱ ସାହିତ୍ୟରେ ବ୍ୟାସଦେବକୃତ ଶ୍ରୀମଦ୍ ଭାଗବତ ଏକ ଅନବଦ୍ୟ ଅଧ୍ୟାତ୍ମ ଭକ୍ତି ଗ୍ରନ୍ଥ ରୂପେ ସ୍ୱୀକୃତ, ଗୃହୀତ । ଭାରତୀୟ ମନୀଷୀ-ଗଣ ଏହି ମହାନ୍ ଗ୍ରନ୍ଥର ଯେତେ ଅନୁବାଦ, ଭାଷ୍ୟ, ଟୀକା, ଟିପ୍ପଣୀ ଆଦି କରିଯାଇଛନ୍ତି ସେ ସମସ୍ତ ଭିତରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କର ଓଡ଼ିଆ 'ଶ୍ରୀମଦ୍ ଭାଗବତ' ଆମ ଓଡ଼ିଆଙ୍କ ପାଇଁ ସର୍ବଶ୍ରେଷ୍ଠ, ସର୍ବୋତ୍କୃଷ୍ଟ । ମହାନ ଋଷି ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ ଶ୍ରୀମଦ୍ ଭାଗବତକୁ ଅତି ସରଳ ଭାବରେ ଅନେକ ମର୍ମସ୍ପର୍ଶୀ ଉଦାହରଣ ସହି ବୁଝାଇ ବୁଝାଇ ପ୍ରବଚନ ଦେଇଛନ୍ତି ହିନ୍ଦୀ ଭାଷାରେ ଏବଂ ପରବର୍ତ୍ତୀ କାଳରେ ଏହି ପ୍ରବଚନ ସମୂହ ପ୍ରକାଶ ପାଇଛି ଶ୍ରୀ ଭାଗବତ-ଦର୍ଶନ—ଭାଗବତ-କଥା ୬୦ ଖଣ୍ଡ ପୁସ୍ତକରେ । ଆମ 'ଭାଗବତ କଥା' ହେଉଛି ଏହାର ଅନୁବାଦ ମାତ୍ର । ବର୍ତ୍ତମାନ ଏହି ଅନୁବାଦ ଗ୍ରନ୍ଥ ଓଡ଼ିଆଙ୍କ ଘରେ ଘରେ ପରିଚିତ ଓ ଆଦୃତ ।

ବିଭୁକୃପା ବିନା ଭାଗବତ କଥା ପ୍ରକାଶ ପାଇବା ସମ୍ଭବ ହୋଇପାରନ୍ତା ନାହିଁ । ଆଜି ଏହି କଥାର ୪୭ତମ ଭାଗ ପ୍ରକାଶ ପାଇଛି । ଏହି ଖଣ୍ଡରେ ଭଗବାନଙ୍କର ମୁଖ୍ୟ ମୁଖ୍ୟ ବିବାହ ପ୍ରସଙ୍ଗମାନ ବର୍ଣ୍ଣନା କରାଯାଇଛି । ସର୍ବୋତ୍କୃଷ୍ଟ, ପାଠକ ଓ ଶ୍ରୋତାଙ୍କ ସକଳ କଷ୍ଟ ଖଣ୍ଡନକାରୀ ସ୍ୟମନ୍ତକମଣି ଉପାଖ୍ୟାନ ମଧ୍ୟ ଏଥିରେ ସ୍ଥାନ ପାଇଛି । ପ୍ରାୟ ପ୍ରତ୍ୟେକ ଅଧ୍ୟାୟରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତର ଯଥାର୍ଥ ପଦ୍ୟାବଳୀ ମଧ୍ୟ ସନ୍ନିବିଷ୍ଟ କରାଯାଇଛି । ପାଠକଙ୍କ ମନରେ ଏହା ଅଧିକ ଅଗ୍ରହ ସୃଷ୍ଟି କରିବ ବୋଲି ଆଶା ।

ବିନୀତ

କଟକ — ନୃସିଂହ ପ୍ରସାଦ ମିଶ୍ର

ତା ୧୫ । ୧୨ ୯୪ — ସମ୍ପାଦକ

# ସୂଚୀ

ବିଷୟ | ପୃଷ୍ଠା


| | |
|---|---|
| ୧ । ଜରାସନ୍ଧର ମଥୁରା ଆକ୍ରମଣ | ୧ |
| ୨ । ଜରାସନ୍ଧର ସତରଥର ଯୁଦ୍ଧ | ୯ |
| ୩ । କାଳ ଯବନର ଆକ୍ରମଣ | ୧୬ |
| ୪ । କାଳ ଯବନର ବିନାଶ | ୨୫ |
| ୫ । ମହାରାଜ ମୁଚୁକୁନ୍ଦଙ୍କ ପରିଚୟ | ୩୦ |
| ୬ । ମୁଚୁକୁନ୍ଦ ଓ ମାଧବ | ୩୫ |
| ୭ । ମୁଚୁକୁନ୍ଦଙ୍କ ସ୍ତୁତି | ୩୯ |
| ୮ । ଜରାସନ୍ଧର ଅଷ୍ଟାଦଶବାର ଆକ୍ରମଣ | ୪୭ |
| ୯ । ଶ୍ରୀ ରୁକ୍ମିଣୀ ଚରିତ | ୫୨ |
| ୧୦ । ଶ୍ରୀ ରୁକ୍ମିଣୀଙ୍କର ଭଗବାନଙ୍କୁ ସନ୍ଦେଶ | ୬୦ |
| ୧୧ । ଶ୍ରୀ ରୁକ୍ମିଣୀଙ୍କର ପ୍ରେମପତ୍ର | ୬୮ |
| ୧୨ । କୁଣ୍ଡିନପୁରରେ ଶ୍ରୀହରି | ୭୪ |
| ୧୩ । ରୁକ୍ମିଣୀଙ୍କର ନିରାଶାରେ ଆଶା | ୮୩ |
| ୧୪ । ରୁକ୍ମିଣୀଙ୍କ ଗୌରୀ ପୂଜା | ୮୯ |
| ୧୫ । ରୁକ୍ମିଣୀ ହରଣ ପ୍ରସଙ୍ଗ | ୯୫ |
| ୧୬ । ରୁକ୍ମୀ-ଶ୍ରୀକୃଷ୍ଣ ଯୁଦ୍ଧ | ୧୦୩ |
| ୧୭ । ଦ୍ୱାରକାରେ ବିବାହ ଉତ୍ସବ | ୧୧୩ |
| ୧୮ । ପ୍ରଦ୍ୟୁମ୍ନଙ୍କର ଜନ୍ମ | ୧୧୮ |
| ୧୯ । ସ୍ୟମନ୍ତକୋପାଖ୍ୟାନ | ୧୨୫ |
| ୨୦ । ଗୋବିନ୍ଦ କଲେ ଏଡ଼େ କର୍ମ | ୧୩୪ |
| ୨୧ । ଜାମ୍ବବତୀ ଓ ଭଗବାନଙ୍କ ବିବାହ | ୧୪୨ |
| ୨୨ । ସତ୍ୟଭାମା ଓ ଭଗବାନଙ୍କ ବିବାହ | ୧୫୨ |
| ୨୩ । ସତ୍ରାଜିତର ହତ୍ୟା | ୧୫୯ |
| ୨୪ । ଶତଧନ୍ୱା ବଧ | ୧୬୭ |
| ୨୫ । ଅକ୍ରୂର ଓ କୃତବର୍ମାଙ୍କ ପଳାୟନ | ୧୭୪ |
| ୨୬ । ସ୍ୟମନ୍ତକୋପାଖ୍ୟାନର ସମାପ୍ତି | ୧୮୧ |
| ୨୭ । ଭଗବାନଙ୍କର ଚତୁର୍ଥ ବିବାହ | ୧୮୮ |
| ୨୮ । ଭଗବାନଙ୍କର ପଞ୍ଚମ ଓ ଷଷ୍ଠ ବିବାହ | ୨୦୧ |






ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

# ଜରାସନ୍ଧର ମଥୁରା ଆକ୍ରମଣ

ଅସ୍ତିଃ ପ୍ରାପ୍ତିଶ୍ଚ କଂସସ୍ୟ ମହିଷ୍ୟୌ ଭରତର୍ଷଭ ।
ମୃତେ ଭର୍ତ୍ତରି ଦୁଃଖାର୍ତ୍ତେ ଈୟତୁଃ ସ୍ମ ପିତୁର୍ଗୃହାନ୍ ॥
ପିତ୍ରେ ମଗଧରାଜାୟ ଜରାସନ୍ଧାୟ ଦୁଃଖିତେ ।
ବେଦୟାଂଚକ୍ରତୁଃ ସର୍ବମାତ୍ମବୈଧବ୍ୟକାରଣମ୍ ॥ ※

( ଶ୍ରୀ ଭା ୧୦ସ୍କ, ୫୦ ଅ ୧-୨ ଶ୍ଲୋକ )

## ଛପ୍ପୟ

ଜରାସନ୍ଧ-କୀ ସୁତା ଅସ୍ତି ଅରୁ ପ୍ରାପ୍ତି ସୟାନୀ ।
ପରମ ସୁନ୍ଦରୀ ସୁଘର କଂସକୀ ଦୋଉ ରାନୀ ॥
କଂସ ମରତ ସସୁରାଲ ତ୍ୟାଗି ପିତୁ ଘର ଅପନାୟୋ ।
ଜରାସନ୍ଧ ଢିଂ ସକଲ କଂସ କୋ ବୃତ୍ତ ବନାୟୋ ॥
ସୁନତ କୁପିତ ଅତି ଖଳ ଭୟୋ, ଭାରୀ ସେନ ସଜାଇକେଂ ।
ଆୟୋ ଯଦୁକୁଲ ନାଶ ହିତ, ଅତି ବଲବଶ ଗରବାଇକେଂ ॥

---

※ ଏବେ ହେ ଶୁଣ ନରନାଥ । ରାମ ଗୋବିନ୍ଦଙ୍କ ଚରିତ ॥
କୃଷ୍ଣ ଯେ କଂସକୁ ମାଇଲେ । ତାହାର ବେନି ନାରୀ ଥିଲେ ॥
ଅସ୍ତି ପ୍ରାପତି ନାମେ ଦୁଇ । ସ୍ୱାମୀ ମରଣେ ଦୁଃଖ ପାଇ ॥
ବିଧବା କଷ୍ଟେ ଗୁରୁଚିନ୍ତା । ଜରାସନ୍ଧର ସେ ଦୁହିତା ॥ × × ×
ମନେ ଅନେକ ଦୁଃଖ କରି । ଯାଇ ମିଳିଲେ ଜରାପୁରୀ ॥ × × ×
କାନ୍ଦି କହିଲେ ପିତା ଆଗେ । ନିଜ ଜନନୀ ଯେନି ସଙ୍ଗେ ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୫୪)

ଭଗବାନଙ୍କର ଯେତେବେଳେ ଯେଉଁ କାର୍ଯ୍ୟ କରିବା ପାଇଁ ଇଚ୍ଛା ହୁଏ, ସେତେବେଳେ ସେ ସେହିଭଳି କାରଣ ସୃଷ୍ଟି କରିଦିଅନ୍ତି । ଲୋକମାନେ ତାହା ବୁଝି ନ ପାରି ବୃଥାରେ ତାଙ୍କୁ ଦୋଷ ଦେଇ କହିଥାଆନ୍ତି, ଅମୁକ ଏପରି କରିବାରୁ ଏହା ହେଲା, ଅମୁକ ସେପରି କରି ନଥିଲେ ଏପରି ହୋଇ ନ ଥାନ୍ତା । କରିବା ଲୋକ ତ ଯାହା କରିସିବାର ଥିଲା, ତାହା କଲା, ଏପରି ହେବାର ନ ଥିଲେ ସେ ତାହା କରୁ-ଥାଆନ୍ତା ଅବା କାହିଁକି ? ଭଗବାନ କ୍ରୀଡ଼ାପ୍ରିୟ । ସେ ସୁର ଓ ଅସୁର ପ୍ରତ୍ୟେକଙ୍କୁ ସୃଷ୍ଟି କରିଅଛନ୍ତି । ସେ ଯେତେବେଳେ ଯାହାଙ୍କ ସହିତ କ୍ରୀଡ଼ା କରିବାକୁ ଚାହାନ୍ତି, ସେତେବେଳେ ତାଙ୍କୁ ବଳ ପ୍ରଦାନ କରିଥାଆନ୍ତି । ଅସୁରମାନେ ବଳବାନ ହୋଇ-ଗଲେ, ଅପରାଜିତ ଭଗବାନଙ୍କୁ ମଧ୍ୟ ପରାଜିତ କରିଦିଅନ୍ତି । ଭଗବାନଙ୍କୁ କିଏ ପୁଣି ପରାଜିତ କରିବ ? କିନ୍ତୁ କ୍ରୀଡ଼ା କମିଁ ସେ ନର-ନାଟ୍ୟ ଅଭିନୟ କରନ୍ତି । ବଳହୀନକୁ ବଳବାନ୍ ଓ ବଳବାନ୍‌କୁ ବଳହୀନ କରିବା ହେଉଛି ତାଙ୍କର ବିନୋଦ ।

ସୂତ କହିଲେ—"ମୁନିଗଣ ! ଅକ୍ରୂର ଯେତେବେଳେ ହସ୍ତିନାପୁରରୁ ପାଣ୍ଡବଙ୍କ ସମାଚାର ନେଇ ଆସିଲେ, ଭଗବାନ ଚିନ୍ତା କରିବାକୁ ଲାଗିଲେ ଯେ ଏବେ ଯୁଦ୍ଧ ଆବଶ୍ୟକ । ପୃଥିବୀରେ ଖଳ ଜନସଂଖ୍ୟା ବହୁତ ବଢ଼ିଗଲାଣି । ସେମାନେ ସ୍ୱେଚ୍ଛାଚାରୀ ହୋଇ ପଡ଼ିଲେଣି । କିନ୍ତୁ ଯୁଦ୍ଧ ହେବ କିପରି ? ସହଜ କାହାରି ଉପରେ ତ ଆକ୍ରମଣ କରିହେବ ନାହିଁ ! କୌଣସି ଲୋକ ଭଗବାନଙ୍କୁ ନିଜର ଶତ୍ରୁ ବୋଲି ଭାବିପାରନ୍ତି, କିନ୍ତୁ ସେ କାହାରି ଶତ୍ରୁ ନୁହନ୍ତି । ସେ ପ୍ରାଣୀମାନଙ୍କର ବନ୍ଧୁ ।"

ଶୌନକ ପଚାରିଲେ—"ହେ ସୂତ ! ଭଗବାନ ଯଦି ପ୍ରାଣୀମାନଙ୍କର ବନ୍ଧୁ, ତାହାହେଲେ କଂସ ଓ ତାହାର ଅନୁଗାମୀମାନଙ୍କୁ ସେ ମାରୁଥିଲେ କାହିଁକି ?"

ସୂତ କହିଲେ—"ଭଗବନ ! ଶ୍ରୀକୃଷ୍ଣ କୌଣସି ଦ୍ୱେଷବଶତଃ ସେମାନଙ୍କୁ ମାରି ନ ଥିଲେ । ସେମାନଙ୍କ କଲ୍ୟାଣ ପାଇଁ ହିଁ ସେମାନଙ୍କୁ ବଧ କରିଥିଲେ । ସାଧୁ-ମାନଙ୍କର ରକ୍ଷା ଓ ଦୁଷ୍ଟମାନଙ୍କର ଦମନ ପାଇଁ ହିଁ ଭଗବାନ ଅବତୀର୍ଣ୍ଣ ହୁଅନ୍ତି । କଂସ ଅତି ଦୁଷ୍ଟ ଥିଲା । ସେ ନିଜର କୁଳ କୁଟୁମ୍ବଙ୍କୁ ମଧ୍ୟ ସବୁଦା କ୍ଳେଶ ଦେଉଥିଲା । ଏଥିପାଇଁ ଭଗବାନ ତାକୁ ବଧ କଲେ ।"

ଶୌନକ ପଚାରିଲେ—"ହେ ମହର୍ଷି ସୂତ ! ଆପଣ ଏବେ କହନ୍ତୁ, କଂସ ତ ରାଜା ଥିଲା, ଭଗବାନ ବିରାଟ ସଭାସ୍ଥଳରେ ତାକୁ ମାରିଦେଲେ; କିନ୍ତୁ କେହି ଏହା ବିରୋଧ କଲେ ନାହିଁ କାହିଁକି ? କଂସର ପକ୍ଷନେଇ ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କଲେ ନାହିଁ କାହିଁକି ?"

ସୂତ କହିଲେ—"ମହାରାଜ ! କଂସର ଅତ୍ୟାଚାରରେ ସମସ୍ତ ପ୍ରଜା ଦୁଃଖିତ ଥିଲେ ଓ ତାହାର ମୃତ୍ୟୁ କାମନା କରୁଥିଲେ । ସମସ୍ତଙ୍କ ମନରେ ଏହି କାମନା ଥିବାରୁ

ସେମାନେ ମନେ ମନେ ଖୁସି ହେଉଥିଲେ । କଂସ ମରିଯିବାରୁ ସମସ୍ତେ ଭଗବାନଙ୍କର ପ୍ରଶଂସା କଲେ ଓ ଅଭିନନ୍ଦନ କଲେ । କିନ୍ତୁ ମଗଧର ରାଜା ଜରାସନ୍ଧ ଭଗବାନଙ୍କର ଏହି କାର୍ଯ୍ୟକୁ ବିରୋଧ କରିଥିଲା । ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଯାଦବମାନଙ୍କର ରାଜଧାନୀ ମଥୁରା ଉପରେ ଆକ୍ରମଣ କଲା ।"

ଶୌନକ ପଚାରିଲେ –"ହେ ସୂତ ! କାହିଁ ମଗଧ, ପୁଣି କାହିଁ ମଥୁରା ? ଜରାସନ୍ଧ କାହିଁକି କଂସର ପକ୍ଷ ନେବାକୁ ଗଲା ?"

ସୂତ କହିଲେ—"ମହାରାଜ ! କଂସ ଜରାସନ୍ଧର ଜାମାତା ଥିଲା । ଜରାସନ୍ଧର ଅସ୍ତି ଓ ପ୍ରାପ୍ତି ନାମକ ଦୁଇଟି ଅତି ସୁନ୍ଦରୀ କନ୍ୟା ଥିଲେ । କୌଣସି ପରମ ଶୂରବୀର ରାଜାଙ୍କ ସହିତ ତାଙ୍କୁ ବିବାହ ଦେବାପାଇଁ ସେ ଚାହୁଁଥିଲା, କଂସ ନିଜର ଶୂରତା ପ୍ରଦର୍ଶନ କରି ଜରାସନ୍ଧକୁ ପ୍ରସନ୍ନ କରାଇଲା । ତେଣୁ ସେ ନିଜର କନ୍ୟାଦ୍ୱୟଙ୍କୁ କଂସକୁ ବିବାହ ଦେଲା । ଭଗବାନ କଂସକୁ ମାରିଦେବାରୁ ଏ ଦୁହେଁ ଦୁଃଖିତ ହୋଇ ନିଜ ପିତାଙ୍କ ନିକଟକୁ ଯାଇ କାନ୍ଦି କାନ୍ଦି ସମସ୍ତ ବୃତ୍ତାନ୍ତ କହିଲେ । ଗୋଟିଏ ଗ୍ରେଟ ବାଳକ କୃଷ୍ଣ ସ୍ୱାମୀଙ୍କୁ ମାରି ବଳରାମଙ୍କ ସହିତ ମଥୁରାର ସର୍ବେସର୍ବା ହୋଇଥିବା କଥା କନ୍ୟାଙ୍କ ମୁଖରୁ ଶୁଣି ଓ ଶ୍ୱଶୁର ଉଗ୍ରସେନଙ୍କୁ ନାମମାତ୍ର କାଠପୁତୁଳି ଭଳି ରାଜା କରି ବସାଇଥିବା କଥା ଶୁଣି ଜରାସନ୍ଧ ଅତ୍ୟନ୍ତ କ୍ଷୁବ୍ଧ ହେଲା । ସେ ଦାନ୍ତରେ ଓଠକୁ କାମୁଡ଼ି କ୍ରୋଧରେ କହିଲା –"ଆଚ୍ଛା, ସେ ମେଣ୍ଢା କୃଷ୍ଣଟାର ଏତେ ସାହସ ? ମୁଁ ମଥୁରା ଓ ଶୂରସେନ ରାଜ୍ୟକୁ ଯାଦବ ରହିତ କରି ଦେଉଛି । ମୁଁ ଆଜି ହାତରେ ଖଡ୍ଗ ଧରି ପ୍ରତିଜ୍ଞା କରୁଛି, ପୃଥିବୀରେ ଗୋଟିଏ ହେଲେ ଯାଦବ ରଖିଦେବି ନାହିଁ । (୧) ଏହି ପ୍ରତିଜ୍ଞା କରି ସେ ସୈନ୍ୟସାମନ୍ତଙ୍କୁ ପ୍ରସ୍ତୁତ ହୋଇଯିବାକୁ ଆଦେଶ ଦେଲା । ତା ପାଟିରୁ କଥା ବାହାରିବା ମାତ୍ରେ ଚତୁରଙ୍ଗ ସୈନ୍ୟ ଯୁଦ୍ଧଯାତ୍ରା ପାଇଁ ପ୍ରସ୍ତୁତ ହୋଇଗଲେ ।

ସୂତ କହିଲେ –"ମୁନିଗଣ ! ଜରାସନ୍ଧ ସେତେବେଳେ ପୃଥିବୀରେ ଅତ୍ୟନ୍ତ ବଳବାନ ଥିଲା । ପୃଥିବୀର ସମସ୍ତ ରାଜାଙ୍କୁ ନିଜ ବଶରେ ରଖି ସେ ସମ୍ରାଟ ହୋଇଥିଲା । ଯେଉଁ ରାଜାମାନେ ତାହାର ବଶତା ସ୍ୱୀକାର କରୁ ନ ଥିଲେ, ସେମାନଙ୍କୁ ସେ ବନ୍ଦୀ

---

(୧) ଦେନ ଦୁହିତା ବାକ୍ୟ ଶୁଣି । କୋପେ ବୋଲଇ ନୃପମଣି ।।
ଯାଦବବଂଶେ କୃଷ୍ଣ ରାମ । କିମ୍ପିତେ କଲେ ଏଡ଼େ କର୍ମ ।। ×
ରାମ ଗୋବିନ୍ଦ ବେଗେ ମାରି । ଏ ଭୂମି ଅଯାଦବ କରି ।।
ତେବେ ଜୀବନ ମୋର ସ୍ଥିର । କୋପେ ବୋଲଇ ନୃପବର ।।
(ଭାଗବତ : ଜଗନ୍ନାଥ ଦାସ : ସ୍କ. ୧୦ ଅ ୫୪ )

କରି ରଖିଥିଲା । କୁଳୀନ ସୂର୍ଯ୍ୟବଂଶୀ, ଚନ୍ଦ୍ରବଂଶୀ ନୃପତିଗଣ ଯେଉଁମାନଙ୍କୁ କି ଚକ୍ରବର୍ତ୍ତୀ କୁହାଯାଉଥିଲା, ସେମାନେ ସମସ୍ତେ ତାହାର ଅଧୀନ ହୋଇଥିଲେ । ପରମ ପ୍ରତାପୀ ଚେଦି ଦେଶର ରାଜା ଶିଶୁପାଳ ତାହାର ସେନାପତି ଥିଲା । କରୁଷରାଜ, ମହାରାଜ ବକ, କଳଦନ୍ତ-ମେଘବାହନ, କରଭ, ଯବନରାଜ, ଯୁରୁ, ଭଗଦତ୍ତ , ଚନ୍ଦେରୀ ନରେଶ— ମିଥ୍ୟା ବାସୁଦେବ, ଭୋଜବଂଶୀ, ଭୀଷ୍ମକ, ଅକୃତି ଓ ଅନ୍ୟାନ୍ୟ ସହସ୍ର ନରପତି ତା ପାଖରେ ସେବକ ରୂପେ ରହୁଥିଲେ । ହଂସ ଓ ଡିମ୍ଭକ ନାମକ ଦୁଇଜଣ ଅତ୍ୟନ୍ତ ପରାକ୍ରମୀ ରାଜା ମଧ୍ୟ ଥିଲେ । ସେ ଦୁଇଜଣ ସହୋଦର ଭାଇ ଥିଲେ । ସେ ଦୁଇଜଣ ଜରାସନ୍ଧ ପାଖରେ ଶିଷ୍ୟରୂପେ ଥିଲେ । ସେ ଦୁହିଁଙ୍କୁ ବ୍ରହ୍ମା ବର ଦେଇଥିଲେ ଯେ, କୌଣସି ଅସ୍ତ୍ରଶସ୍ତ୍ରରେ ବା ସମରରେ ସେ ମରିବେ ନାହିଁ । ଏ ଦୁହେଁ ଜରାସନ୍ଧର ସୈନ୍ୟ ସଞ୍ଚାଳକ ଥିଲେ । ଏ ଦୁହିଙ୍କ ମଧ୍ୟରେ ଏତେ ପ୍ରେମ ଥିଲା ଯେ ଜଣେ ଅନ୍ୟ ଜଣକ ବିନା ଜୀବନ ଧାରଣ କରିବା ସମ୍ଭବ ନଥିଲା । ଏହି ଦୁଇ ଜଣଙ୍କ ସହାୟତାରେ ହିଁ ଜରାସନ୍ଧ ସମଗ୍ର ପୃଥିବୀ ଉପରେ ନିଜର ଆଧିପତ୍ୟ ବିସ୍ତାର କରିଥିଲା । କୌଣସି ରାଜା ତା ସମ୍ମୁଖରେ ଶିର ଉତ୍ତୋଳନ କରି ପାରୁ ନ ଥିଲେ । ପ୍ରାୟ ପ୍ରତ୍ୟେକ ବଡ଼ ବଡ଼ ରାଜା ତା ଅଧୀନରେ ରହି ତାକୁ କର ଦେଉଥିଲେ । ଏଭଳି ପ୍ରବଳ ପ୍ରତାପୀ ରାଜାର ଜ୍ୱାଇଁକୁ ଶ୍ରୀକୃଷ୍ଣ ମାରି ଦେଲେ ଓ ତା କନ୍ୟାଦ୍ୱୟଙ୍କୁ ବିଧବା କରି ଦେଲେ । ଏଥିରେ ତାହାର କ୍ରୋଧର ସୀମା ରହିଲା ନାହିଁ । ସମୁଦ୍ର ଜଳ ଉଚ୍ଛୁଳି ଉଠୁଥିବା ଅଜସ୍ର ସେନା ନେଇ ସେ ଚତୁର୍ଦ୍ଦିଗରୁ ମଥୁରା ପୁରୀକୁ ଘେରଉ କରିନେଲା ।

ଏ ପର୍ଯ୍ୟନ୍ତ ଭଗବାନ କୃଷ୍ଣଚନ୍ଦ୍ରଙ୍କୁ ସମର କ୍ଷେତ୍ରରେ ଏତେ ସୈନ୍ୟଙ୍କ ସହିତ ସମ୍ମୁଖ ଯୁଦ୍ଧ କରିବାକୁ ପଡ଼ି ନ ଥିଲା । ଯେତେ ଅସୁର ଏ ପର୍ଯ୍ୟନ୍ତ ଆସିଥିଲେ ସମସ୍ତଙ୍କୁ ସେ ଗୋଟି ଗୋଟି କରି ମୁଥ ଆଦି ଦ୍ୱାରା ମାରି ଦେଇଥିଲେ । ସେ ଦଶହଜାର ହାତୀର ବଳଥିବା ତାଙ୍କ ମାମୁଁ କଂସକୁ ମଧ୍ୟ ଚୁଟି ଧରି ପରଲୋକ ପଠାଇ ଦେଇଥିଲେ । କିନ୍ତୁ ଏବେ ତେଇଶ ଅକ୍ଷୌହିଣୀ ସୈନ୍ୟ ନେଇ ଜରାସନ୍ଧ ଯେ ମଥୁରାପୁରୀକୁ ଘେରି ନେଇଛି । ଏବେ ତ ଆଉ ବିଧା, ଗୋଇଠା, ଗୃପୁଡ଼ା ଦ୍ୱାରା ଏତେ ସୈନ୍ୟଙ୍କୁ ମାରି ହେବ ନାହିଁ ? ଏବେ ଯୁଦ୍ଧର ସମସ୍ତ ସାମଗ୍ରୀ ଆବଶ୍ୟକ । ଯାଦବ ଯେଉଁ କେତେଜଣ ଥିଲେ ସେମାନଙ୍କ ପାଖରେ ଆଦୌ ଯୁଦ୍ଧ ସାମଗ୍ରୀ ନ ଥିଲା । ଜରାସନ୍ଧ ମଥୁରାପୁରୀ ଘେରଉ କରି ନେଇଥିବାରୁ ସେମାନେ ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଥିଲେ । ନିଜର ବନ୍ଧୁବାନ୍ଧବଙ୍କୁ ଭୟଭୀତ ଦେଖି ଲୀଳାମାନବ ଭଗବାନ ବାସୁଦେବ ନିଜର ଅବତାରର ପ୍ରୟୋଜନକୁ ସ୍ମରଣ କରି ଦେଶକାଳ ଅନୁସାରେ ବିଚାର କରିବାକୁ ଲାଗିଲେ । ସେ ଚିନ୍ତା କଲେ—''ଏହି ଜରାସନ୍ଧ ହିଁ ପୃଥିବୀର ପାପଭାର ବଢ଼ାଇବାରେ ଲାଗିଛି । ସେ ବାହାରକୁ ଧର୍ମାତ୍ମା ସାଜି, ସଦାତ୍ମାଙ୍କ ସହିତ (ମୋ ସହିତ) ଦ୍ୱେଷ କରୁଅଛି, ଚତୁରଙ୍ଗ ସୈନ୍ୟ ଆଣି ନିଜର ସହାୟକ ସାଥିମାନଙ୍କ ସହିତ ସେ ମୋ ପୁରୀକୁ

ଘେରାଉ କରିଛି । ମୁଁ ତାହାର ସମସ୍ତ ସୈନ୍ୟଙ୍କୁ ମାରିଦେବି । କିନ୍ତୁ ଏବେ ତାକୁ ମାରିବି ନାହିଁ; କାରଣ ପରାଜିତ ହୋଇ ସେ ବାରମ୍ବାର ସୈନ୍ୟ ସଂଗ୍ରହ କରି ଆମ୍ଭମାନଙ୍କ ଉପରେ ଆକ୍ରମଣ କରିବ । ଏହିପରି ବିନା ବାଧାରେ ସୈନ୍ୟମାନେ ଏଠାକୁ ଆସୁଥିବେ ଓ ମୁଁ ସେମାନଙ୍କୁ ସଂହାର କରୁଥିବି । ଏହିପରି ସୈନ୍ୟଶକ୍ତି ହ୍ରାସ ହୋଇଗଲେ, ପୁନଶ୍ଚ ଏହି ଅସୁର ଅସୁର ପ୍ରକୃତିର ରାଜାମାନଙ୍କୁ ମଧ୍ୟ ମୃତ୍ୟୁ ମୁଖକୁ ପଠାଇବି । ଏବେ ପ୍ରତ୍ୟେକ ରାଜାଙ୍କର ସୈନ୍ୟବଳ ବହୁତ ବଢ଼ି ଯାଇଛି, ସମସ୍ତେ ଅଭିମାନରେ ବୃତ୍ତିରହି ଯୁଦ୍ଧ କରୁଛନ୍ତି । ରାଜାମାନେ ଦୁଷ୍ଟ ହୋଇ ଯାଇଛନ୍ତି । ସେମାନେ ଜରାସନ୍ଧର ପକ୍ଷ ନେଇ ଅନ୍ୟାୟ କରି ଚାଲିଛନ୍ତି । ତେଣୁ ସେ ସମସ୍ତଙ୍କୁ ଥରକେ ସଂହାର କରିଦେବା ଶ୍ରେୟସ୍କର । ଦୁଷ୍ଟଗଣଙ୍କର ସଂହାର ପାଇଁ ଓ ଶିଷ୍ଟଗଣଙ୍କୁ ଉଦ୍ଧାର କରିବା ପାଇଁ ମୁଁ କାଳ ରୂପରେ ଅବତୀର୍ଣ୍ଣ ହୋଇଛି । ଧର୍ମର ରକ୍ଷା ଓ ଅଧର୍ମର ହ୍ରାସ କରିବା ହିଁ ମୋର ଅବତାର ହେବାର ଉଦ୍ଦେଶ୍ୟ; କିନ୍ତୁ ମୋ ନିକଟରେ ଏବେ ସମର କରିବା ପାଇଁ ଦିବ୍ୟ ଅସ୍ତ୍ର ଶସ୍ତ୍ର ନାହିଁ । ଏବେ ସେ ସମସ୍ତ ମୋ ପାଖରେ ଆସି ପହଞ୍ଚିବା ଆବଶ୍ୟକ ।” (୧)

ଭଗବାନ ଏହି କଥା ଚିନ୍ତା କରୁ କରୁ ସଙ୍ଗେ ସଙ୍ଗେ ଶୂନ୍ୟରୁ ସାରଥିଙ୍କ ସହିତ ଦୁଇଟି ଦିବ୍ୟ ରଥ ଓ ଯୁଦ୍ଧ ଉପଯୋଗୀ ସମସ୍ତ ସାମଗ୍ରୀ, ଅସ୍ତ୍ରଶସ୍ତ୍ର, ଦିବ୍ୟ ଆୟୁଧ, କବଚ ଆଦି ପ୍ରତ୍ୟେକ ଜିନିଷ ଆସି ପହଞ୍ଚିଗଲା । ଦୁଇ ଭାଇ ନିଜ ନିଜର ସନାତନ ଦିବ୍ୟ ଚୈତନ୍ୟ ଅସ୍ତ୍ରଗୁଡ଼ିକୁ ଦର୍ଶନ କଲେ । ଭଗବାନ୍ ବଳଦେବଙ୍କୁ ପ୍ରତ୍ୟେକ ଅସ୍ତ୍ରର ପରିଚୟ କରାଇ ଦେଲେ । ଯଥା ସମୟରେ ସେଗୁଡ଼ିକ ଆସି ପହଞ୍ଚିଥିବାରୁ ଦୁହେଁ ଯାକ ଅତି ଆନନ୍ଦିତ ହେଲେ । ଭଗବାନଙ୍କ ସହିତ ବଳଦେବ ଦିବ୍ୟକବଚ ଧାରଣ କଲେ । ନିଜ ନିଜର ଶଙ୍ଖ, ଚକ୍ର, ଗଦା, ପଦ୍ମ, ଖଡ଼୍ଗ, ଧନୁ ଓ ବାଣମାନ ଧାରଣ କଲେ । ଉଭୟେ ବୀର ବେଶରେ ଯୁଦ୍ଧ କରିବା ପାଇଁ ସୁସଜ୍ଜିତ ହୋଇଗଲେ । ଭଗବାନ ବଳଦେବଙ୍କୁ କହିଲେ—“ଭାଇ ! ଏବେ ଆଉ ଦେଖୁଚ କ’ଣ, ଚାଲ ଶତ୍ରୁ ସେନାଙ୍କ ସହିତ ଯୁଦ୍ଧ କରି ଭୂଭାର ଲାଘବ କରିବା । ନିଜର ଦୁଃଖୀ ସ୍ୱଜନଙ୍କୁ ସୁଖୀ କରାଇବା

---

(୧) ଭୂମିର ଭାରା ଖଣ୍ଡିବାରେ । ମୋ ଜନ୍ମ ମନୁଷ୍ୟ ଶରୀରେ ॥
ନାଶିବ ଅବନୀର ଭାର । ଏଣେ ସେ ପ୍ରୟୋଜନ ମୋର ॥
ଏ ବଳ ଆଜ ମୁଁ ସଂହାରି । କାହିଁତେ ଭୂମିଭାରା ହରି ॥
ଜରା ଜୀବନ ମାତ୍ର ଥୋଇ । ଏ ବଳ ସଂହାରିବି ମୁହିଁ ॥
ଦୁଷ୍ଟ ଦାନବ ବଳ ନାଶି । ସାଧୁଜନଙ୍କୁ ମୁଁ ଆଶ୍ୱସି ॥
ଅଧର୍ମ ନାଶି ଧର୍ମ ଥୋଇ । ଏଥି ନିମନ୍ତେ ମୋର ଦେହୀ ॥
(ଭାଗବତ : ଜଗନ୍ନାଥ ଦାସ : ୧୦ସ୍କ. ୫୦ ଅ)

ଓ ଜରାସନ୍ଧଙ୍କୁ ପୁନଃ ସୈନ୍ୟ ସଂଗ୍ରହ କରି ଏଠାକୁ ଆସିବାର ସୁଯୋଗ ଦେବା ।'' (୩)

ବଳରାମ କହିଲେ —''ତାହାହେଲେ ଠିକ୍ ଅଛି, ଚାଲ । ଏହା ବି ଏକ ଖେଳ ହେବ । ଆମ ଜାତିର ନରନାରୀ ଅତ୍ୟନ୍ତ ଭୀତତ୍ରସ୍ତ ହୋଇ ପଡ଼ିଛନ୍ତି । ଜରାସନ୍ଧ ମଧ୍ୟ ବିଜୟୀ ହେବାର ଗର୍ବ କରୁଅଛି । ତେଣୁ ତାକୁ ପରାଜିତ କରି ତାର ଗର୍ବକୁ ଖର୍ବ କରିବା ଓ ନିଜର ବନ୍ଧୁ ବାନ୍ଧବ ଓ ଭକ୍ତମାନଙ୍କୁ ସୁଖୀ କରିବା ।''

ଏହା ଆଲୋଚନା କରି ଦୁଇ ଭାଇ ଅସ୍ତ୍ର ଶସ୍ତ୍ରରେ ସୁସଜ୍ଜିତ ହୋଇ ଜରାସନ୍ଧର ସମ୍ମୁଖକୁ ଗଲେ । ସୈନ୍ୟମାନଙ୍କ ମଧ୍ୟରେ ପ୍ରବେଶ କରିବାକ୍ଷଣି ଭଗବାନ୍ ଅତ୍ୟନ୍ତ ବେଗରେ ନିଜର ପାଞ୍ଚଜନ୍ୟ ଶଙ୍ଖ ବଜାଇଲେ । ଶଙ୍ଖର ତୁମୁଳ ଧ୍ୱନି ଶୁଣି ବିପକ୍ଷ ବୀର-ମାନଙ୍କର ଉତ୍ସାହ ଭାଙ୍ଗିଗଲା । ମୃତ୍ୟୁ ଭୟରେ ସେମାନଙ୍କ ହୃଦୟ ଥର ଥର କମ୍ପିବାକୁ ଲାଗିଲା ।

ଜରାସନ୍ଧ ଦେଖିଲା ଯେ କୃଷ୍ଣ ଓ ବଳରାମ ଉଭୟେ ଯୁଦ୍ଧ ପାଇଁ ରଥ ଆରୋହଣ କରି ସମୁପସ୍ଥିତ ହୋଇଛନ୍ତି । ଏହା ଦେଖି ସେ ରଥ ଆରୋହଣ କରି ତାଙ୍କ ସମ୍ମୁଖକୁ ଆସିଲା । ଭଗବାନ ଶ୍ରୀକୃଷ୍ଣ ସର୍ବପ୍ରଥମେ ତାକୁ ଯୁଦ୍ଧ ପାଇଁ ଡାକରା ଦେଲେ । ଏହା ଶୁଣି ସେ କହିଲା -''ଦେଖ୍ କୃଷ୍ଣ ! ତୋ ବଡ଼ ଭାଇ ସଙ୍ଗରେ ଥିବାରୁ ମୁଁ ତୋ ସହିତ ଯୁଦ୍ଧ କରି ପାରିବି ନାହିଁ ।''

ଭଗବାନ୍ ପଚାରିଲେ—''ମୋ ସଙ୍ଗେ ତୁ କାହିଁକି ଯୁଦ୍ଧ କରିବୁ ନାହିଁ ?''

ଜରାସନ୍ଧ କହିଲା—''ତୁ ବର୍ତ୍ତମାନ୍ ବଳଦେବ ସମ୍ମୁଖରେ ଗ୍ରେଟପିଲା । ବଡ଼ଙ୍କର ବଡ଼ଙ୍କ ସହିତ ଯୁଦ୍ଧ ହେବା ଉଚିତ୍ । କ୍ଷତ୍ରିୟ କ୍ଷତ୍ରିୟଙ୍କ ସହିତ ହିଁ ଯୁଦ୍ଧ କରନ୍ତି । ତୋ ଜାତିର ଠିକଣା ନାହିଁ । ତୋତେ କେହି ନନ୍ଦକୁମାର କହନ୍ତି ତ କେହି ବାସୁଦେବ, କେହି ଦେବକୀନନ୍ଦନ କହନ୍ତି ତ କେହି ଯଶୋଦାନନ୍ଦନ । ତୁ ଯଦି ନନ୍ଦନନ୍ଦନ ହୋଇଥାଉ, ତାହାହେଲେ ତୁ ଜାତିରେ ବଣୁଆ । ବଣୁଆ ଜାତି ସହିତ କ୍ଷତ୍ରିୟର ଯୁଦ୍ଧ ହୁଏ ନାହିଁ । ଯଦି ତୁ ମାରିବାର ଥିଲୁ, ତେବେ ମୋ ଜ୍ୱାଇଁକୁ ଛଳରେ କାହିଁକି ହତ୍ୟାକଲୁ ? କିନ୍ତୁ ମୁଁ ବର୍ତ୍ତମାନ୍ ତୋତେ ମାରିବି ନାହିଁ ।

---

(୩) କୋ ରାମ ଦେଖ ଜରାସନ୍ଧ । ପ୍ରଭାବେ ଦୁଷ୍ଟ ବଡ଼ ମନ୍ଦ ॥
ଏହାର ବଳ ନାଶକରି । ମଥୁରାଜନଙ୍କୁ ଉଦ୍ଧରି ॥
କେବଳ ଜରାସନ୍ଧ ଥିବ । ଅନେକ ସୈନ୍ୟ ସେ ଆଣିବ ॥
ଏଠାରେ କରିବା ସଂହାର । ଯୁଝିବା ଅଷ୍ଟାଦଶ ବାର ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୫୪ଅ)

ପ୍ରଥମେ ମୁଁ ତୋର ବଡ଼ଭାଇ ବଳରାମଙ୍କୁ ସମରରେ ମାରିସାରେ, ପରେ ତୋତେ ଦେଖିବି ।"

ଏହା କହି ସେ ବଳଦେବଙ୍କୁ କହିଲା—"ବଳରାମ୍ ! ତୁ ଯଦି ମୋ ସହିତ ଯୁଦ୍ଧ କରିବାକୁ ଚାହୁଁ, ତେବେ ପ୍ରସ୍ତୁତ ହୋଇ ଯା । ଦୁଇଜଣ ହାତାହାତି ହୋଇଯିବା । ତୋର ଯଦି ବଳ ଅଛି, ତେବେ ମୋତେ ମାର୍, ନାହିଁ ତ ମୋ ବାଣରେ ଛିନ୍ନଭିନ୍ନ ହୋଇ ସମ୍ମୁଖ ସମରରେ ମୃତ୍ୟୁବରଣ କରି ଉତ୍ତମ ଲୋକ ଲାଭ କର ।"

ତାହାର ଏପରି କଥା ଶୁଣି ଭଗବାନ୍ କହିଲେ—"ତୋର ଯଦି କିଛି କହିବାର ଅଛି, ତାହା ହେଲେ ମୋତେ କହ । ଏହା ବ୍ୟାଖ୍ୟାନ ମଞ୍ଚ ନୁହେଁ ଯେ, ଯାହା ପଚାରିବ ତାହା ବକିଯିବୁ । ଏହା ହେଉଛି ରଣକ୍ଷେତ୍ର । ଏଠାରେ ଭାଷଣ ଦେବା ଚାଲିବ ନାହିଁ, କର୍ତ୍ତବ୍ୟ କରି ଦେଖାଇ ଦେବାକୁ ପଡ଼ିବ । ତୁ ମୋ ସଙ୍ଗେ ନ ଲଢ଼ି ଭାଇଙ୍କ ସଙ୍ଗେ ଲଢ଼ି ପାରୁ; କିନ୍ତୁ ଏମିତି ତେଣୁ କଥା କହିବା ଆବଶ୍ୟକ ନାହିଁ । ସେ ତୋର ଗର୍ବ ଚୂର୍ଣ୍ଣ କରି ଦେବେ । ଯଦି ତୁ ତୋ ମା' ଠାରୁ କ୍ଷୀର ପାନ କରିଥାଉ, ତେବେ ଯୁଦ୍ଧ କର ।" (୪)

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ଏପରି ବଚନ ଶୁଣି ଜରାସନ୍ଧ ଅତ୍ୟନ୍ତ କ୍ରୁଦ୍ଧ ହୋଇ ବଳଦେବଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲା । ଭଗବାନ ତା ସୈନ୍ୟମାନଙ୍କୁ ସଂହାର କରିବାକୁ ଲାଗିଲେ । ଭଗବାନ୍ ଦେଖିଲେ ତାହାର ଅସଂଖ୍ୟ ସୈନ୍ୟ । ତାହାର ହଂସକ ଓ ଡିମ୍ଭକ ନାମକ ଯେଉଁ ଦୁଇଜଣ ରାଜା ସେନାପତି ହୋଇଥିଲେ, ସେ ଦୁହେଁ ମହାବଳୀ । ଦେବତାମାନେ ମଧ୍ୟ ତାଙ୍କୁ ଯୁଦ୍ଧରେ ପରାସ୍ତ କରି ପାରିବେ ନାହିଁ । ସେ ଶସ୍ତ୍ରରେ ମରିବ ନାହିଁ ବୋଲି ବର ପାଇଛି । ଭଗବାନ୍ ତାଙ୍କ ସେନାଙ୍କୁ ସଂହାର କରିବାକୁ ଲାଗିଲେ । କିନ୍ତୁ କେତେ ମାରିବେ ? ଭଗବାନ୍ ଚିନ୍ତା କଲେ, ଏପରି ଧର୍ମଯୁଦ୍ଧ କରୁଥିଲେ ତିନିଶହ ବର୍ଷରେ ମଧ୍ୟ ମୁଁ ସେ ଦୁହିଙ୍କ ସେନାଙ୍କୁ ସଂହାର କରି ପାରିବି ନାହିଁ । ପୁନଶ୍ଚ ଯେ ପର୍ଯ୍ୟନ୍ତ ଏ ହଂସ, ଡିମ୍ଭକ ଦୁଇଜଣ ଏମାନଙ୍କର ସହାୟକ ହେଉଥିବେ, ସେ ପର୍ଯ୍ୟନ୍ତ ଏମାନଙ୍କୁ

---

(୪) କୋମଳ ଗମ୍ଭୀର ବଚନ । କହିଲେ ଶ୍ରୀ ମଧୁସୂଦନ ॥
ଶୁଣ ମଗଧ ମହୀପତି । କହଇ ଏଥିର ଯୁକତି ॥
ଶଉର୍ଯ୍ୟବଳ ଯାର ଥାଇ । ସଂଗ୍ରାମ ମଧ୍ୟ ସେ ଦେଖାଇ ॥
ଆତ୍ମ ପ୍ରଶଂସା ଆତ୍ମ ମୁଖେ । ଯେ ପ୍ରାଣୀ କହୁଥାନ୍ତି ସୁଖେ ॥
ଯଶ ନ ରହେ ବେଦ ଲୋକେ । ମରଣେ ପଡ଼ନ୍ତି ନରକେ ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ୫୪ଅ)

କେହି ପର୍ଯ୍ୟନ୍ତ କରିପାରିବେ ନାହିଁ । ଅସ୍ତ୍ର ଶସ୍ତ୍ରରେ ଏ ଦୁଇଜଣ ମରିବେ ନାହିଁ । ଛଳେ ବଳେ ଏ ଦୁହିଙ୍କୁ ମାରିବାକୁ ହେବ । ଜରାସନ୍ଧର ଏ ଦୁହେଁ ଡାହାଣ ଓ ବାମ ହାତ । ହାତ ଦୁଇଟି କଟିଗଲେ ଏ ଆଉ କ ଯୁଦ୍ଧ କରିବ ?"

ସୂତ କହିଲେ—''ମୁନିଗଣ ! ଅମର ବାଙ୍କ ବିହାରୀ ପୀତାମ୍ବରଧାରୀ ବନମାଳୀ ସହଜେ ତ ଯୋଦ୍ଧା; କିନ୍ତୁ ଛଳ କରିବାରେ ମଧ୍ୟ ସେ ଧୁରନ୍ଧର । ଜରାସନ୍ଧର ସୈନ୍ୟ-ମାନଙ୍କ ମଧ୍ୟରେ ହଂସ ନାମକ ଆଉ ଏକ ରାଜା ଥିଲା । ତାକୁ ବଳଦେବ ମାରିଦେଲେ ବୋଲି ପ୍ରଚାର କରିଦେଲେ । ହଂସ ମରିଗଲା ବୋଲି ଖୁବ୍ ପ୍ରଚାର ହୋଇଗଲା । ଏପରିକି ଏହା ଡିମ୍ଭକର ନିଜ ପରିଚାରକମାନଙ୍କ ମନରେ ବିଶ୍ୱାସ କରାଇ ଦିଆଗଲା । ଡିମ୍ଭକର ଏଥିରେ ବୁଦ୍ଧି ଭ୍ରଷ୍ଟ ହୋଇଗଲା । ହରି ତାହାର ମତି ହରଣ କରିନେଲେ । ସେ ଚିନ୍ତା କଲା—'ଯେତେବେଳେ ମୋର ଭାଇ ହଂସ ମରିଗଲା, ତେବେ ମୁଁ ଜୀବିତ ରହି ଲାଭ କ'ଣ ?' ସେ ଶୋକଭରେ ହୋଇ ଯମୁନା ଜଳକୁ ଡେଇଁପଡ଼ି ନିଜର ପ୍ରାଣ ହରାଇଲା । ଏହି ସମାଚାର ସୈନ୍ୟମାନଙ୍କ ମଧ୍ୟରେ ପ୍ରଚାରିତ ହୋଇଗଲା । ହଂସ ନିଜ ଭାଇର ମୃତ୍ୟୁ ଖବର ପାଇ ନିଜେ ମଧ୍ୟ ଯମୁନା ଜଳରେ ଝାସ ଦେଇ ବୁଡ଼ିମଲା । ଏହି ପ୍ରକାର ଛନ୍ଦ କରି ଭଗବାନ୍ ସେ ଦୁଇଭାଇଙ୍କୁ ମୃତ୍ୟୁ ମୁଖରେ ପକାଇଲେ । ଏବେ ରହିଲା କେବଳ ଜରାସନ୍ଧ । ସେ ବଳରାମଙ୍କୁ ଅହ୍ୱାନ କରି ଯେତେବେଳେ ତାଙ୍କ ସଙ୍ଗେ ଯୁଦ୍ଧ କଲା, ସେତେବେଳେ ଯାହା ଯାହା ଘଟିଲା, ମୁଁ ତାହା ପରବର୍ତ୍ତୀ ପ୍ରସଙ୍ଗରେ କହିବି ।''

## ଛପ୍ପୟ

ଘେରି ମଧୁରାପୁରୀ ସକଲ ଯାଦବ ଘବରାୟେ ।
ରାମ-ଶ୍ୟାମ କେ ଦିବ୍ୟ ଅସ୍ତ୍ର ରଥ ସୁମିରତ ଆୟେ ।।
ଚଲେ ସାଜି ରନ ସାଜ ସମ ରକୁଁ ଦୋଉ ଭାଇ ।
ଜରାସନ୍ଧ ବଲ ଲଡ଼େ ଭୟଙ୍କର ଭଇ ଲଡ଼ାଇ ।।
ଇତ ହରି ଅତିଶୟ ଛଲ କରେଂ୍ୟା, ରିପୁ ସେନାମହଁ ଅଇକେଂ ।
ମାଗଧ ବଲ ଆଧୋ କଟେଂ୍ୟା, ଡିମ୍ଭକ ହଂସ ମରାଇକେଂ ।।

—*—

# ଜରାସନ୍ଧର ସତରଥର ଯୁଦ୍ଧ

ଏବଂ ସପ୍ତଦଶ କୃତ୍ୱସ୍ତାବଦ୍ଧ୍ୟକ୍ଷୌହିଣୀବଲଃ ।
ଯୁଯୁଧେ ମାଗଧୋ ରାଜା ଯଦୁଭିଃ କୃଷ୍ଣପାଲିତୈଃ ॥ *

( ଶ୍ରୀ. ଭା. ୧୦ସ୍କ. ୫୦ଅ, ୪୨ ଶ୍ଳୋକ )

ଛପ୍‌ପୟ

ମନୁଜ ଚରିତ ଧରି କରତ ଲଡ଼ତ ବଲ ବିପୁଲ ଦିଖାବତ ।
ସିଂହ ପକରି ଜିମି ହରିନ ଛୈର୍ଡ଼ି ପୁନ ଖେଲ ଖିଲାବତ ॥
ଚତୁରଂଗିନ ରିପୁ ସୈନ୍ୟ ମାରି ଯମସଦନ ପଠାଇ ।
କରେଁ ଶତ୍ରୁ ସଂହାର ରକ୍ତ କୀ ନଦୀ ବହାଇ ॥
ଭୟୋ ପରାଜିତ ମଗଧପତି, ରଥ ଟୂଟେଁ ସେନା ମରୀ ।
ଲଗେ ଶତ୍ରୁବଧ ବଲ କରନ, ତବ ଜନନୈଁ ବୋଲେ ହରୀ ॥

କ୍ଷତ୍ରିୟ ଯୋଦ୍ଧାଙ୍କ ପାଇଁ ସମର ହେଉଛି ବ ଏକ ପ୍ରକାର ଯଜ୍ଞ । ଯେଉଁଥିରେ ଶତ୍ରୁମାନଙ୍କୁ ବଳି ଦିଆଯାଏ । ଯୁଦ୍ଧ ପାଇଁ ଉଦ୍ୟତ ଓ ସୁସଜ୍ଜିତ ଶତ୍ରୁଙ୍କୁ ସମ୍ମୁଖରେ ଦେଖି ବୀରଙ୍କ ହୃଦୟରେ ଉତ୍ସାହର ହିଲ୍ଲୋଳ ଉଠିବାକୁ ଲାଗେ । ଅଙ୍ଗ ପ୍ରତ୍ୟଙ୍ଗରେ

---

* ସପତଦଶବାର ଆଣି । ବଳ ତେଇଶ ଅକ୍ଷୌହିଣୀ ॥
ଗୋବିନ୍ଦ ସଙ୍ଗେ ଯୁଦ୍ଧକଲା । ମାଗଧ ବେଳେ ନ ଜିଣିଲା ॥
କୃଷ୍ଣର ତେଜେ ଯଦୁବଳ । ଯୁଦ୍ଧେ ଜିଣନ୍ତି ସର୍ବକାଳ ॥
ଅଭେଦ୍ୟ ତାହାଙ୍କ ଶରୀର । ଏବେ ହୋ ଶୁଣ ନୃପବର ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ· ୧୦, ଅ ·୫୪)

ସ୍ଫୂର୍ତ୍ତି ଆସିଯାଏ । ସେତେବେଳେ ସେମାନେ ପ୍ରାଣପଣେ ନିର୍ଭୟ ହୋଇ ଭୂମିରେ ଯୁଦ୍ଧ କରନ୍ତି । ସେମାନେ ଭାବନ୍ତି, ଆମର ଦୁଇ ହାତରେ ଲଡ଼ୁ ଅଛୁ । ଯଦି ଆମେ ଶତ୍ରୁକୁ ପରାସ୍ତ କରିଦେଉଁ, ତେବେ ବିଜୟ ଆନନ୍ଦରେ ଉଲ୍ଲସିତ ହେବୁ । ଯଦି ଲଢ଼ୁ ଲଢ଼ୁ ଶତ୍ରୁ ଆଗରେ ଶସ୍ତ୍ରରେ ମୃତ୍ୟୁବରଣ କରୁ ତେବେ ଆମ ପାଇଁ ସ୍ୱର୍ଗଦ୍ୱାର ଖୋଲା ରହିଛି । ଏହି ବିଶ୍ୱାସରେ ସେମାନେ ଯୁଦ୍ଧ କରନ୍ତି । ଏହି ବିଶ୍ୱାସରେ ସେମାନେ ସମର କ୍ଷେତ୍ରରୁ ପଛଘୁଞ୍ଚା ଦିଅନ୍ତି ନାହିଁ ।

ସୂତ କହିଲେ—"ମୁନିଗଣ ! ଜରାସନ୍ଧ ଓ ଯାଦବ ସେନାଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଚାଲିଥାଏ । ଉଭୟ ପକ୍ଷର ବୀର ବିଜୟାକାଙ୍‌କ୍ଷୀ ଥିଲେ ଓ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଥିଲେ । ଉଭୟଙ୍କ ପକ୍ଷରେ ରଥ, ଅଶ୍ୱ, ଗଜ ଓ ପଦାତିକ ସୈନ୍ୟ ଏହି ପ୍ରକାର ଚତୁରଙ୍ଗ ବଳ ଥିଲେ । ଭଗବାନଙ୍କ ରଥର ଧ୍ୱଜା ଉପରେ ଗରୁଡ଼ ଚିହ୍ନ ଥିଲା ଓ ବଳଦେବଙ୍କ ଧ୍ୱଜାର ଚିହ୍ନ ତାଳବୃକ୍ଷ ଥିଲା । ଏହା ଦୂରରୁ ଦେଖା ଯାଉଥିଲା । ପତାକାର ଉଭୟ ପାର୍ଶ୍ୱରେ ଏହି ଚିହ୍ନ ଥିବାରୁ ଆଗ ଓ ପଛରେ ଥିବା ଲୋକ ତାହା ଦେଖି ପାରୁଥିଲେ । ଦୁଇଭାଇ ନିଜ ନିଜର ଦିବ୍ୟରଥ ଉପରେ ବସି ଜରାସନ୍ଧର ସୈନ୍ୟମାନଙ୍କ ମଧ୍ୟରେ ଏପରି ପ୍ରବେଶ କଲେ ଯେ ଯେପରି ଦୁଇଟି ଜାହାଜ ସମୁଦ୍ର ମଧ୍ୟରେ ପ୍ରବେଶ କରୁଛନ୍ତି । ସତେ ଯେପରି ରାମକୃଷ୍ଣଙ୍କ ରଥକୁ ଜରାସନ୍ଧର ଚତୁରଙ୍ଗୀ ସେନା ଆଚ୍ଛାଦିତ କରି ଦେଇଛନ୍ତି । ଯେଉଁ ସ୍ତ୍ରୀଲୋକମାନେ ଭଗବାନଙ୍କ ମୁଖକୁ ଦେଖି ବଞ୍ଚି ରହିଛନ୍ତି, ସେହି ମଥୁରା ନାରୀଗଣ ଯେତେବେଳେ ଦେଖିଲେ ଯେ ରାମକୃଷ୍ଣ ରଥରେ ବସି ଯୁଦ୍ଧଯାତ୍ରା କରୁଛନ୍ତି, ସେତେବେଳେ ସେମାନେ ବ୍ୟାକୁଳ ହୋଇ ଉଚ୍ଚସ୍ଥାନମାନଙ୍କରେ ଚଢ଼ି ସେ ଦୁହିଁଙ୍କ ରଥକୁ ନିରୀକ୍ଷଣ କରିବାରେ ଲାଗିଲେ । ସମସ୍ତଙ୍କର ଦୃଷ୍ଟି ଗରୁଡ଼ ଓ ତାଳ ଚିହ୍ନିତ ଧ୍ୱଜା ଉପରେ କେନ୍ଦ୍ରୀଭୂତ ହେଲା । ସେମାନେ ଅପଲକ ନେତ୍ରରେ ସେହି ଧ୍ୱଜାକୁ ହିଁ ଚାହିଁ ରହିଲେ । ମଗଧରାଜର ପ୍ରଚଣ୍ଡ ସେନା ପ୍ରବାହରେ ତଥା ମହାରଥୀ ଓ ଅତିରଥୀମାନଙ୍କର ରଥ, ସାରଥି, ଅଶ୍ୱ, ଧ୍ୱଜା ଓ ରଥ ପାଖରୁ ଉଡ଼ୁଥିବା ଧୂଳିରେ ଦୁଇଭାଇଙ୍କର ଧ୍ୱଜା ସହିତ ରଥ ସେହି ସମର ସାଗରରେ ବିଲୀନ ହୋଇଗଲା । ଉଭୟଙ୍କ ଧ୍ୱଜାକୁ ନ ଦେଖି ସେହି ମଥୁରାପୁରୀର ନାରୀଗଣ ବ୍ୟାକୁଳ ହେଲେ ଓ ମୂର୍ଚ୍ଛିତ ହୋଇ ପଡ଼ିଗଲେ ।

ଭଗବାନ ଯେତେବେଳେ ଦେଖିଲେ ଯେ ଶତ୍ରୁସୈନ୍ୟମାନେ ତାଙ୍କୁ ଚତୁର୍ଦ୍ଦିଗରୁ ଘେରି ଗଲେଣି ଓ ବାଣ ବୃଷ୍ଟି କରିବାକୁ ଲାଗିଲେଣି, ସେତେବେଳେ ଲୀଳା ପାଇଁ ମନୁଷ୍ୟରୂପ ଧାରଣ କରିଥିବା ହରି ନିଜର ବିଶ୍ୱବନ୍ଦିତ, ଲୋକବନ୍ଦିତ, ସୁରାସୁର ପୂଜିତ ପରମପ୍ରସିଦ୍ଧ ଶାର୍ଙ୍ଗ ନାମକ ଧନୁକୁ ଉଠାଇ ଟଙ୍କାର ଶବ୍ଦରେ ନିନାଦିତ କଲେ । ସେହି ଭୀଷଣ ଟଙ୍କାର ଶବ୍ଦ ଶୁଣି ପ୍ରତ୍ୟେକ ସୈନ୍ୟଙ୍କର ହୃଦୟ କମ୍ପିତ ହେବାକୁ ଲାଗିଲା । ପ୍ରତ୍ୟେକେ ସେହି ଦିବ୍ୟ ଧନୁର ଟଙ୍କାର ଶବ୍ଦରେ ଥରିବାକୁ ଲାଗିଲେ ।

ଏବେ ସ୍ୱୟଂ ଭଗବାନ ଶତ୍ରୁସେନା ଉପରେ ବାଣ ବର୍ଷଣ କରିବାକୁ ଲାଗିଲେ । ସେ କେତେବେଳେ ତୂଣୀରରୁ ବାଣ ବାହାର କରୁଥିଲେ ଓ କେତେବେଳେ ଧନୁରେ ମାରୁଥିଲେ ତାହା କେହି ଦେଖି ପାରୁ ନଥିଲେ । ଏପରି ପ୍ରତୀତ ହେଉଥିଲା, ସତେ-ଯେପରି ଅସଂଖ୍ୟ ତୂଣୀରରୁ ଆପେ ଆପେ ବାଣବର୍ଷା ହେଉଅଛି । ଯେପରି ବଡ଼ ବଡ଼ କରକାପାତ ହେଲେ ବୃକ୍ଷରୁ ପକ୍ଷୀମାନେ ମରି ଖସିପଡ଼ନ୍ତି, ସେହିପରି ଭଗବାନଙ୍କ ବାଣରେ ଶତ୍ରୁସୈନ୍ୟ, ରଥ, ଗଜ ଓ ଅଶ୍ୱମାନେ ତଳେ ଟଳି ପଡ଼ୁଥିଲେ । ଭଗବାନଙ୍କର ଧନୁ କୁଣ୍ଡଳାକାର ଭଳି ନିରନ୍ତର ଘୂରୁଥିଲା । ଧନୁ ଘୂରିବା ସମୟରେ କେବଳ ଗୋଟିଏ ମଣ୍ଡଳ ଦୃଷ୍ଟିଗୋଚର ହେଉଥିଲା । ଧନୁ କେଉଁଠି, ତୋଣ କେଉଁଠି ଓ ବାଣ କେଉଁ ସ୍ଥାନରେ ଲଗା ଯାଉଛି, ତାହା କେହି ଦେଖିପାରୁ ନଥିଲେ । ଏପରି ଭୀଷଣ ବାଣବୃଷ୍ଟି ହେବାଦ୍ୱାରା ଶତ୍ରୁଙ୍କର ବଳ ତୁଟି ଯାଉଥିଲା । ଏଣେ ଭଗବାନ ନିଜର ବାଣ ବର୍ଷା କରୁଥାଆନ୍ତି, ତେଣେ ବଳରାମ ନିଜର ଲଙ୍ଗଳରେ ଭୁଷି ଭୁଷି ମୂଷଳଠାରୁ ଟାଣୁଆ ବୀରମାନଙ୍କର ମାନ ମର୍ଦ୍ଦନ କରୁଥାଆନ୍ତି ଓ ଅସଂଖ୍ୟ ବୀରଙ୍କୁ ପରଲୋକକୁ ପଠାଇ ଦେଉଥାଆନ୍ତି । ସୈନ୍ୟମାନଙ୍କର ରକ୍ତନଦୀ ବହି ଯାଉଥାଏ । କଟି ଯାଇଥିବା ବାହୁ ଭୁଜଙ୍ଗ ପରି ଓ ମସ୍ତକମାନ କଇଁଛ ପରି ଦୃଷ୍ଟିଗୋଚର ହେଉ-ଥାଆନ୍ତି । ମୃତ ହସ୍ତୀଗୁଡ଼ିକ ସେହି ରକ୍ତନଦୀ ମଧ୍ୟରେ ଛୋଟ ଛୋଟ ପାହାଡ଼ ପରି ଦେଖା ଯାଉଥାଆନ୍ତି । ଅଶ୍ୱଙ୍କର ମୃତ ଶରୀରଗୁଡ଼ିକ ମଗର ସଦୃଶ ଦେଖା ଯାଉଥାଆନ୍ତି । କଟିଯାଇ ସେଠାରେ ପଡ଼ିଥିବା କର, ପଦ ଓ ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ନଦୀରେ ମତ୍ସ୍ୟକ୍ରୀଡ଼ା କରୁଥିବା ଭଳି ଉଭାସିତ ହେଉଥାଏ । ରଜା ଓ ସୈନିକମାନଙ୍କର କେଶରାଶି ନଦୀର ଶୈବାଳ ସଦୃଶ ଦୃଷ୍ଟିଗୋଚର ହେଉଥାଏ । ଧନୁଗୁଡ଼ିକ ରକ୍ତନଦୀର ତରଙ୍ଗ ପରି ଦେଖାଯାଉଥାଏ ଓ ଭାଙ୍ଗିଯାଇଥିବା ଅସ୍ତ୍ରଶସ୍ତ୍ରର ଖଣ୍ଡଗୁଡ଼ିକ ବୃକ୍ଷରୁ ପୁଷ୍ପ ଝଡ଼ିପଡ଼ୁଥିବା ପରି ଦିଶୁଥାଏ । ଢାଲଗୁଡ଼ିକ ଭ୍ରମର ପରି ଦିଶୁଥାଏ । ମୂଲ୍ୟବାନ ମଣିମାଣିକ୍ୟଗୁଡ଼ିକ ଚତୁର୍ଦ୍ଦିଗ ବିଞ୍ଚି ହୋଇ ପଡ଼ି ରଙ୍ଗବିରଙ୍ଗ କ୍ଷୁଦ୍ର ପଥରଖଣ୍ଡ ପରି ଜାଜ୍ୱଲ୍ୟମାନ ହେଉଥାଏ । ଭୟାତୁର ସୈନିକମାନେ ସେହି ବିଭତ୍ସ ଦୃଶ୍ୟ ଦେଖି ଅତ୍ୟନ୍ତ ଆତଙ୍କିତ ହେଉଥାଆନ୍ତି ଓ ଭୟରେ ସେ ସ୍ଥାନ ଛାଡ଼ି ପଳାଇ ଯାଉଥାଆନ୍ତି । ବୀର-ମାନଙ୍କର ବଳ ପରାକ୍ରମକୁ ତାହା ବର୍ଦ୍ଧନ କରୁଥାଏ ।

ଜରାସନ୍ଧର ସୈନ୍ୟ ଯଦିଓ ଅସଂଖ୍ୟ ଥିଲେ ଓ ଯୁଦ୍ଧର ସମସ୍ତ ସାମଗ୍ରୀ ସୁସଜ୍ଜିତ ହୋଇ ରହିଥିଲା, ରାମ-ଶ୍ୟାମ ଦୁଇଭାଇ ତାହା ଶେଷ କରିଦେଲେ । ଛିନ୍ନଭିନ୍ନ କରି ସମସ୍ତ ଧରାଶାୟୀ କରିଦେଲେ । କେବଳ ଜରାସନ୍ଧ ଏକୁଟିଆ ରହିଗଲା । ଦେବତାଗଣ ବିମାନରେ ବସି ଆକାଶ ମାର୍ଗରୁ ଏହି ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ । ସେମାନେ ଭଗବାନଙ୍କର ବଳବୀର୍ଯ୍ୟର ଭୂରି ଭୂରି ପ୍ରଶଂସା କରୁଥିଲେ । କିନ୍ତୁ ଏହା ସର୍ବଶକ୍ତିମାନ ଭଗବାନଙ୍କ ପକ୍ଷରେ ଅତି ସାଧାରଣ କଥା ଥିଲା । ସେ ମାନବ ରୂପ ଧାରଣ

କରିଥିବା ଦୃଷ୍ଟିରୁ ତାଙ୍କର ଏହି କାର୍ଯ୍ୟ ଦେବତାମାନଙ୍କୁ ଆଶ୍ଚର୍ଯ୍ୟ ବୋଧ ହେଉଥିଲା । (୧)

ଜରାସନ୍ଧର ସମସ୍ତ ସୈନ୍ୟ ମୃତ୍ୟୁବରଣ କଲେ, ସେ ନିଜେ ମଧ୍ୟ ଏହି ସମରରେ ପରାଜିତ ହେଲା । ଶ୍ରୀ ସଙ୍କର୍ଷଣ ତାହାର ବିଶାଳ ରଥ ଭାଙ୍ଗିଦେଲେ । ସାରଥିକୁ ମାରିଦେଲେ ଓ ଅଶ୍ୱଙ୍କୁ ଯମଭୁବନ ପଠାଇ ଦେଲେ । ସେ ଯେତେବେଳେ ନିରସ୍ତ୍ର ଓ ବିରଥ ହୋଇଗଲା, ସେତେବେଳେ ବଳଦେବ ନିଜ ରଥରୁ ଓହ୍ଲାଇ ଆସି ତାକୁ ଧରିନେଲେ ଓ ତାକୁ ବାରୁଣପାଶରେ ବାନ୍ଧିପକାଇ ମାରିଦେବାକୁ ଉଦ୍ୟତ ହେଲେ । ଭଗବାନ ସେତେବେଳେ କହିଲେ "ଭାଇ ! ଆପଣ କ'ଣ କରିବାକୁ ଯାଉଛନ୍ତି ? ତାକୁ ଏବେ ମାରନ୍ତୁ ନାହିଁ ।"

ବଳଦେବ କହିଲେ—"କୃଷ୍ଣ ! ତୁ ବୁଝିପାରୁ ନାହୁଁ, ଏ ଦୁଷ୍ଟ ବହୁତ ସାରରାଜାଙ୍କୁ ଅକାରଣରେ ନିର୍ଦ୍ଦୟ ଭାବରେ ବଧ କରିଛି । ତେଣୁ ଏହାକୁ ମାରିଦେବା ଉଚିତ । ମୁଁ ଏହାକୁ ମାରି ପୃଥିବୀର ସମସ୍ତ ରାଜାଙ୍କର ଦୁଃଖ ଦୂର କରିବି ।"

ଭଗବାନ କହିଲେ—"ଦେଖନ୍ତୁ ଭାଇ ! ଇଏ ତ ଅସୁରଙ୍କୁ ନାନା ସ୍ଥାନରୁ ଡକାଇ ଆଣି ଆମ ସହିତ ଯୁଦ୍ଧ କରିବାରେ ଦଲାଲୀ କରୁଛି, ତାକୁ ଯଦି ଆପଣ ଏବେ ମାରିଦିଅନ୍ତି, ତେବେ ଅନ୍ୟ କେଉଁ କେଉଁ ସ୍ଥାନରୁ ଯାଇ ଅସୁରମାନଙ୍କୁ ଖୋଜିବାକୁ ହେବ ତାହା ଆମେ ଜାଣି ପାରିବା ନାହିଁ । ଇଏ ବଞ୍ଚି ରହିଲେ, ଅସୁରମାନଙ୍କୁ ଏକତ୍ରିତ କରି ଏଠାକୁ ପୁନଶ୍ଚ ନେଇ ଆସିବ । ତେଣୁ ଏବେ ତାକୁ ନ ମାରି ଛାଡ଼ି ଦିଅନ୍ତୁ ।"

ବଳଦେବ ଶ୍ରୀକୃଷ୍ଣଙ୍କ କଥା ମାନି ତାକୁ ଛାଡ଼ି ଦେଲେ । ସେ ନିଜକୁ ସମସ୍ତ ରାଜାମାନଙ୍କ ମଧ୍ୟରେ ଶୂର-ବୀର ଓ ମାନୀ ବୋଲି ଜ୍ଞାନ କରୁଥିଲା । ତେଣୁ ଏ ପରାଜୟରେ ତା ମନରେ ଅତ୍ୟନ୍ତ ଦୁଃଖ ହେଲା । ସେ ଅତ୍ୟନ୍ତ ଲଜ୍ଜିତ ମଧ୍ୟ ହେଲା । ସେ ନିଜର ମୁଖ କାହାରିକୁ ନ ଦେଖାଇବା ପାଇଁ ନିଶ୍ଚିତ କଲା ଓ ତପସ୍ୟା କରିବା ପାଇଁ ଉତ୍ତର ଦିଗକୁ ଯାତ୍ରା କଲା । ଏ ଦୁଃସମ୍ବାଦ ଯେତେବେଳେ ତାହାର ଅନ୍ୟ ହିତୈଷୀ ରାଜାମାନେ ଶୁଣିଲେ, ସେତେବେଳେ ସେମାନେ ସମସ୍ତେ ତା ନିକଟକୁ ଗଲେ । ତାକୁ

(୧) ଏ ତିନି ଭୁବନ କାରଣ । ମାୟାମନୁଷ୍ୟ ନାରାୟଣ ॥
ଲୀଳା ମାତ୍ରକେ ନରହରି । ଅନନ୍ତ ନାନା ରୂପ ଧରି ॥
ସେ ମାୟାଧର ଯେତେ କୃତ୍ୟ । ମନୁଷ୍ୟ ଲୋକେ ବିପରୀତ ॥
ଏମନ୍ତେ ରିପୁ କଲେ ନାଶ । ରହିଲା ଜରାସନ୍ଧ ଶେଷ ॥

( ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୫୪ )

ଅଟକାଇ ସେମାନେ ନମ୍ରତା ପୂର୍ବକ କହିଲେ—"ରାଜନ୍ ! ଆପଣ କାହିଁକି ଏତେ ଦୁଃଖୀ ହେଉଛନ୍ତି ? ଆମେ, ଆପଣଙ୍କର ସେବକମାନେ, ଅଛୁ । ଆପଣ ଆଜ୍ଞା ଦିଅନ୍ତୁ । ଆମେ ପ୍ରାଣପଣେ ଆପଣଙ୍କୁ ସାହାଯ୍ୟ କରିବୁ ।"

ଜରାସନ୍ଧ କହିଲା—"ରାଜମାନେ ! ଆପଣମାନେ ମୋତେ କୃପା କରି ସାହାଯ୍ୟ କରିବେ ସତ; କିନ୍ତୁ ଏବେ ମୋତେ ବାଧା ଦିଅନ୍ତୁ ନାହିଁ । ମୁଁ ଘୋର ଅରଣ୍ୟ ମଧ୍ୟକୁ ଯାଇ ଉଗ୍ର ତପସ୍ୟା କରିବ । ମୋତେ ଏହି ସାମାନ୍ୟ ଯାଦବ ବାଳକଦ୍ୱୟ ପରାସ୍ତ କରିଦେଲେ । ତେଣୁ ମୁଁ ତୁମଭଳି ରାଜାମାନଙ୍କ ନିକଟରେ ମୁହଁ ଦେଖାଇ ପାରିବି ନାହିଁ । ତେଣୁ ଯାଉଛି ତପସ୍ୟା କରି ଏ ଶରୀରକୁ ଶୁଖାଇ ଶୁଖାଇ ଶେଷ କରିଦେବି ।"

ରାଜାଗଣ କହିଲେ —"ହେ ଦୈତ୍ୟ ଶିରୋମଣି ! ଆପଣ କପରି ଏ ଭୁଲ୍ କାମ କରିବାକୁ କହୁଛନ୍ତି । ମହାରାଜ ! ଯୁଦ୍ଧରେ ଜୟ-ପରାଜୟ ତ ଲାଗି ରହିଛି, ଯେ ଅଶ୍ୱ ଆରୋହଣ କରେ ସେ ଦିନେ ନା ଦିନେ ତା ଉପରୁ ପଡ଼େ । ଯେ ଉତ୍ତମ ଘୋଡ଼-ସବାର, ସେ କଦାପି ପଡ଼ିବାକୁ ଭୟ କରେ ନାହିଁ । ଯେ ସ୍ୱୟଂ ପତିତ, ତାର ପୁଣି ପତନ ହେବାର ପ୍ରଶ୍ନ ଉଠୁଛି କେଉଁଠି ? ପତନ କେବଳ ତାହାର ହୁଏ, ଯେ ଉତ୍ଥାନ ପାଇଁ ବାରମ୍ବାର ପ୍ରଯତ୍ନ କରେ । ଯେ ଉଚ୍ଚ ମଞ୍ଚ ଉପରେ ଶୋଇ ରହେ, ତାହାର ପଡ଼ିଯିବାର ଆଶଙ୍କା ଥାଏ । ଯେ ଆରମ୍ଭରୁ ଭୂମି ଉପରେ ଶୋଇରହେ ସେ କପରି ଅବା ପଡ଼ିବ ? ମନୁଷ୍ୟ ପୂର୍ବ ଜନ୍ମର ସଂସ୍କାରବଶତଃ ଅବଶ ହୋଇଯାଏ । ଯାହା ଠିକ୍ ଏ ହେଲେ ହେବାର ସମ୍ଭାବନା ନ ଥାଏ, ପ୍ରାରବ୍ଧ ବଶତଃ ସେହି କାର୍ଯ୍ୟ ହୋଇଥାଏ । ଆପଣ ସର୍ବଦା ବିଜୟୀ ହୋଇ ଆସିଛନ୍ତି । କେହି ହେଲେ ସ୍ୱପ୍ନରେ ଭାବି ନ ଥିଲେ ଯେ, ଆପଣଙ୍କର ପରାଜୟ ହେବ । କିନ୍ତୁ ପ୍ରାରବ୍ଧ ବଶତଃ ଆପଣଙ୍କୁ ଏହି ନଗଣ୍ୟ ଯାଦବ ବାଳକଦ୍ୱୟ ହରାଇ ଦେଲେ । ଏହା ମଧ୍ୟ ଅତ୍ୟନ୍ତ ସୌଭାଗ୍ୟର ବିଷୟ ଯେ, ଆପଣ ବର୍ତ୍ତମାନ ସକୁଶଳ ଅଛନ୍ତି । ଆପଣ ଶରୀର ଶୁଖାଇବାର ସଙ୍କଳ୍ପରୁ ବିରତ ହୁଅନ୍ତୁ । ଆପଣ ଜୀବିତ ରହିଲେ ଶତ ଶତ କଲ୍ୟାଣକର କାର୍ଯ୍ୟ ଦେଖି ପାରିବେ । ଦିନେ ନା ଦିନେ ଆପଣ ଏ ଯାଦବଙ୍କୁ ମଧ୍ୟ ପରାସ୍ତ କରି ପାରିବେ । ଏ ନଗଣ୍ୟ ହୀନବଳ ଯାଦବ-ମାନଙ୍କୁ ଭୟ କରିବା ଅନୁଚିତ । ଏବେ ଆମେ ସମସ୍ତେ ମିଳି ଏ ଦୁହିଙ୍କ ଉପରେ ଆକ୍ରମଣ କରିବୁ । ଆପଣ ରାଜଧାନୀକୁ ଫେରି ଯାଆନ୍ତୁ ।"

ରାଜାମାନଙ୍କର ଧର୍ମଶିକ୍ଷା ପୂର୍ଣ୍ଣ ଲୌକିକ ନୀତିଯୁକ୍ତ ଆଶ୍ୱାସନା ବାଣୀ ଶୁଣି ପରାଜୟ ଦୁଃଖରେ ଦୁଃଖିତ ହେଉଥିବା ଜରାସନ୍ଧ ଉଦାସ ମନରେ ନିଜ ରାଜ୍ୟ ମଗଧକୁ ଫେରି ଆସିଲା ଓ ପୁନଃ ସୈନ୍ୟ ସଂଗ୍ରହରେ ଲାଗି ପଡ଼ିଲା । ସେ ସଂକଳ୍ପ କରିନେଲା ଯେ, "ମୁଁ ଯେଉଁ ପର୍ଯ୍ୟନ୍ତ ଏହି ଯାଦବଙ୍କୁ ନାଶ ନ କରିଛି, ସେ ପର୍ଯ୍ୟନ୍ତ ଏମାନଙ୍କୁ ପରାଜିତ

ନ କରିଛୁ, ସେ ପର୍ଯ୍ୟନ୍ତ ମୋର ବିଶ୍ରାମ ନାହିଁ ।" ଏଥିପାଇଁ ସେ ପ୍ରଯତ୍ନ ପୂର୍ବକ ପୁନର୍ବାର ବହୁ ସଂଖ୍ୟକ ସୈନ୍ୟ ଯୁଟାଇଲା ।

ଏଣେ ଜରାସନ୍ଧର ସୈନ୍ୟଙ୍କୁ ସଂହାର କରି ଏବଂ ନିଜର ନିର୍ଭିକ ସୈନ୍ୟମାନଙ୍କୁ ସକୁଶଳ ସଙ୍ଗରେ ନେଇ ଶ୍ରୀକୃଷ୍ଣ ବଳରାମଙ୍କ ସହିତ ମଥୁରା ଫେରି ଆସିଲେ । ସମସ୍ତେ ଭାବୁଥିଲେ ଯେ, ସମରରୂପକ ସାଗରକୁ ସମସ୍ତ ସୈନ୍ୟ ଶ୍ୟାମସୁନ୍ଦରଙ୍କ ସହାୟତାରେ ଅନାୟାସରେ ପାରି ହୋଇ ଆସିଲେ ।

ଭଗବାନ ବିଜୟୀ ହୋଇ ନିଜର ବଡ଼ ଭାଇ ସଙ୍କର୍ଷଣଙ୍କ ସହିତ ଯେତେବେଳେ ଆସି ମଥୁରାପୁରୀରେ ପହଞ୍ଚିଲେ, ସେତେବେଳେ ଦେବତାଗଣ ପ୍ରସନ୍ନ ହୋଇ ବିମାନରୁ ତାଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ଗନ୍ଧର୍ବଗଣ ଗାନକଲେ ଓ ଅପ୍‌ସରାଗଣ ନୃତ୍ୟ କରିବାରେ ଲାଗିଲେ । ଯାଦବଙ୍କର ବଂଶ ପରମ୍ପରାଗତ ସୂତ, ମାଗଧ ଓ ବନ୍ଦୀଗଣ ତାଙ୍କର ବିଜୟ କୀର୍ତ୍ତିର ସଙ୍ଗୀତ ରଚନା କରି ଗାଇବାରେ ଲାଗିଲେ । ଚତୁର୍ଦ୍ଦିଗ ଶଙ୍ଖ, ଦୁନ୍ଦୁଭି, ଭେରି, ତୂରୀ, ମୃଦଙ୍ଗ, ବୀଣା, ବେଣୁ, ପଣବ, ବଂଶୀ ଓ ଅନ୍ୟାନ୍ୟ ମଙ୍ଗଳମୟ ବାଦ୍ୟରେ ନିନାଦିତ ହୋଇ ଉଠିଲା । ନଗରବାସୀଗଣ ବିଜୟ ଉପଲକ୍ଷେ ମଥୁରାପୁରୀକୁ ଉତ୍ତମରୂପେ ସଜାଇ ଥିଲେ । ରାଜ ପଥରେ ସୁଗନ୍ଧିତ ଜଳକଣା ଲୋକମାନଙ୍କ ଉପରେ ଛିଞ୍ଚା ଯାଉଥିଲା । ସ୍ଥାନେ ସ୍ଥାନେ ତୋରଣ, ବନ୍ଦନା ଛଳୀ ତଥା ଅନ୍ୟାନ୍ୟ ସାଜସଜା ହୋଇଥିଲା । ଚତୁର୍ଦ୍ଦିଗରେ ବିଜୟ ଧ୍ୱଜା ଉଡ଼ି ଭଗବାନଙ୍କୁ ସତେ ଯେପରି ସ୍ୱାଗତ ଅଭିନନ୍ଦନ ଜଣାଉଥିଲା । ବ୍ରାହ୍ମଣଗଣ ବେଦ ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ କରୁଥିଲେ ।

ଭଗବାନ ଯେତେବେଳେ ଖୋଲା ରଥ ଉପରେ ବସି ରାଜପଥ ଅତିକ୍ରମ କଲେ, ସେତେବେଳେ ଅଟ୍ଟାଳିକାମାନଙ୍କ ଉପରୁ ସ୍ତ୍ରୀଲୋକମାନେ ପ୍ରଫୁଲ୍ଲିତ ନୟନରେ ତଥା ସ୍ନେହପୂର୍ଣ୍ଣ ଦୃଷ୍ଟିରେ ତାଙ୍କୁ ଚାହିଁ ସୁଗନ୍ଧ ପୁଷ୍ପ, ମନୋହର ମାଳା, ଦଧି, ଅକ୍ଷତ, ଦୁର୍ବାଦଳ ଆଦି ତାଙ୍କ ଉପରେ ବୃଷ୍ଟି କରୁଥିଲେ । ସୈନ୍ୟଗଣ ଭଗବାନଙ୍କର ଜୟଗାନ କରି ପଛେ ପଛେ ଚାଲୁଥିଲେ । ନାଗରିକଗଣଙ୍କର କୋଳାହଳରେ ମଥୁରାପୁରୀ ଗହ ଗହ କମ୍ପି ଉଠୁଥିଲା ।

ଜରାସନ୍ଧକୁ ଜୟକରି ଭଗବାନ୍ ତାହାର ବହୁତ ଧନ ନେଇ ଆସିଥିଲେ । ସେହି ଧନକୁ ସେ ଯାଦବ ଅଧିପ ନିଜର ଅଜା ଉଗ୍ରସେନଙ୍କୁ ପ୍ରଦାନ କରି ଥିଲେ । ଉଗ୍ରସେନ ତାହା ସମ୍ମାନ ପୂର୍ବକ ଗ୍ରହଣ କରି ଯାଦବଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । (୧)

---

(୧) ଯୁଦ୍ଧେ ଜିଣିଲୁ ଧନ ଅଣି । ବୋଲନ୍ତି ପ୍ରଭୁ ଚକ୍ରପାଣି ॥
ରାଜନ ଜିଣିଲୁ ସମର । ଏ ଧନ ଭଣ୍ଡାର ତୁମ୍ଭର ॥
( ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୫୪ )

ସୂତ କହିଲେ—"ମୁନିଗଣ ! ଜରାସନ୍ଧ ଯାଦବମାନଙ୍କ ଉପରେ ରାଗିଥାଏ । ସେ ରାଗରେ ଜର୍ଜରିତ ହୋଇ ମନେ ମନେ ଭାବୁଥାଏ— ପୃଥିବୀରେ ମୋଠାରୁ ବଳି ଯୋଦ୍ଧା ବି ଜନ୍ମ ହୋଇଛନ୍ତି । ସେଥିପାଇଁ ସେ ଯାଦବଗଣଙ୍କୁ ବିନାଶ କରିଦେବା ନିମନ୍ତେ ସତତ ପ୍ରଯତ୍ନ କରୁଥିଲା । ସେ ଏଥର ପୁନଶ୍ଚ ସୈନ୍ୟ ସଂଗ୍ରହ କରି ଉତ୍ସାହର ସହିତ ଯାଦବଙ୍କ ଉପରେ ଆକ୍ରମଣ କଲା ।

ଭଗବାନ ତ ତାହାର ବଳ କଳନା କରି ସାରିଥିଲେ । ବଳଦେବ ମଧ୍ୟ ବୁଝି ସାରିଲେ ଯେ, ସାନଭାଇ ଯାହା କହୁଥିଲା, ତାହା ଠିକ୍ । ଦୁଇଭାଇ ମିଶି ଜରାସନ୍ଧ ସହିତ ଯୁଦ୍ଧ କରିବା ପାଇଁ ଏହି ନିୟମ ପାଳନ କରିବାକୁ ସ୍ଥିର କରିଥିଲେ ଯେ, ତାହାର ସମସ୍ତ ସେନାଙ୍କୁ ମାରି ସାରିଲା ପରେ ତାକୁ ନିରସ୍ତ କରି ଛାଡ଼ି ଦେବେ । ତାକୁ ଛାଡ଼ି ଦେଲେ ସେ ପୁଣି ନୂଆ ନୂଆ ସୈନ୍ୟ ସଂଗ୍ରହ କରି ପୁନଶ୍ଚ ଆକ୍ରମଣ କରିବ । ଏହିଭଳି ସେ ସତରଥର ଶ୍ରୀକୃଷ୍ଣଙ୍କ ଅଧିକୃତ ମଥୁରା ଉପରେ ଆକ୍ରମଣ କରିଥିଲା ଓ ପରାଜିତ ହୋଇ ଲଜ୍ଜାରେ ନିଜ ପୁରକୁ ଫେରି ଯାଇଥିଲା । ଏଥର ସେ କଠୋର ପ୍ରତିଜ୍ଞା କଲା ଯେ ଯାଦବମାନଙ୍କୁ ଜୟ ନ କଲେ ମୁଁ ନିଜ ପୁରୀକୁ ଆଉ ଫେରିବି ନାହିଁ । ଏହି ପ୍ରକାର ପ୍ରତିଜ୍ଞାବଦ୍ଧ ହୋଇ ସେ ପୁନଶ୍ଚ ଆକ୍ରମଣ କରିଦେଲା । ଏଥର ମହାବଳୀ କାଳଯବନ ତା ସହିତ ଆକ୍ରମଣ କରିଥିଲା । ଏ ଦୁହିଁଙ୍କୁ ଭୟଙ୍କର ଛଳନା କରି ଭଗବାନ ଯେପରି ପଳାୟନ କଲେ ସେ ପ୍ରସଙ୍ଗ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣନା କରିବ ।"

## ଛପ୍‌ପୟ

ଛାଡ଼େଉ ଦୈତ୍ୟା ! ଜାଇ ଘେରି ଲାବେ ଅସୁରନ କୁଁ ।
ବନୁ ପ୍ରୟାସ ପରଲୋକ ପଠାବେଂ ସବ ପାପିନି କୁଁ ।।
ପୁନି ବଲ ଛୋଡ଼େଂ ତଲୋ କରନ ତପ ନୃପତି ନିବାରେଂ ।
ଆଯୋ ସତ୍ରହ ବାର ସୈନ୍ୟ ସାଜି ପୁନି ପୁନି ହାରେଂ ।।
ପୁନି ତପ କରି ହର ବର ଲହ୍ୟୋ, ଦ୍ୱିଜନି ବଚନ୍ ଆଶିଷ ଦଇ ।
କାଲଯବନ ମଥୁରା ତବହିଁ, ଘେରୀ ହରି ଚିନ୍ତା ଭଇ ।।

—*—

# କାଳଯବନର ଆକ୍ରମଣ

ଅଷ୍ଟାଦଶମସଂଗ୍ରାମେ ଆଗାମିନି ତଦନ୍ତରା ।
ନାରଦପ୍ରେଷିତୋ ବୀରୋ ଯବନଃ ପ୍ରତ୍ୟଦୃଶ୍ୟତ ।। *

( ଶ୍ରୀ ଭା. ୧୦ସ୍କ: ୫୦ ଅ: ୪୪ ଶ୍ଳୋକ )

## ଛପ୍ପୟ

ଯାତେଂ ମାୟା ମନୁଜ ଯବନ ଜୀତ୍ୟୋ ନହିଁ ଜାବୈ ।
ଜରାସନ୍ଧ ହୁ ଆଜ କାଲ୍ଲି ମେଂ ପୁନି ଚଢ଼ି ଆବୈ ।।
ହର ବର ତେଁ ଖଲ ବଢ଼୍ୟୋ ଘେରି ସବ ବନ୍ଧୁନି ମାରେ ।
କାଲଯବନ ସୁତ ଗର୍ଗ ଯାଦବନି ତେଁ ନହିଁ ହାରେ ।।
ତାତେଂ ତଜି ପୁର ଦ୍ୱାରକା, ମହଁ ଦୃଢ଼ ଦୁର୍ଗ ବନାଇଁଗେ ।
ଭାଗି ଚଲେ ରନ ଛୋଡ଼ିକେଂ, ତୋ ରନ ଛୋଡ଼ କହାଏଁ ଗେ ।।

ଭଗବାନଙ୍କର ଗୋଟିଏ ନାମ ବ୍ରହ୍ମଣ୍ୟଦେବ । ଏହାର ଅର୍ଥ ହେଉଛି-ଯେ ବ୍ରାହ୍ମଣଙ୍କୁ ନିଜର ଦେବତା ବୋଲି ମାନନ୍ତି । ଭଗବାନ ସମସ୍ତଙ୍କ କଥା ପ୍ରତ୍ୟାଖ୍ୟାନ କରି ଦେଇ ପାରନ୍ତି; କିନ୍ତୁ ବ୍ରାହ୍ମଣଙ୍କ କଥାକୁ କେବେହେଲେ ପ୍ରତ୍ୟାଖ୍ୟାନ କରି ପାରନ୍ତି ନାହିଁ । ଭୃଗୁ ନାମକ ଜଣେ ବ୍ରାହ୍ମଣ ତାଙ୍କ ଛାତିରେ ପଦାଘାତ କରିଥିଲେ । ତାଙ୍କ ଚରଣ ଚିହ୍ନକୁ ଏ ପର୍ଯ୍ୟନ୍ତ ଭଗବାନ୍ ନିଜ ବକ୍ଷସ୍ଥଳରେ ଧାରଣକରି ଅଛନ୍ତି । ତାଙ୍କର ପ୍ରତିଜ୍ଞା ଏହି ଯେ ଯଦି ମୋର ବାହୁ ବ୍ରାହ୍ମଣଙ୍କ ବିରୁଦ୍ଧ ଆଚରଣ କରେ, ତେବେ ମୁଁ ବିଳମ୍ବ ନକରି ସେ ଦୁଇଟିକୁ ଛେଦନ କରିଦେବ । ଏଥିପାଇଁ ସେ ବ୍ରାହ୍ମଣଙ୍କ ବଚନକୁ

---

* ଶ୍ରୀ ଶୁକଦେବ କହୁଛନ୍ତି, " ରାଜନ୍ ! ଅଷ୍ଟାଦଶ ସଂଗ୍ରାମ ହେବାକୁ ଥିବାବେଳେ, ନାରଦ ପଠାଇଥିବା ବୀର କାଳଯବନ ମଥୁରା ନିକଟରେ ଦେଖାଗଲା ।"

ସତ୍ୟ କରିବାକୁ ଯାଇ ନିଜର କୀର୍ତ୍ତି ହାନିକୁ ମଧ୍ୟ ଚିନ୍ତା କରନ୍ତି ନାହିଁ । ତାଙ୍କର କୀର୍ତ୍ତି ତ ଚିରସ୍ଥାୟୀ, ନିତ୍ୟ, ତାହା କେହି ଲିଭାଇଦେଇ ପାରିବେ ନାହିଁ । ଅପକୀର୍ତ୍ତି ବା ଅପଯଶ ତ ତାଙ୍କୁ ସ୍ପର୍ଶ କରି ପାରେ ନାହିଁ । ତଥାପି ସେ ଦେଖାଇ ହେବାଭଳି ଲୋକ-ବିରୁଦ୍ଧ କାର୍ଯ୍ୟ ବି କରି ଥାଆନ୍ତି । ଏଥିରେ ତାଙ୍କର ମହତ୍ତ୍ୱ ଆହୁରି ବଢ଼ି ଯାଏ । ଯେ ସ୍ୱଭାବତଃ ସୁନ୍ଦର, ତାଙ୍କର ପ୍ରତ୍ୟେକ କଥା ସୁନ୍ଦର ହୋଇଥାଏ । "ସୁନ୍ଦରେ କିଂ ନ ସୁନ୍ଦରମ୍ ?"

ସୂତ କହୁଛନ୍ତି, "ହେ ମୁନିଗଣ ! ଯେତେବେଳେ ଜରାସନ୍ଧ ସତର ଥର ପାଇଁ ଏଥି ପୂର୍ବରୁ ହାରି ଯାଇଥିଲା, ତାହାର ଅଧିକ ଆତ୍ମଗ୍ଲାନି ହୋଇଥିଲା । ସେ ଯାଇ ଶିବଙ୍କୁ ଏକାନ୍ତରେ ଆରାଧନା କଲା । ଆଶୁତୋଷ ତ ସହଜେ ଭୋଳାନାଥ ବାବା, ଅଳ୍ପକାଳ ମଧ୍ୟରେ ତାହାର ଉପରେ ସନ୍ତୁଷ୍ଟ ହୋଇ ତାକୁ ଦର୍ଶନ ଦେଲେ ଓ ବର ମାଗିବାକୁ କହିଲେ । ସେ କହିଲା—ଆପଣ ଯଦି ମୋ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇଛନ୍ତି, ତାହାହେଲେ ମୋତେ ଏହି ବର ଦିଅନ୍ତୁ ଯେ, ମୁଁ କୃଷ୍ଣଙ୍କ ସହିତ ସମସ୍ତ ଯାଦବଙ୍କୁ ଯେପରି ଜିତି ପାରିବ । ଏଣିକି ମୋର ବିଜୟ ସୁନିଶ୍ଚିତ ହେଉ ।"

ଶିବ ଚିନ୍ତାକଲେ—"ଶ୍ରୀକୃଷ୍ଣଚନ୍ଦ୍ର ତ ମୋର ତଥା ପ୍ରତ୍ୟେକଙ୍କର ପ୍ରଭୁ ଅଟନ୍ତି । ଯଦି ମୁଁ ଏହାକୁ ବର ଦେଉଛି, ତେବେ ଇଷ୍ଟଙ୍କ ଅପମାନ ହେବ । ଯଦି ବର ନ ଦେଉଛି, ତେବେ ମୋ ବଚନ ଅସତ୍ୟ ହୋଇଯିବ । ଏହା ଭଲଭାବରେ ବିଚାର କରି ସେ କହିଲେ—'ଦେଖ ବାବୁ ! ତୁମେ ଯଦି ବ୍ରାହ୍ମଣଙ୍କୁ ପ୍ରସନ୍ନ କରି ତାଙ୍କଠାରୁ ବିଜୟର ଆଶୀର୍ବାଦ ଲାଭକରିପାର, ତାହାହେଲେ ତୁମର ବିଜୟ ସୁନିଶ୍ଚିତ । ଭଗବାନ୍ ସମସ୍ତଙ୍କ କଥା ଏଡ଼ାଇ ଦେଇପାରନ୍ତି; କିନ୍ତୁ ବ୍ରାହ୍ମଣଙ୍କ ବଚନକୁ ସେ କେବେହେଲେ ଏଡ଼ାଇ ଦିଅନ୍ତି ନାହିଁ । ତେଣୁ ତାଙ୍କର ନାମ ବ୍ରହ୍ମଣ୍ୟଦେବ ।" ଶିବ ଏଥିପାଇଁ ଏହି ଉପାୟ ତାକୁ ବତାଇ ଦେଲେ ।"

ଜରାସନ୍ଧ ଏହାଶୁଣି ନିଜ ରାଜଧାନୀକୁ ଫେରି ଆସିଲା ଓ ବ୍ରାହ୍ମଣଙ୍କୁ ପ୍ରସନ୍ନ କରିବା ପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା କଲା । ବ୍ରାହ୍ମଣଙ୍କୁ ବିଧି ବିଧାନ ଅନୁସାରେ ପୂଜା କରିବା, ତାଙ୍କୁ ସୁବର୍ଣ୍ଣ ସିଂହାସନରେ ବସାଇବା, ଯାହା ଚାହିଁବେ ତାହା ଶୀଘ୍ର ଦାନ କରିବା, ଯେତେ ଦୁର୍ଲଭ ବସ୍ତୁ ହୋଇଥିଲେ ହେଁ ବ୍ରାହ୍ମଣ ଇଚ୍ଛା କରିବା ମାତ୍ରେ ତାଙ୍କୁ ତାହା ପ୍ରଦାନ କରିବାରେ ସେ କୁଣ୍ଠାବୋଧ କଲା ନାହିଁ । ବ୍ରାହ୍ମଣଙ୍କ ନିକଟରେ ହାତ ଯୋଡ଼ିବା ମାତ୍ରେ ତ ସେମାନେ ପ୍ରସନ୍ନ ହୋଇ ଯାଆନ୍ତି । ଏହା ବ୍ୟତୀତ ପୁଣି ଜରାସନ୍ଧର ଏତେ ସେବାରେ ସେମାନେ ଅବା ପ୍ରସନ୍ନ ନ ହୁଅନ୍ତେ କିପରି ? ବ୍ରାହ୍ମଣମାନେ ଜରାସନ୍ଧ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇ ତାକୁ ଆଶୀର୍ବାଦ ଦେଲେ ଯେ -"ଏଥର ତୋର ବିଜୟ ନିଶ୍ଚୟ ହେବ ।"

ଏହା ଶୁଣି ଜରାସନ୍ଧ ଅତ୍ୟନ୍ତ ପ୍ରସନ୍ନ ହୋଇ ପୂର୍ବାପେକ୍ଷା ଅଧିକ ଉତ୍ସାହିତ ହେଲା । ତାହାର ପୂର୍ଣ୍ଣବିଶ୍ୱାସ ହେଲା ଯେ, ସେ ଏଥର ନିଶ୍ଚୟ ବିଜୟ ଲାଭ କରିବ । ଶିବଙ୍କ ବଚନ ଓ ବ୍ରାହ୍ମଣଙ୍କ ବଚନ କଦାପି ମିଥ୍ୟା ହୋଇ ନ ପାରେ । ଏହା ଚିନ୍ତା କରି ସେ ପୁନର୍ବାର ମଥୁରା ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇଗଲା ।

ଏଣେ ମଥୁରାରେ ସେତିକି ବେଳକୁ ଏକ ଅଦ୍ଭୁତ ଘଟଣା ଘଟିଥାଏ । ପଶ୍ଚିମ ଦେଶରୁ କାଲଯବନ ନାମକ ଯବନ ରାଜା ତିନି କୋଟି ସୈନ୍ୟ ନେଇ ଆସି ମଥୁରାପୁରୀ ଘେରାଉ କରି ନେଇଥାଏ । (୧) ସେହି କାଲଯବନର ଘେରାଉ ଦେଖି ଭଗବାନ ଶ୍ରୀକୃଷ୍ଣ ମଧ୍ୟ ଚିନ୍ତିତ ହୋଇ ପଡ଼ିଥାଆନ୍ତି । ସେ ଭାବୁ ଥାଆନ୍ତି, ଯାଦବ ସୈନ୍ୟଙ୍କଦ୍ୱାରା ତ କାଲଯବନକୁ ଜୟକରି ହେବ ନାହିଁ । ତା ସହିତ ଯୁଦ୍ଧ କଲେ ନିଜର କ୍ଷତି ବ୍ୟତୀତ ଲାଭ ହେବନାହିଁ । ଜରାସନ୍ଧ ମଧ୍ୟ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇ ସିବଣି । ଏବେ କ'ଣ କରିଯାଇ ପାରେ ?"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଏ କାଲଯବନ ଏପରି ବଳବାନ୍ ହେଲା କିପରି ? ଯେଉଁ ଭଗବାନଙ୍କୁ ଅଚ୍ୟୁତ ଓ ଅପରାଜିତ ବୋଲି କୁହାଯାଏ, ସେ ତାହା ସହିତ ଯୁଦ୍ଧ କରିବାକୁ ମଧ୍ୟ ଭୟ କରୁଛନ୍ତି ?"

ଏହା ଶୁଣି ସୂତ ହସି ହସି କହିଲେ—"ମହାରାଜ ! ଏହା ତ ଭଗବାନଙ୍କର ଏକ ଖେଳ । ସେ ଅନ୍ୟକୁ ସମ୍ମାନ ଦେବାପାଇଁ ନିଜର ପରାଜୟ ସ୍ୱୀକାର କରିଥାଆନ୍ତି । କଥା ହେଉଛି କାଲଯବନ ଯାଦବଙ୍କ ପୁରୋହିତ ବୃଦ୍ଧ ଗର୍ଗଙ୍କର ପୁତ୍ରଥିଲା । ଗର୍ଗ ତାକୁ ଏପରି ସଙ୍କଳ୍ପନେଇ ଉତ୍ପନ୍ନ କରିଥିଲେ ଯେ, ସେ ଯେପରି ଯାଦବଙ୍କ ନିକଟରେ ଅତ୍ୟନ୍ତ ଭୟାବହ ହେବ । ଯାଦବଗଣ ତାକୁ କୌଣସି ପ୍ରକାରରେ ଜିତି ନ ପାରିବେ । ଏଥିପାଇଁ ନିଜେ ଭଗବାନ୍ ମଧ୍ୟ ତାହାର ସମ୍ମୁଖୀନ ହେଲେ ନାହିଁ ।"

ଶୌନକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ହେ ସୂତ ! ଯବନ କିପରି ମହର୍ଷି ଗର୍ଗଙ୍କର ପୁତ୍ର ହୋଇପାରିଲା ? ପୁନଶ୍ଚ ଗର୍ଗ ତ ଯାଦବଙ୍କର କୁଳଗୁରୁ, ସେ ଯାଦବଙ୍କର

---

(୧) ଯବନ ବଳ ତିନିକୋଟି । ଯାଇଁଲା ବନ ଗିରି ଘୋଟି ॥
ରଜନୀକାଳେ ମଧୁପୁରୀ । ଭୁଞ୍ଜିଲା ତିନିପୁର କରି ।
( ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୫୪ )

ଭୟପ୍ରଦାନକାରୀ ପୁତ୍ର କାହିଁକି ଉତ୍ପନ୍ନ କରାଇଲେ ? କୃପାକରି ଏହି କଥା ପ୍ରଥମେ ଆମ୍ଭମାନଙ୍କୁ କହି ପରେ ଅନ୍ୟ ପ୍ରସଙ୍ଗ କୁହନ୍ତୁ ।''

ସୂତ କହିଲେ—''ମହାରାଜ ! ଭବିଷ୍ୟତରେ ଯାହା ଘଟିବାର ଥାଏ, ତାହା ହିଁ ଘଟିଥାଏ । ଭବିତବ୍ୟ ନିକଟରେ ମନୁଷ୍ୟର କିଛି କରିବାର କ୍ଷମତା ନାହିଁ । ସମୟ ସମୟରେ ହସଖୁସି ହେଉ ହେଉ ଏପରି ଅନର୍ଥ ଘଟିଯାଏ, ଯାହାର ପ୍ରଭାବରେ କି ମନୁଷ୍ୟ ଭୟାନକ ବିପତ୍ତିରେ ପଡ଼େ । ବାସ୍ତବ ଘଟଣା ଏହି ଯେ, ବୃଦ୍ଧ ଗର୍ଗମୁନି ଯାଦବଙ୍କର କୁଳଗୁରୁ ଥିଲେ । ସେ ଅତ୍ୟନ୍ତ ସଦାଚାରୀ ତପସ୍ୱୀ, ସତ୍ୟବାଦୀ ଓ ଧର୍ମାତ୍ମା ଥିଲେ । ଜ୍ୟୋତିଷ ଶାସ୍ତ୍ରରେ ସେ ଆଚାର୍ଯ୍ୟ ମଧ୍ୟ ଥିଲେ । ଥରେ ସେ ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ କରି ଘୋର ତପସ୍ୟା ଆରମ୍ଭ କରିଦେଲେ । ସେ ନିଜ ପତ୍ନୀଙ୍କ ଠାରୁ ପୃଥକ୍ ରହୁଥିଲେ ଓ ନିୟମ ଅନୁସାରେ ଅନୁଷ୍ଠାନ କରୁଥିଲେ । ଦିନେ ସେ ଯାଦବମାନଙ୍କ ସଭାକୁ ଆସିଲେ, ସେ ସଭାରେ ସମସ୍ତ ମୁଖ୍ୟ ମୁଖ୍ୟ ଯାଦବ ଥିଲେ । ଶଳା ଭଣୋଇଙ୍କ ସମ୍ବନ୍ଧ ହସଖୁସିରେ ହିଁ ଚାଲେ । ଗର୍ଗମୁନିଙ୍କର ଶଳା ଅତି ବ୍ୟଙ୍ଗ ଭାବରେ ଗର୍ଗଙ୍କୁ କହିଲେ—'ଏ ଆମ ଭଣୋଇ ହେଉଛନ୍ତି ଜଣେ ନପୁଂସକ ବ୍ୟକ୍ତି ।' ସେଠାରେ ଯେତେ ଯାଦବ ଥିଲେ, ସେମାନେ ଏହି କଥା ଶୁଣି ସମସ୍ତେ ଅଚ୍ଛା ମଜାରେ ହସି ହସି ଗଡ଼ିଗଲେ । ବାସ୍ତବରେ ଏହା ତ ହସ କଥା ଥିଲା । କିନ୍ତୁ, ସବୁ ସମୟରେ ସବୁକଥାରେ ଅଚ୍ଛା ମଜା ଚଳେ ନାହିଁ । ଏ କଥା ଗର୍ଗଙ୍କୁ ବହୁତ ଖରାପ ଲାଗିଲା । ସେ ଚିନ୍ତା କଲେ ଇଏ ତ ମୋ ଶଳା, ତା କଥାକୁ ମୁଁ ସେତେ ଗୁରୁତ୍ୱ ଦେବା ଠିକ୍ ନୁହେଁ; କିନ୍ତୁ ଅନ୍ୟମାନେ ତ ହେଉଛନ୍ତି ମୋର ଶିଷ୍ୟ, ସେମାନେ କାହିଁକି ମୋତେ ହସି ଉଡ଼ାଇ ଦେଲେ ? ଅଚ୍ଛା ଠିକ୍ ଅଛି, ମୁଁ ପ୍ରତିଜ୍ଞା କରୁଛି ଯେ, ମୁଁ କିପରି ନପୁଂସକ, ମୁଁ ମଧ୍ୟ ଦିନେ ଦେଖାଇ ଦେବି । ମୁଁ ଏପରି ପୁତ୍ର ଉତ୍ପନ୍ନ କରିବି, ଯାହାକୁ କି ଯୁଦ୍ଧରେ କେହି ହରାଇ ପାରିବେ ନାହିଁ ଓ ଯାଦବଙ୍କ ପାଇଁ ସେ ଅତ୍ୟନ୍ତ ଭୟାବହ ହେବ ।''

ଏହା ସ୍ଥିର କରି ସେ ତପସ୍ୟା କରିବା ପାଇଁ ବନକୁ ଚାଲିଗଲେ । ଏପରି କାର୍ଯ୍ୟପାଇଁ ସମସ୍ତେ ଆଶୁତୋଷ ଭଗବାନ ଭୂତନାଥଙ୍କୁ ଆରାଧନା କରନ୍ତି । ଗର୍ଗ ମଧ୍ୟ ସଦାଶିବଙ୍କର ଆରାଧନା କରିବାକୁ ଲାଗିଲେ । କିଛିଦିନ ମଧ୍ୟରେ ଶିବ ସନ୍ତୁଷ୍ଟ ହୋଇ ତାଙ୍କୁ ବର ମାଗିବାକୁ କହିଲେ । ଗର୍ଗ କହିଲେ—''ହେ ମହାଦେବ ! ମୋର ଏପରି ଏକ ପୁତ୍ର ହେଉ, ଯାହାକୁ ଯୁଦ୍ଧରେ କେହି ହରାଇପାରିବେ ନାହିଁ ଓ ଯାଦବଙ୍କ ପାଇଁ ସେ ଅତ୍ୟନ୍ତ ଭୟପ୍ରଦ ହେବ ।''

ଶିବ ତ ସହଜେ ଭୋଳାନାଥ । ସେ ବର ଦେବା ସମୟରେ ଏତିକି ବିଚାର କରି ପାରିଲେ ନାହିଁ ଯେ, ଏହି ବରର ପ୍ରଭାବରେ ଭବିଷ୍ୟତରେ କି ଫଳ ଫଳିବ ।

ଯେତେବେଳେ ଯିଏ ଯାହା ମାଗିଲା, ସେ ତାହା ଦେଇଦେଲେ । ଏହା ଦ୍ୱାରା ପଛରେ କଣ ସଙ୍କଟ ଘଟିବ ତାହା ବିଚାର କଲେ ନାହିଁ । ତେଣୁ ସେ ଅପରିଣାମଦର୍ଶୀ ବୋଲି ସମସ୍ତେ କହନ୍ତି । ସେ କହିଦେଲେ—"ହଁ ତାହା ହିଁ ହେବ । ତୁମର ପୁତ୍ର ସବୁଠାରେ ସମରରେ ବିଜୟ ଲାଭ କରିବ ।"

ଏହି ବର ଲାଭ କରି ସେ ସେଠାରୁ ଚାଲି ଆସିଲେ । ଏହି ସମାଚାର ଯବନମାନଙ୍କର ବୃଦ୍ଧରାଜା ଶୁଣି ପାରିଲେ । ଏହି ଯବନ ପ୍ରଥମେ ବର୍ଣ୍ଣାଶ୍ରମୀ ବୈଦିକ ଧର୍ମାବଲମ୍ବୀ ହିଁ ଥିଲେ । ପରେ ସେ ପଥଭ୍ରଷ୍ଟ ହେବାରୁ ରାଜାମାନେ ତାଙ୍କୁ ବେଦ ବହିଷ୍କୃତ କରିଦେଲେ ଓ ପଶ୍ଚିମରେ ସେ ନିଜର ଉପନିବେଶ କରି ରହିବାକୁ ଲାଗିଲେ । ଆଜିର ମଧ୍ୟ ତାହାର ସଂସ୍କାର ମାନ ତ ଏହି ଦେଶର ଥିଲା । ସେ ଚିନ୍ତା କଲା, ଯଦି ବୃଦ୍ଧ ଗର୍ଗ ମୋ ରାଣୀଙ୍କ ଗର୍ଭରୁ ପୁତ୍ର ଉତ୍ପନ୍ନ କରନ୍ତି, ତେବେ ମୋତେ ସମର ବିଜୟୀ ଶୂରପୁତ୍ର ଲାଭ ହୋଇଯିବ । ଏହା ଚିନ୍ତା କରି ସେ ଅନୁନୟ ବିନୟ ହୋଇ ଗର୍ଗଙ୍କୁ ନିଜ ଘରକୁ ନେଇ ଆସିଲା ଓ ତାଙ୍କୁ ପ୍ରାର୍ଥନା କଲା—"ବ୍ରହ୍ମନ୍ ! ମୋ ରାଣୀଙ୍କଠାରୁ ଆପଣ ଏକ ପରମ ଶୂରବୀର ତେଜସ୍ୱୀ ପୁତ୍ର ଉତ୍ପନ୍ନ କରନ୍ତୁ ।"

ଯବନରାଜାଙ୍କର ପ୍ରାର୍ଥନାରେ ମହାମୁନି ଗର୍ଗ ତାହା କଲେ । ତାଙ୍କ ରାଣୀ ଗୋପାଳୀଙ୍କ ଠାରୁ ଏହି କାଳଯବନ ଉତ୍ପନ୍ନ ହେଲା । କିଛିଦିନ ପରେ ସେ ଯୁବରାଜ ହୋଇ ରାଜ୍ୟଭାର ବହନ କଲା ଓ ବୃଦ୍ଧରାଜା ତାଙ୍କୁ ରାଜ୍ୟଭାର ଦେଇ ବନକୁ ତପସ୍ୟା କରିବାକୁ ଚାଲିଗଲେ । ଏହି କାଳଯବନ ତ ଅତ୍ୟନ୍ତ ବଳବାନ ଓ ପରାକ୍ରମୀ ହେଲା । ତାଙ୍କୁ କେହି ଯୁଦ୍ଧରେ ପାରୁ ନ ଥିଲେ । ସେ ତାହାର ବିରାଟ ସେନା ଏକତ୍ରିତ କରି ସମସ୍ତ ପାଖାପାଖି ରାଜ୍ୟ ଜୟ କରିନେଲା । ସେ ଶକ, ତୁଷାର, ଦରଦ, ପାରଦ, ତଙ୍ଗଣ, ଖଶ, ପଲ୍ଲବ, ହେମବତ ଓ ଅନ୍ୟାନ୍ୟ ଶତ ଶତ ମ୍ଲେଚ୍ଛ ଜାତିର ରାଜାମାନଙ୍କୁ ନିଜର ଅଧୀନ କରିନେଲା ଓ ସେମାନଙ୍କୁ ସଙ୍ଗରେ ନେଇ ଯୁଦ୍ଧ କରିବାକୁ ବାହାରିଲା । ଦୈବ ଯୋଗକୁ ପଥ ମଧ୍ୟରେ ଦେବର୍ଷି ନାରଦଙ୍କ ସହିତ ଦେଖାହେଲା । ସେ ଦେବର୍ଷିଙ୍କୁ ପ୍ରଣାମ କଲା । ନାରଦ ତାଙ୍କୁ କୁଶଳ ପ୍ରଶ୍ନ ଓ ଆଶୀର୍ବାଦ କରି ପଚାରିଲେ—"ତୁମେ କେଉଁଠାକୁ ଯାତ୍ରା କରୁଛ ?"

ସେ କହିଲା—"ବ୍ରହ୍ମନ୍ ! ମୁଁ ଆପଣଙ୍କୁ ସେ କଥା କ'ଣ କହିବି, ଯୁଦ୍ଧ କରିବା ପାଇଁ ମୋ ହାତ ବ୍ୟଗ୍ର ହେଲାଣି; କିନ୍ତୁ ମୋ ସହିତ ଯୁଦ୍ଧ କରିବାକୁ ମୁଁ କାହାରିକୁ ଦେଖୁନାହିଁ । ମୋତେ କହନ୍ତୁ ତ, ଏପରି କେହି ଅଛନ୍ତି, ଯେ କି ମୋ ସହିତ ଯୁଦ୍ଧ କରି ପାରିବେ ?"

ନାରଦ ତ ସର୍ବଦା ଏହିପରି ସୁଯୋଗ ଖୋଜୁଥାଆନ୍ତି । ଏଥିରେ ତାଙ୍କୁ ଆନନ୍ଦ ମିଳେ । ତେଣୁ ସେ କହିଲେ,"ହଁ ରାଜନ୍ ! ତୁମେ ଆଉ କାହିଁକି ଏଣେ ତେଣେ ବୁଲିବ ? ଆଜିକାଲି ତ ଯାଦବମାନେ ଅତି ପରାକ୍ରମୀ ବୋଲି ଗୃହଆଡ଼େ ତାଙ୍କର ଖ୍ୟାତି ପ୍ରଚାର ହୋଇଛି, ଦେଖ, ସମ୍ରାଟ ଜରାସନ୍ଧଙ୍କୁ ସେମାନେ ସତର ଥର ପରାସ୍ତ କରି ସାରିଲେଣି । (୨)

ଏହା ଶୁଣି ସେ ପ୍ରସନ୍ନ ହୋଇ ମ୍ଳେଚ୍ଛ ସୈନ୍ୟମାନଙ୍କୁ ଧରି ମଥୁରା ଅଭିଯାନ କଲା ଓ ମଥୁରା କଟକ ଘେରାଉ କଲା । ଭଗବାନଙ୍କୁ ତ ସବୁକଥା ପୂର୍ବରୁ ଜଣାଥିଲା । ତେଣୁ ସେ ନିଜର ବଡ଼ଭାଇ ବଳରାମଙ୍କୁ ଏକାନ୍ତରେ ସମସ୍ତ କଥା କହି ପଚାରିଲେ— "ଭାଇ ! ଏବେ ଆମେ କ'ଣ କରିବା ?"

ବଳରାମ କହିଲେ—"କ'ଣ କରିବା ଉଚିତ୍, ଏହା ବିଚାର କରିବାକୁ ବେଳ ନାହିଁ, ଚାଲ ତା ସହିତ ଲଢ଼ି ତାକୁ ଯୁଦ୍ଧରେ ପରାସ୍ତ କରିବା ।"

ଭଗବାନ କହିଲେ—"ଭାଇ ! ଏ ଦୁଷ୍ଟ ଏପରି ମରିବ ନାହିଁ । ଏହାର ସୈନ୍ୟ ସଂଖ୍ୟା ମଧ୍ୟ ଅଧିକ ଓ ଯାଦବମାନେ ମଧ୍ୟ ତାକୁ ମାରି ପାରିବେ ନାହିଁ । ତା' ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେବାମାତ୍ରେ ଯଦି ଜରାସନ୍ଧ ଆସି ପହଞ୍ଚିଯାଏ, ତେବେ ଆପଣଙ୍କ ବୁଦ୍ଧି ବଣା ହୋଇଯିବ । ସେ ଆସି ଆମ ବନ୍ଧୁବାନ୍ଧବ ସମସ୍ତଙ୍କୁ ମାରିଦେବ କିମ୍ବା ବନ୍ଧନ କରି ନିଜ ରାଜଧାନୀ ନିକଟକୁ ନେଇଯିବ । ସେ ଏହି ଦିନେ ଦୁଇଦିନ ମଧ୍ୟରେ ଆସି ପହଞ୍ଚିଯାଇ ପାରେ । ଯାଦବମାନେ ଏବେ ସବୁଦିଗରୁ ବିପଦର ସମ୍ମୁଖୀନ ।"

ଏହା ଶୁଣି ବଳଦେବ କହିଲେ—"ତେବେ କି ଉପାୟ କରିବା ତୁ କହ ।" ଭଗବାନ କହିଲେ -"ଭାଇ ! ମୋର ଇଚ୍ଛା ଯେ, ଏବେ ଘରଦ୍ୱାର ମୋହ ଛାଡ଼ି ଚାଲ ଏଠାରୁ ପଳାଇବା ।"

---

(୨) କାଳଯବନ ମୁଖ ଚାହିଁ । ମୁନି କହନ୍ତି ଖେଦ ବହି ॥
ଯାଦବବଂଶେ ମହାବଳୀ । ଅଛନ୍ତି ରାମ ବନମାଳୀ ॥
ଜରାସନ୍ଧର ଯେତେବଳ । ମାଇଲେ ସପ୍ତଦଶ ବେଳ ॥
ତୁ ଯେ ବୋଲାଉ ବଳୀୟାର । ସନ୍ଧୁଙ୍କ ସଙ୍ଗେ ଯୁଦ୍ଧକର ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୫୪)

ବଳଦେବ କହିଲେ—"ଆରେ ଭାଇ ! ଏପରି ଡରି ପଳାଇବା ଉଚିତ୍ ହେବ ନାହିଁ । ଏହାଦ୍ୱାରା କ୍ଷତ୍ରିୟମାନେ ଆମକୁ ନିନ୍ଦା କରିବେ । ସମସ୍ତେ ଆମକୁ ଅପମାନିତ କରିବେ ।"

ଭଗବାନ କହିଲେ—"ଭାଇ ! ଅପମାନକୁ ଆଗକରି ଓ ସମ୍ମାନକୁ ପଛକୁ ପକାଇ ଏ କ୍ଷେତ୍ରରେ ବୁଦ୍ଧିମାନ ପୁରୁଷ ନିଜର କାର୍ଯ୍ୟ ସାଧନ କରେ । ଯେଉଁ ପ୍ରକାରେ ହେଉ, ନିଜର କାର୍ଯ୍ୟ ହାସଲ କରିବା ହିଁ ବୁଦ୍ଧିମାନର କାର୍ଯ୍ୟ ; କିନ୍ତୁ ଅଭିମାନର ବଶୀଭୂତ ହୋଇ ସ୍ୱାର୍ଥ ନାଶ କରିବା ସବୁଠାରୁ ବଳି ମୂର୍ଖତା । ତେଣୁ ବର୍ତ୍ତମାନ ପଳାଇ ଯିବା ଉଚିତ । ବର୍ତ୍ତମାନ ଏଠାରୁ ପଳାଇଗଲେ ଆମ୍ଭମାନଙ୍କର ମଙ୍ଗଳ ହେବ ।"

ବଳଦେବ କହିଲେ -"ଆଚ୍ଛା, ତାହା ହେଲେ ମଥୁରା ଛାଡ଼ି ଆମେ ଏବେ ଯିବା କେଉଁଠିକି ? ଯେଉଁଠିକି ଯିବା କାଳଯବନ ଓ ଜରାସନ୍ଧ ତ ଆମର ଅନୁଧାବନ କରିବେ ।"

ଭଗବାନ କହିଲେ—"ଦେଖନ୍ତୁ ! ଆନର୍ତ୍ତ ଦେଶରେ କୁଶସ୍ଥଳୀ ହେଉଛି ଏକ ଅତି ପ୍ରାଚୀନ ରାଜଧାନୀ । ତାହା ଦ୍ୱାରକା ନାମରେ ଖ୍ୟାତ । ସେହି ଦ୍ୱାରକା ସମୁଦ୍ର ମଧ୍ୟରେ ଅବସ୍ଥିତ । ସତ୍ୟଯୁଗରୁ ସେଠାରେ ଅନେକ କିଲ୍ଲା ରହିଛି । ମହାରାଜ ରୈବତ ପ୍ରଥମେ ସେଠାରେ ରାଜ୍ୟ ସ୍ଥାପନ କରିଥିଲେ । ସେ ଇକ୍ଷ୍ୱାକୁ ବଂଶର ଅତ୍ୟନ୍ତ ପ୍ରତାପୀ ରାଜା ଥିଲେ । ସେ ବ୍ରହ୍ମଲୋକକୁ ଚାଲିଯିବା ପରେ ତାଙ୍କର ବଂଶଜମାନଙ୍କୁ ଗନ୍ଧର୍ବମାନେ ମାରି ଦେଇଥିଲେ । ଏବେ ତାଙ୍କର ସେହି କିଲ୍ଲା ପରିତ୍ୟକ୍ତ ଅବସ୍ଥାରେ ପଡ଼ି ରହିଛି । ତାହାର ଚତୁର୍ଦ୍ଦିଗ ସମୁଦ୍ର ଘେରି ରହିଛି । ତାହା ଅତ୍ୟନ୍ତ ସୁନ୍ଦର ସ୍ଥାନ । ସେଠାକୁ ଯାଇ ଆମେ କିଲ୍ଲା ନିର୍ମାଣ କରିବା । ସ୍ତ୍ରୀ ଲୋକମାନେ ମଧ୍ୟ ସେଠାରେ ବସି ଯୁଦ୍ଧ କରି ପାରିବେ, ପୁରୁଷଙ୍କ କଥାତ ଅଲଗା, ସ୍ତ୍ରୀ ଲୋକମାନେ ବି ସେଠାରେ ରହି ଶତ୍ରୁଙ୍କୁ ପ୍ରତିହତ କରିପାରିବେ ।

ବଳଦେବ କହିଲେ—"ତାହାହେଲେ ଠିକ୍ ଅଛି, ତୁମର ଯେପରି ଇଚ୍ଛା ସେପରି କରିବା । ତଥାପି ଏ ଯବନକୁ ସେହିପରି ଅମେ ଜୀବିତ ଛାଡ଼ି ଦେଇ ଯେତେ-ବେଳେ ଯିବା ସେତେବେଳେ ଯାଦବମାନଙ୍କୁ ସେଠାରେ କିପରି ନେଇ ପହଞ୍ଚାଇବା ? ଦୁର୍ଗ ମରାମତି କାମ କେବେ ଶେଷ କରିବା ?"

ଭଗବାନ କହିଲେ—"ଆପଣ ସେ ବିଷୟରେ ଆଦୌ ଚିନ୍ତା କରନ୍ତୁ ନାହିଁ । ବିଶ୍ୱକର୍ମାଙ୍କୁ କହି ମୁଁ ସଙ୍ଗେ ସଙ୍ଗେ ଦୁର୍ଗ ତିଆରି କରାଇ ଦେଉଛି । ଯୋଗମାୟାଙ୍କ ଦ୍ୱାରା ନିଜର କୁଟୁମ୍ବ ସମସ୍ତ ଯାଦବଙ୍କୁ ସପରିବାର ମୁଁ ସେଠାରେ ପହଞ୍ଚାଇ ଦେଉଛି । ଶେଷରେ ତୁମେ ଓ ମୁଁ ଦୁହେଁ ଏଠାରେ ରହିଥିବା, ଯେତେବେଳେ କାଳଯବନ

ଏଠାକୁ ଆସିବ, ଆମେ ତାକୁ ଅକ୍ଳେଶରେ ମାରି ଦେବା ଓ ମଥୁରାପୁରୀ ଛାଡ଼ି ଦ୍ୱାରକା-ପୁରୀରେ ଯାଇ ରହିବା ।" ବଳଦେବ କହିଲେ—"ତେବେ ଠିକ୍ ଅଛି, ତୁ ଯାହା ଉଚିତ୍ ମନେ କରୁଛୁ ତାହା କର ।"

ସୂତ କହିଲେ—"ମୁନିଗଣ ! ବଳଦେବଙ୍କ ପରାମର୍ଶ ଭଗବାନ କୃଷ୍ଣସ୍ଥଳୀସ୍ଥିତ ସମୁଦ୍ର ମଧ୍ୟରେ ବାର ଯୋଜନ (୪୮ କୋଶ) ବ୍ୟାପୀ ସ୍ଥାନରେ ଏକ ବରିଷ୍ଠ କିଲ୍ଲା ନିର୍ମାଣ କରାଇଲେ । ବିଶ୍ୱକର୍ମା ସେହି କିଲ୍ଲା ନିର୍ମାଣ କରିଥିଲେ । ସେ ନିଜର ସମସ୍ତ କଳା-କୌଶଳ ସେହି କିଲ୍ଲାରେ ଫୁଟାଇ ଥିଲେ । ସବୁଠି ବିଶ୍ୱକର୍ମାଙ୍କର ବିଜ୍ଞାନନିପୁଣତା ଓ ଶିଳ୍ପଚାତୁରୀ ସ୍ପଷ୍ଟ ଜାଜ୍ୱଲ୍ୟମାନ ହେଉଥିଲା । ସେଠାରେ ବଡ଼ ବଡ଼ ରାଜପଥ, ଚଉଛକ, ଗଳିରାସ୍ତା, ଉଦ୍ୟାନ, ବାପୀ, ପୁଷ୍କରିଣୀ, କୂପ, ସଭାଗୃହ, ଗୋଶାଳା, ଦ୍ୱାର ଓ ଆମୋଦ ପ୍ରମୋଦ ସ୍ଥାନ ନିର୍ମାଣ କରାଯାଇଥିଲା । ବଗିଚାମାନଙ୍କରେ ଦେବ ବୃକ୍ଷ ତଥା ପଲ୍ଲବିତ ପୁଷ୍ପିତ ଲତା ଲଗାଯାଇଥିଲା । ଗଗନସ୍ପର୍ଶୀ ସୁବର୍ଣ୍ଣ ଶିଖର ଓ ସ୍ଫଟିକ ମଣିର ତୋରଣରେ ସେହି ସ୍ଥାନର ଦ୍ୱାରଦେଶର ଶୋଭା ଶତଗୁଣିତ ହେଉଥିଲା । ସେଠାରେ ନିର୍ମିତ ହୋଇଥିବା ଅଟ୍ଟାଳିକାମାନ ସୁବର୍ଣ୍ଣରେ ନିର୍ମିତ ହୋଇଥିଲା । ସେହି ଅଟ୍ଟାଳିକାର ପ୍ରାଙ୍ଗଣରେ ମରକତମଣି ଖଚିତ ହୋଇଥିଲା । ଦ୍ୱାରଦେଶରେ ସୁବର୍ଣ୍ଣର କଳସ ସ୍ଥାପନା କରା ଯାଇଥିଲା । ଅଶ୍ୱଶାଳା, ରଥଶାଳା, ଗଜଶାଳା ଓ ଶସ୍ୟାଗାରମାନ ପୃଥକ୍ ପୃଥକ୍ ଭାବରେ ନିର୍ମିତ ହୋଇଥିଲା । ସେଠାରେ ଉଚ୍ଚଶିଖର ବିଶିଷ୍ଟ ବଡ଼ ବଡ଼ ମନ୍ଦିର ଓ ଚନ୍ଦ୍ରଶାଳାମାନ ଶୋଭା ବର୍ଦ୍ଧନ କରୁଥିଲା । ଚତୁର୍ବର୍ଣ୍ଣର ଲୋକେ ସେଠାରେ ରହିବା ପାଇଁ ପୃଥକ୍ ପୃଥକ୍ ନିବାସ କରାଯାଇଥିଲା । ସେହି ଦ୍ୱାରକାପୁରୀର ମଧ୍ୟ ଭାଗରେ ଆନନ୍ଦକନ୍ଦ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପାଇଁ ଅତ୍ୟନ୍ତ ମନୋହର ଭବନ ନିର୍ମାଣ କରା-ଯାଇଥିଲା । ଦେବତାମାନେ ଦେଖିଲେ—ଭଗବାନ୍ ଏକ ନୂତନ ନଗରୀ ନିର୍ମାଣ କରାଉଛନ୍ତି । ଆମ୍ଭେମାନେ ତାଙ୍କୁ ଏଥିରେ ସାହାଯ୍ୟ କରି କିଛି ସେବା କରିବା । ସୁଧର୍ମା ନାମକ ଏକ ସଭା ସେଠାରେ କରାଯିବା ପାଇଁ ବିଚାର କରି ଇନ୍ଦ୍ର ନିଜର ସୁଧର୍ମା ସଭା ସେଠାକୁ ସ୍ଥାନାନ୍ତରିତ କଲେ । ଏହି ସୁଧର୍ମା ସଭାରେ ବସିଲେ ଭୋକ, ଶୋଷ, ଜରା, ମୃତ୍ୟୁ ଓ ଶୋକ ମୋହ ଆଦି ଦୂର ହୋଇଯାଏ । ଏଥିରେ ଯେତେ ଲୋକ ରହନ୍ତି ସେତେ ସଂଖ୍ୟାରେ ବସି ପାରନ୍ତି । ତାହା ଆପେ ଆପେ ଲୋକସଂଖ୍ୟା ଅନୁସାରେ ଛୋଟ, ବଡ଼ ହୋଇଯାଏ । ବରୁଣ ଶ୍ୟାମକର୍ଣ୍ଣ ବିଶିଷ୍ଟ ଦ୍ରୁତ ମନ ପବନ ଘୋଡ଼ା ସେଠାକୁ ପଠାଇଲେ । କୁବେର ନିଜର ଅଷ୍ଟନିଧି ପଠାଇ ଦେଲେ । ଏହିପରି ଭାବରେ ପ୍ରତ୍ୟେକ ଲୋକପାଳ ନିଜ ନିଜ ପାଖରେ ଯାହା କିଛି ଉତ୍ତମ ବସ୍ତୁ ଥିଲା, ତାହା ସେଠାକୁ ପଠାଇ ଦେଲେ । ସେହି ପୁରୀ ସମସ୍ତ ବିଭୂତିରେ ପୂର୍ଣ୍ଣ ହୋଇଗଲା । ଭଗବାନ୍ ନିଜର ଯୋଗମାୟା ଦ୍ୱାରା ନିଜର ସମସ୍ତ ପୁରବାସୀ, ବନ୍ଧୁବାନ୍ଧବମାନଙ୍କୁ ସେହି ପୁରୀରେ

ନେଇ ପହଞ୍ଚାଇ ଦେଲେ । ଯେତେବେଳେ ସମସ୍ତ ଯାଦବ ପରିବାର ସହିତ ସକୁଶଳେ ଦ୍ୱାରକାପୁରୀରେ ଯାଇ ପଦାର୍ପଣ କଲେ, ସେତେବେଳେ ଭଗବାନ ଭାବିଲେ—"ଏବେ ଆଉ ଚିନ୍ତା କରିବାର କିଛୁ ନାହିଁ । ଏବେ ଏଠାକୁ କାଳଯବନ ବା ଜରାସନ୍ଧ ଆସିଲେ ବି କାହାରି କିଛୁ କ୍ଷତି କରି ପାରିବେ ନାହିଁ ।" (ଣ) ଏହା ଚିନ୍ତା କରି ଭଗବାନ ବଳଦେବଙ୍କୁ ପରାମର୍ଶ ଦେଇ ସେଠାରୁ ପଳାଇ ଗଲେ । କପରି ଭାବରେ ଯୁକ୍ତି ଦର୍ଶାଇ ଭଗବାନ ସେଠାରୁ ପଳାଇଥିଲେ ତାହା ପରବର୍ତ୍ତୀ ଅଧ୍ୟାୟରେ ମୁଁ ବର୍ଣ୍ଣନା କରିବି ।

## ଛପ୍‌ପଦୀ

ବଳଦାଉ ତେବେ ପୂଛି ଉଦଧିମଧ୍ୟେ ପୁରୀ ବନାଇ ।
ଦ୍ୱାଦଶ ଯୋଜନ ଦୁର୍ଗ ନୀରନିଧି ତାକୀ ଖାଇ ॥
ଦଇ ସୁଧର୍ମା ସଭା ଇନ୍ଦ୍ର ନେ ଅତି ସୁଖଦାଇ ।
କରୀ ସମର୍ପିତ ସିଦ୍ଧି ସୁରନି କୋ ହରି ତେବେ ପାଇ ॥
ସୁର ଶିଳ୍ପୀ ନଗରୀ ରଚୀ, ଶୋଭା ମୂର୍ତ୍ତିମତୀ ଜହାଁ ।
ପହୁଁଚାୟେ ହରି ଯୋଗ ବଲ, ତେବେ ଯାଦବ ସବଇ ତହାଁ ॥

—※—

(ଣ) ଜଳଧି ମଧ୍ୟେ କୃଷ୍ଣ ଯାଇ । ବୋଲନ୍ତି ବରୁଣଙ୍କୁ ଚାହିଁ ॥
ସମୁଦ୍ର ମଧ୍ୟେ ଗୁଡ଼ ସ୍ଥାନ । ଏଥେ ମୁଁ କରିବି ବିଶ୍ରାମ ॥
ଶୁଣି ଗୋବିନ୍ଦର ବଚନ । ଛାଡ଼ିଲା ଦ୍ୱାଦଶ ଯୋଜନ ॥
ଗୋବିନ୍ଦ ବିଶ୍ୱକର୍ମା ଚାଇ । ବୋଲନ୍ତି ତାର ମୁଖ ଚାହିଁ ॥
ଦ୍ୱାରକା ନାମେ ଦିବ୍ୟପୁର । ଦେବେ ମାନବେ ଅଗୋଚର ॥
ମଥୁରାପୁର ପ୍ରାୟେ କର । ଯାହାର ଯେମନ୍ତ ମନ୍ଦିର ॥
ଗୋବିନ୍ଦ ଆଜ୍ଞା ପରମାଣେ । ନିର୍ମାଣ କଲା ତତକ୍ଷଣେ ॥

(ଶ୍ରୀମଦ୍ ଭାଗବତ : ଜଗନ୍ନାଥ ଦାସ : ସ୍କ. ୧୦. ଅ. ୫୪)

# କାଳଯବନର ବିନାଶ

ପ୍ରଜାପାଳେନ ରାମେଣ କୃଷ୍ଣଃ ସମନୁମନ୍ତ୍ରିତଃ ।
ନିର୍ଜଗାମ ପୁରଦ୍ୱାରାତ୍ ପଦ୍ମମାଲୀ ନିରାୟୁଧଃ ॥ *

(ଶ୍ରୀ: ଭା: ୧୦ସ୍କ: ୫ମ ଅ: ୫୮ ଶ୍ଳୋକ)

## ଛପ୍ପୟ

ଯବନ ଦ୍ୱାରକା ଭେଜି ଭେଟେ ଭଗବାନ୍ ଭଗୋଡ଼େ ।
ମଥୁରା କେ ଘର ଦ୍ୱାର ସଭା ସରବର ସବ ଛୋଡ଼େ ॥
କମଲ କୁସୁମ ଗଲ ମାଲ ନିରାୟୁଧ ଭାଗେ ନଟବର ।
କାଲଯବନ ପହିଚାନ ଭଗେୟା ପୀଛେ ବିନୁ ଧନୁସର ॥
କହେ—ଆରେ ଯାଦବ ଅଧମ, କାୟର ସମ ଭାଗେ କହାଁ ।
ବଲ ପୀଛେ ତେରେ କରୂଁ, ଭଗିକେଂ ତୂ ଜାବେ କହାଁ ॥

ଅଳ୍ପଜ୍ଞତା ସକଳ ପ୍ରକାର ସନ୍ଦେହର କାରଣ । ଅପୂର୍ଣ୍ଣରେ ଦୁଃଖ ମିଳେ । ଯେ ସର୍ବଜ୍ଞ ତାଙ୍କ ପାଇଁ ଯାବତୀୟ କାର୍ଯ୍ୟ ସନ୍ଦେହ ରହିତ ହୋଇଥାଏ । ଯେ ପୂର୍ଣ୍ଣକାମ ସେ ସର୍ବଦା ସୁଖୀ । ତାଙ୍କ ପାଇଁ କୌଣସି କାର୍ଯ୍ୟ ଖରାପ ନୁହେଁ କିମ୍ବା କୌଣସି କାର୍ଯ୍ୟ

---

* ଦ୍ୱାରକାପୁର ମଧ୍ୟେ ଥୋଇ । ମିଳିଲେ ରାମ ସଙ୍ଗେ ଯାଇ ॥
କମଳମାଳା କଣ୍ଠେ ଶୋଭି । କରଯୁଗଳେ ଶଙ୍ଖ ନାହିଁ ॥
ସକଳ ନିଯୋଜିତ କରି । ସୈନ୍ୟ ଅଗ୍ରେ ନରହରି ॥
ମଥୁରା ଗଡ଼ଦ୍ୱାର ମଧ୍ୟେ । କୃଷ୍ଣ ବିଜୟ ପଦ୍ମପାଦେ ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୫୪)

ଭଲ ବା ମନ୍ଦ ନୁହେଁ । ସବୁ କାର୍ଯ୍ୟର ପରିଣାମ ସେ ଜାଣିଥାଆନ୍ତି । ସମସ୍ତଙ୍କର ପ୍ରାରବ୍ଧ ତାଙ୍କୁ ଜଣାଥାଏ । ସମସ୍ତଙ୍କର କାରଣ, ପ୍ରାରବ୍ଧ ଓ ଭାଗ୍ୟ ତାଙ୍କ ଜ୍ଞାତ । ସେ ଯାହା କିଛି କରନ୍ତି, ସବୁ ଉଚିତ୍ କାର୍ଯ୍ୟ କରନ୍ତି, ସେ କରନ୍ତି, ଯାହା ହେବାର ଥାଏ ହୁଏ ।

ସୂତ କହିଲେ—"ମୁନିଗଣ ! ନିଜର ସୁହୃତ୍ ଓ ବନ୍ଧୁ ବାନ୍ଧବଗଣଙ୍କୁ ଦ୍ୱାରକାରେ ପହଞ୍ଚାଇ ଦେଇ ବଳରାମ ଓ ଶ୍ରୀକୃଷ୍ଣ ଦୁହେଁ ମଥୁରାରେ ରହିଗଲେ । କାଳଯବନ ଏହା ଜାଣି ନ ଥିଲା ଯେ, ମଥୁରାପୁରୀ ଖାଲି ହୋଇଯାଇଛି । ସେ ମଥୁରାପୁରୀର ପ୍ରଧାନ ଦ୍ୱାରରେ ନିଜର ଡେରାପକାଇ ଦେଇଥାଏ । ତାକୁ ଯୁଦ୍ଧଧର୍ମ ଜଣାଥିଲା । ଧନର ଲୋଭ ତାର ଆଦୌ ନ ଥିଲା । କିନ୍ତୁ ତାର ଥିଲା କୀର୍ତ୍ତିର ଲାଳସା । ସେ କେବଳ ଯାଦବମାନଙ୍କୁ ଜୟ କରିବାକୁ ଆସିଥିଲା । ସେ ପର୍ଯ୍ୟନ୍ତ ଅସ୍ତ୍ରଶସ୍ତ୍ର ନେଇ ପ୍ରତିଦ୍ୱନ୍ଦ୍ୱୀ ସନ୍ମୁଖକୁ ନ ଆସିଛି, ସେ ପର୍ଯ୍ୟନ୍ତ ସେ କାହା ଉପରେ ଅବା ପ୍ରହାର କରନ୍ତା ? ମଥୁରାପୁରୀକୁ ଘେରିକରି ସେ ଏହି ଆଶା କରିଥିଲା ଯେ ଯାଦବମାନେ ନିଜର ବଳ ପୌରୁଷ ଉପରେ ଅଭିମାନୀ ହୋଇଥିବାରୁ ସେ ସେମାନଙ୍କ ଆଗରେ ନିଜର ଶୌର୍ଯ୍ୟପଣିଆ ଦେଖାଇ ଦେବ । ସେ ଭାବୁଥିଲା ତାକୁ ଯୁଦ୍ଧୋନ୍ମୁଖ ଦେଖି ଯାଦବମାନେ ଅବଶ୍ୟ ନଗରରୁ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ବାହାରି ଆସିବେ । ସେମାନେ ବାହାରି ଆସିବା ମାତ୍ରେ ସେ ସେମାନଙ୍କ ସହିତ ଯୁଦ୍ଧ କରିବ । ସେ ସୁସଜ୍ଜିତ ଯାଦବ ସେନାଙ୍କ ଆସିବା ପଥକୁ ଚାହିଁ ରହିଥିଲା; କିନ୍ତୁ ସେ ଯେତେବେଳେ ଦେଖିଲା ବିନା ଅସ୍ତ୍ର ଶସ୍ତ୍ରରେ ବନମାଳୀ ହସି ହସି ନଗରର ପ୍ରଧାନ ଦ୍ୱାର ଦେଇ ଭୟଭୀତଙ୍କ ଭଳି ପଳାଇ-ଯାଉଛନ୍ତି, ସେତେବେଳେ ତାହାର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

ଭଗବାନଙ୍କ ସୌନ୍ଦର୍ଯ୍ୟ ବିଷୟରେ ତ କିଛି କହିବାର ନାହିଁ । ସେ ନବୀନଘନ ସଦୃଶ । ସହଜେ ତ ଶ୍ୟାମବର୍ଣ୍ଣ ବିଶିଷ୍ଟ ଥିଲେ । ସୁନ୍ଦର ସୁଢ଼ଳ ଶରୀରରେ ପୀତାମ୍ବର ଧାରଣ କରିଥିଲେ । ବକ୍ଷସ୍ଥଳରେ ଶ୍ରୀବତ୍ସ ଓ କୌସ୍ତୁଭମଣି ସୁଶୋଭିତ । କମଳ ସଦୃଶ, ଜଳଜଳ ଥିଲା ତାଙ୍କ ନେତ୍ରଯୁଗଳ । ସେଥିରୁ ଅରୁଣ ପ୍ରଭା ଝଟକୁ ଥିଲା, ଯାହାକି ଦେଖିବା ଲୋକ ଚକ୍ଷୁ ହଠାତ୍ ତାଙ୍କ ଆଡ଼କୁ ଆକର୍ଷିତ କରୁଥିଲା । ସୁକପୋଳଯୁକ୍ତ ମନୋହର ମୁଖ ମନ୍ଦମନ୍ଦ ହାସବନ୍ତାରେ ସୁଶୋଭିତ ଥିଲା । କର୍ଣ୍ଣରେ ମକର କୁଣ୍ଡଳ ଦୋଳାୟମାନ ହୋଇ ମୁଖମଣ୍ଡଳର ଶୋଭା ବର୍ଦ୍ଧନ କରୁଥିଲା । ଚତୁର୍ବାହୁରେ ସେ ସେତେବେଳେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଥିଲେ । କାଳଯବନ ଏହି ଅଦ୍ଭୁତ ମୂର୍ତ୍ତିକୁ ଦେଖି ଅତି ବିସ୍ମିତ ହେଲା । ସେ ଏହା ଭାବି ସ୍ଥିରକରି ନେଲା ଯେ, ଏ ନିଶ୍ଚିତ ସେହି ବାସୁଦେବ ନନ୍ଦନ ଶ୍ରୀକୃଷ୍ଣ । ନାରଦ ପ୍ରଥମେ ତାକୁ ଭଗବାନଙ୍କର ରୂପ ସୌନ୍ଦର୍ଯ୍ୟ ସମ୍ପର୍କରେ ବର୍ଣ୍ଣନା ଦେଇଥିଲେ । ନାରଦ ଭଗବାନଙ୍କର ଯେଉଁ ଯେଉଁ ଚିହ୍ନ ତାକୁ କହିଥିଲେ, ସେହିସବୁ ଚିହ୍ନ ସେ ଶ୍ରୀକୃଷ୍ଣଙ୍କ ଠାରେ ଦେଖି ପାରିଲା ।

ସେ ଭାବିଲା ଏହି କୃଷ୍ଣଙ୍କୁ ତ ବଡ ବୀର ବୋଲି ମୁଁ ଶୁଣିଥିଲି । ତାଙ୍କର ପ୍ରଶଂସା ସର୍ବତ୍ର ବ୍ୟାପି ଯାଇଥିଲା ଯେ ସେ ଜଣେ ବଡ଼ ବୀର । ମୁଁ ଶୁଣିଥିଲି ସେ ବିନା ଅସ୍ତ୍ରରେ ବଡ଼ ବଡ଼ ଅସୁରଙ୍କୁ ମାରିଥିଲେ । କଂସକୁ ଏକ ବିରାଟ ସଭା ମଧ୍ୟରେ ଚୁଟିଧରି କଚାଡ଼ି ଦେଇଥିଲେ । କିନ୍ତୁ ଏବେ ତ କଣ ସେ ଭୟଭୀତଙ୍କ ଭଳି ମୋତେ ଜଣାପଡ଼ୁଛନ୍ତି । ତାଙ୍କ ହସ୍ତରେ ତ କୌଣସି ଅସ୍ତ୍ରଶସ୍ତ୍ର ନାହିଁ । ମୁଁ ତାଙ୍କ ସହିତ ଯୁଦ୍ଧ କରିବାକୁ ଆସିଥିଲି ଯେ, ଏବେ ଦେଖୁଛି ସେ ଚୋରଙ୍କ ଭଳି ଦଉଡ଼ି ପଳାଇବାର ଉପକ୍ରମ କରୁଛନ୍ତି । ତଥାପି ତାଙ୍କର ସାହସ ତ କମ୍ ନୁହେଁ, ଯଦି ପଳାଇ ଯିବାର ଇଚ୍ଛା, ତେବେ ମୋ ଆଗରେ କପରି ସେ ପଳାଇବାର ଚେଷ୍ଟା କରୁଛନ୍ତି ? ଆଚ୍ଛା ଏ ଯେତେବେଳେ ବିନା ଅସ୍ତ୍ରରେ ପଳାଉଛନ୍ତି, ମୁଁ ମଧ୍ୟ ସେହିପରି ବିନା ଅସ୍ତ୍ରରେ ତାଙ୍କ ପିଚ୍ଛା ଧରେଁ । ଦ୍ୱନ୍ଦ୍ୱ ଯୁଦ୍ଧପାଇଁ ମୁଁ ବର୍ତ୍ତମାନ ତାଙ୍କୁ ଆହ୍ୱାନ କରିବ । ଏହା ଭାବି ସେ ସେହିଠାରୁ ଚିତ୍କାର କରି ଡାକିଲା—"ଅରେ ତୁ ପଳାତକଙ୍କ ଭଳି କେଉଁ ଆଡ଼େ ପଳାଇ ଯାଉଛୁ ? ଆ ତୁ ମୋ ସହିତ ଦ୍ୱନ୍ଦ୍ୱ ଯୁଦ୍ଧ କର ।" ଏହା ଶୁଣି ଅଖିଳ ବ୍ରହ୍ମାଣ୍ଡ ନାୟକ 'ରଣଛୋଡ଼' ଭଗବାନ ହାତ ମୁଠା କରି ଧାଇଁବାକୁ ଲାଗିଲେ । କାଳଯବନ ମଧ୍ୟ ତାଙ୍କ ପଶ୍ଚାଦ୍ଧାବନ କଲା । ସେ ଦୌଡ଼ି ଦୌଡ଼ି ତାଙ୍କୁ ଧରି ତାର ବଳ-ପୁରୁଷାର୍ଥ ଦେଖାଇ ଦେବାକୁ ଚାହୁଁଥିଲା; କିନ୍ତୁ ଯାହାଙ୍କୁ ଯୋଗୀଗଣ ହଜାର ହଜାର ବର୍ଷ ଧରି ସମାଧିରେ ବସି ଧରିବା କଷ୍ଟକର ହୁଏ, ତାଙ୍କୁ ଏ ମୂର୍ଖ ଦୌଡ଼ି ଦୌଡ଼ି ଧରିବାକୁ ଚାହୁଁଛି ? ମାୟା ମୋହିତ ମାନବର ଏହା ହିଁ ମୋହ ଜନିତ ପୁରୁଷାର୍ଥ । କାଳଯବନକୁ ସେତେବେଳେ ଏପରି ପ୍ରତୀତ ହେଉଥିଲା ଯେ ଆଉ ଦୁଇ ପାଦ ଦୌଡ଼ିଗଲେ ମୁଁ ତାଙ୍କୁ ଧରି ପକାଇବି । ସମୟ ସମୟରେ ତାଙ୍କ ପୀତାମ୍ବର ପବନରେ ଉଡ଼ି ତା ହାତରେ ମଧ୍ୟ ବାଜି ଯାଉଥିଲା । ଏହାଦ୍ୱାରା ତାହାର ଉତ୍ସାହ ମଧ୍ୟ ବଢ଼ି ଯାଉଥିଲା । ତେଣୁ ସେ ଅଧିକ ବେଗରେ ତାଙ୍କୁ ଗୋଡ଼ାଉଥିଲା; କିନ୍ତୁ ଭଗବାନ ତ ଅତି ଚତୁର । ଏହିପରି ଭୁଲାଇ ଭୁଲାଇ ତାଙ୍କୁ ଏକାକୀ ସେ ଧୌଲପୁର ପର୍ଯ୍ୟନ୍ତ ଦଉଡ଼ାଇ ନେଲେ । ସେ ମୂର୍ଖ ମଧ୍ୟ ମୃତ୍ୟୁର ଅଧୀନ ହୋଇ ସେହି କାଳରୂପୀ ଭଗବାନଙ୍କ ପଛେ ପଛେ ଦୌଡ଼ିଯାଇଥିଲା ।

କିଛି ଦୂର ଦୌଡ଼ିଲା ପରେ ସେ ମନେକରୁଥିଲା ଯେ, କୃଷ୍ଣ ବର୍ତ୍ତମାନ ଦୌଡ଼ି ଦୌଡ଼ି କ୍ଳାନ୍ତ ହୋଇ ପଡ଼ିଲେଣି, ଏବେ ସେ ଆଉ ଦଉଡ଼ି ପାରିବେ ନାହିଁ । ସେ ବିଶ୍ୱାସ କରି ନେଲା ଯେ, ମୁଁ ନିଶ୍ଚିତ ଭାବରେ ତାଙ୍କୁ ଏହିଠାରେ ଧରିନେବି । ତେଣୁ ସେ ବାରମ୍ବାର କହୁଥିଲା—"ରେ, ଯାଦବ ଅଧମ, କୃଷ୍ଣ ! ତୁ ଏପରି ରଣଛାଡ଼ି ଦୌଡ଼ିବା ଉଚିତ୍ ନୁହେଁ । ତୋର ଯଦି ବଳ ଅଛି, ତେବେ ଠିଆ ହୋଇ ମୋ ସଙ୍ଗେ ଯୁଦ୍ଧ କର ।" କିନ୍ତୁ ଶ୍ରୀକୃଷ୍ଣ ତାହାର କୌଣସି କଥା ଶୁଣୁ ନ ଥିଲେ । ଏକାନ୍ତରେ ପୂରାଇ ସେ କାନରେ ବାହାର କରି ଦେଉଥିଲେ । ଭଗବାନ ମନେ ମନେ କହୁଥିଲେ—"ରହରେ ପୁଅ ! ତୁ ବକର ବକର ହେଉଥା । ଏବେ ତୋତେ ତାଙ୍କ

ଅନ୍ଧାର ଭାବ ମାଲୁମ ପଡ଼ିବ ।" ଏହା ମନେ ମନେ କହି ସେ ଦଉଡ଼ୁ ଥାଆନ୍ତି । ସମ୍ମୁଖରେ ଏକ ଶ୍ରେଷ୍ଠ ପାହାଡ଼ ଦେଖାଗଲା । ସେହି ପାହାଡ଼ରେ ଗୋଟିଏ ଲମ୍ବ ଗୁମ୍ଫା ଥିଲା । ଭଗବାନ ସଙ୍ଗେ ସଙ୍ଗେ ସେ ଗୁମ୍ଫା ଭିତରେ ପଶିଗଲେ ।

କାଳ ଯବନ ଦୂରରୁ ତାହା ଦେଖୁଥିଲା । ସେ ଭାବିଲା, ଏବେ ସେ ମୋ ହାତରେ ନିଶ୍ଚୟ ଧରାପଡ଼ିଯିବ । ଏ ଗୁମ୍ଫାରୁ ବାହାରି ତ ସେ ଆଉ କେଉଁଆଡ଼େ ଯାଇ ପାରିବ ନାହିଁ । ସେ ଏହା ଭାବୁଥିବ ଯେ ମୁଁ ଏହି ଗୁମ୍ଫାରେ ପଶିଯିବା ଦ୍ୱାରା ମୋତେ କାଳଯବନ ଦେଖିପାରି ନଥିବ । ଏଠାରେ ଲୁଚିଗଲେ ମୋର ପ୍ରାଣରକ୍ଷା ହୋଇଯିବ । କିନ୍ତୁ ମୁଁ ତ ବର୍ତ୍ତମାନ ଗୁମ୍ଫାଭିତରେ ପଶି ତାକୁ ଶେଷ କରିଦେବି । ଏହା ଭାବି ସେ ମଧ୍ୟ ଗୁମ୍ଫା ମଧ୍ୟକୁ ପ୍ରବେଶ କଲା ।

ସହଜେ ଭଗବାନ ତ ଏକ ନମ୍ବର ଠକ । ଗୁମ୍ଫା ମଧ୍ୟରେ ପ୍ରବେଶ କରିବାକ୍ଷଣି ସେ ଏକ ବଳିଷ୍ଠ ପୁରୁଷଙ୍କୁ ସେଠାରେ ଶୋଇଥିବାର ଦେଖି ପାରିଲେ । ଭଗବାନ ସେହି ବଳିଷ୍ଠ ପୁରୁଷ ଉପରେ ନିଜର ପୀତାମ୍ବର ଘୋଡ଼ାଇ ଦେଇ ସଙ୍ଗେ ସଙ୍ଗେ ଅନ୍ୟତ୍ର ଲୁଚିଗଲେ । ସେ ଗୁମ୍ଫା ଘୋର ଅନ୍ଧକାର ଥିଲା ଓ ଶ୍ରୀକୃଷ୍ଣ ମଧ୍ୟ କଳା ଥିଲେ, କଳା ସହିତ କଳା ମିଶିଗଲା । ସଙ୍ଗେ ସଙ୍ଗେ କାଳଯବନ ଆସି ସେଠାରେ ପହଞ୍ଚିଗଲା । ସେ ଆଲୋକରେ ଆସି ଅନ୍ଧକାର ଗୁମ୍ଫାରେ ପ୍ରବେଶ କରିଥିଲା । ଏତେଦୂରରୁ ଦୌଡ଼ି ଦୌଡ଼ି ଆସି ଥକି ବି ପଡ଼ିଥିଲା । ଗୁମ୍ଫା ଭିତର ତାକୁ ଖୁବ୍ ଅନ୍ଧକାର ଦେଖାଗଲା । ତେଣୁ ସେ ଅନୁମାନ କଲା ଯେ ଶ୍ରୀକୃଷ୍ଣ ପୀତବସ୍ତ୍ର ଘୋଡ଼ି ହୋଇ ଏଠାରେ ଶୋଇ ପଡ଼ିଛି । ସେ ମୂର୍ଖ ହସିଲା ଓ ଚିନ୍ତାକଲା - ଏ ଠକ ମୋତେ ଆଜି କେତେ ହଟହଟା ନ କଲା ? ମୋତେ ଏତେ ଦୂର ଦଉଡ଼ାଇ ଏଠି ଆସି ଥକ୍କା ମାରୁଛି, ସାଧୁ ପାଲଟି ଯାଇ ଏଠାରେ ସେ ସୁଖରେ ଶୋଇଯାଇଛି । ମୁଁ ଏବେ ତାକୁ ତାର ଠକାମିର ଫଳ ଚଖାଉଛି । ଏହା ଚିନ୍ତାକରି ସେ ଆବେଶଭରା ହୃଦୟରେ ସମସ୍ତ ବଳ ଖର୍ଚ୍ଚ କରି ସେହି ଶୋଇଥିବା ପହଲମାନଙ୍କୁ ଏକ ଗୋଇଠା ମାରିଲା । ଜୋରରେ ଗୋଇଠାମାଡ଼ ବାଜିବାରୁ ଅନେକଦିନର ଶୋଇଥିବା ସେହି ଦୀର୍ଘକାୟ ବଳିଷ୍ଠବ୍ୟ ଧୀରେ ଧୀରେ ଉଠିଲା ଓ ଆଖି ମଳି ମଳି ଏଣେତେଣେ ଦୃଷ୍ଟି ପକାଇଲା । ସେ ସଙ୍ଗେ ସଙ୍ଗେ ନିଜ ସମ୍ମୁଖରେ କାଳଯବନକୁ ଠିଆ ହୋଇଥିବାର ଦେଖିଲା । ତାକୁ ଦେଖିବାମାତ୍ରେ ସେହି ପୁରୁଷର ଆଖି ଲାଲ ଲାଲ ହୋଇ ଜଳିବାକୁ ଲାଗିଲା, ପ୍ରଦୀପ୍ତ ହେଲା, ଯେତେ ଯେପରି ଅଗ୍ନିର ଶିଖା ସେହି ପୁରୁଷଙ୍କ ନେତ୍ରରୁ ବାହାରୁ ଅଛି । ସେ ଯେତେବେଳେ କ୍ରୋଧଭରା ଦୃଷ୍ଟିରେ କାଳଯବନକୁ ଚାହିଁଲା, ସେତେବେଳେ କାଳଯବନ ସଙ୍ଗେ ସଙ୍ଗେ ଭସ୍ମ ହୋଇଗଲା ଓ ଚିରଦିନ ପାଇଁ ଇହଲୋକରୁ ବିଦାୟ ନେଲା ।

ଏହାଶୁଣି ଶୌନକ ପଚାରିଲେ—"ହେ ସୂତ ! ସେହି ବଚିତ୍ର ପୁରୁଷ କିଏ ଓ ସେ କାହାପୁତ୍ର ଥିଲେ ? ଏଠାରେ କାହିଁକି ସେ ଶୟନ କରିଥିଲେ ? ତାଙ୍କ ଦୃଷ୍ଟିରେ ଏପରି ତେଜ କିପରି ସମ୍ଭବ ହେଲା ? ସମସ୍ତ ରାଜାଙ୍କୁ ଜୟ କରିଥିବା ପରାକ୍ରମୀ ଶୂରବୀର କାଳଯବନ ସେହି ତେଜରେ କିପରି ଭସ୍ମ ହୋଇ ପାରିଲା ? ଦୟାକରି ପ୍ରଥମେ ଆମ୍ଭମାନଙ୍କୁ ସେହି ବଚିତ୍ର ପୁରୁଷଙ୍କ କଥା ଶୁଣାନ୍ତୁ, ପରେ ଅନ୍ୟାନ୍ୟ କଥା କହିବେ ।"

ସୂତ କହିଲେ—"ମହାରାଜ ! ସେ ଥିଲେ ଇକ୍ଷ୍ୱାକୁ କୁଳସମ୍ଭୂତ ମହାରାଜ ମାନ୍ଧାତାଙ୍କ ପୁତ୍ର ପରମ ବଳୀ ବ୍ରାହ୍ମଣ ଭକ୍ତ ସତ୍ୟପ୍ରତଜ୍ଞା ତଥା ପ୍ରଜାପାଳକ ମହାରାଜ ମୁଚୁକୁନ୍ଦ । ସେ ଆଦ ସତ୍ୟଯୁଗରୁ ହିଁ ଏଠାରେ ଶୋଇ ରହିଥିଲେ । ତାଙ୍କ କଥା ଅତି ଅଦ୍ଭୁତ । ତାହା ମୁଁ ଆପଣମାନଙ୍କୁ ଶୁଣାଇବ । ଆପଣମାନେ ମନଦେଇ ତାହା ଶୁଣନ୍ତୁ ।

—ଛପ୍ପୟ—

କରତ ଅନସୁନୀ ଶ୍ୟାମ ଭଗତ ମୁରି ପାଛେ ନିରଖତ ।
ପଗ ପଗ ପେ ଜନୁ ଗହେ ଯବନ ଛିନ ଛିନ୍ନମହଁ ସମୁଝିତ ॥
ଘୁସେ ଗୁଫାମହଁ ଶ୍ୟାମ ନିହାରେଯା ତହଁ ନର ସୋବତ ।
ନିଜ ପଟ ତାହି ଉଢ଼ାଇ ହୁବକି ରିପୁକୀ ପଥ ଜୋହତ ॥
କାଳଯବନ ରିସମହଁ ଭରେଯା, ପଦ ପ୍ରହାର ତହି ପୈ କରେଯା ।
ତହି ଉଠି ନିରଖେଯା ଯବନ ଜବ, ଦୃଷ୍ଟି ପରତ ହୀ ସୋ ମରେଯା ॥

—*—

# ମହାରାଜ ମୁଚୁକୁନ୍ଦଙ୍କ ପରିଚୟ

ସ ଇକ୍ଷ୍ୱାକୁକୁଲେ ଜାତୋ ମାନ୍ଧାତୃତନୟୋ ମହାନ୍ ।
ମୁଚୁକୁନ୍ଦ ଇତି ଖ୍ୟାତୋ ବ୍ରହ୍ମଣ୍ୟଃ ସତ୍ୟସଙ୍ଗରଃ ॥ *

( ଶ୍ରୀ: ଭା: ୧୦ମ ସ୍କନ୍ଧ ୫୧ ଅ. ୧୪ ଶ୍ଳୋକ )

## ଛପ୍ପୟ

ହେ ନରବର ମୁଚୁକୁନ୍ଦ ଧେନୁ ଦ୍ୱିଜ ସୁର ହିତକାରୀ ।
ଅସୁରନି ସତଯୁଗ ପ୍ରଥମମାହିଁ ସୁରସେନ ସଁହାରୀ ॥
ଗୟେ ଲଡ଼ନ ଭୂପାଲ ଗୟେ ଜବ ଦେବ ଶରନମହଁ ।
ମାରି ଭଗାୟେ ଅସୁର ଭୟେ ବିଜୟୀ ସୁର ରନମହଁ ॥
ଦେବନି ବର ମାଗନ କହ୍ୟୋ, ମାଁଗୀ ନିଦ୍ରା ଭୂପବର ।
କରୈ ବିଘନ ମମ ନୀଦମହଁ, ସୋ ତତଛିନ ମରି ଜାୟ ନର ॥

ମହାପୁରୁଷଙ୍କର କାର୍ଯ୍ୟକ୍ଷେତ୍ର ନିର୍ଦ୍ଦିଷ୍ଟ ଥାଏ । ସିଏ ଯେଉଁ କାର୍ଯ୍ୟ ପାଇଁ ଭଗବାନଙ୍କ ଇଚ୍ଛାରେ ପ୍ରେରିତ ହୋଇ ଥାଆନ୍ତି, ତାଙ୍କର ସେହିଥିରେ ପ୍ରବୃତ୍ତି ହୋଇଯାଏ ଓ ସେହି ପ୍ରକାର ମତିହୁଏ । ଯଦି କାହାରିକୁ ଜୀବଜନନ କାର୍ଯ୍ୟପାଇଁ ସୃଷ୍ଟି କରାଯାଇଥାଏ, ସେ ଯେତେ ଆତ୍ମଗୋପନ କରିବାକୁ ଚାହିଁଲେ ଓ କେଉଁଠାକୁ ଚାଲିଗଲେ ମଧ୍ୟ ତାକୁ ସେଠାରେ ସେହିପରି କାର୍ଯ୍ୟ ଆପେ ଆପେ ଆସି ଜୁଟିଯାଏ । ଜଡ଼ ଭରତ କଥା ଜାଣିଥିବେ, ସେ କିପରି ବିକୃତ ବେଶ ହୋଇ ପାଗଳଙ୍କ ଭଳି ବୁଲୁ ନ ଥିଲେ ? କିନ୍ତୁ ମହାରାଜ ରହୁଗଣଙ୍କୁ ସେ ଜ୍ଞାନଦାନ କରିବା ହିଁ ଥିଲା ତାଙ୍କର ପୂର୍ବ ନିର୍ଦ୍ଦେଶିତ କାର୍ଯ୍ୟ । ତାଙ୍କୁ ସେହିପରି ସଯୋଗ ଜୁଟିଗଲା ଓ ରହୁଗଣଙ୍କୁ ବ୍ରହ୍ମଜ୍ଞାନ ଉପଦେଶ ଦେବାକୁ ପଡ଼ିଲା । ମନୁଷ୍ୟ ଯେଉଁଠାରେ ଲୁଚିଥାଉ ପଛକେ, ଅନ୍ୟମାନଙ୍କ ଦୃଷ୍ଟିର ଅନ୍ତରାଳରେ ରହିଥାଉ ପଛକେ; କିନ୍ତୁ ଭଗବାନଙ୍କ ଦୃଷ୍ଟିପଥକୁ ତ ଏଡ଼ାଇ ଦେଇ ପାରିବ ନାହିଁ ?

---

* ଶ୍ରୀ ଶୁକଦେବ କହୁଛନ୍ତି, "ରାଜନ୍ ! ଯାହାଙ୍କର ଦୃଷ୍ଟିପାତ ହେବାକ୍ଷଣି କାଳଯବନ ଭସ୍ମ ହୋଇଗଲା ସେ ହେଉଛନ୍ତି ବ୍ରାହ୍ମଣଙ୍କ ଭକ୍ତ ସତ୍ୟ ପ୍ରତିଜ୍ଞ ମହାରାଜ ମୁଚୁକୁନ୍ଦ, ସିଏ ହେଉଛନ୍ତି ଇକ୍ଷ୍ୱାକୁ କୁଳୋତ୍ପନ୍ନ ମହାରାଜ ମାନ୍ଧାତାଙ୍କର ପୁତ୍ର ।"

କାରଣ ଭଗବାନ ସର୍ବଦ୍ରଷ୍ଟା ଓ ସର୍ବଜ୍ଞ । ତାଙ୍କ ଆଗରୁ କେହି କୌଣସିଠାରେ ଯାଇ ଲୁଚି ରହି ନ ପାରେ ।

ସୂତ କହିଲେ—"ମୁନିଗଣ ! ଆପଣମାନେ ମହାରାଜ ମୁଚୁକୁନ୍ଦଙ୍କ କଥା ଶୁଣିବାକୁ ଚାହୁଁଛନ୍ତି, ତାଙ୍କ ବଂଶ କଥା ତ ମୁଁ ପୂର୍ବରୁ ସୂଚନା ଦେଇଛି । ସୂର୍ଯ୍ୟବଂଶୀ ମହାରାଜ ଇକ୍ଷ୍ୱାକୁଙ୍କ ବଂଶରେ ଜଣେ ପରମ ପ୍ରତାପୀ ଯୁବନାଶ୍ୱ ନାମକ ରାଜା ଥିଲେ । ସେ ଭୁଲବଶତଃ ପୁତ୍ରେଷ୍ଟି ଯଜ୍ଞର ଅଭିମନ୍ତ୍ରିତ ଜଳ ପାନକରି ଦେଇଥିଲେ । ତେଣୁ ତାଙ୍କର ପେଟକୁ ଫଟାଇ ମହାରାଜ ମାନ୍ଧାତା ଉତ୍ପନ୍ନ ହୋଇଥିଲେ । ମହାରାଜ ମାନ୍ଧାତା ଶୂରବୀର, ଧର୍ମାତ୍ମା ଓ ବ୍ରାହ୍ମଣଭକ୍ତ ଥିଲେ । ମହାରାଜ ଶଶବିନ୍ଦୁଙ୍କ କନ୍ୟା ବିନ୍ଦୁମତୀଙ୍କୁ ବିବାହ କରିଥିଲେ । ତାଙ୍କଠାରୁ ପୁରୁକୁତ୍ସ, ଅମ୍ବରୀଷ ଓ ଯୋଗୀରାଜ ମହାରାଜ ମୁଚୁକୁନ୍ଦ ଜନ୍ମ ଗ୍ରହଣ କରିଥିଲେ । ମୁଚୁକୁନ୍ଦ ଜନ୍ମରୁ ବିଶିଷ୍ଟଶକ୍ତିସମ୍ପନ୍ନ ଥିଲେ । ସେ ସ୍ୱେଚ୍ଛାରେ ସ୍ୱର୍ଗାଦି ଲୋକକୁ ଯାଇ ପାରୁଥିଲେ । ଶସ୍ତ୍ର ବିଦ୍ୟାରେ ତାଙ୍କଭଳି ରାଜା ତ୍ରିଭୁବନରେ କେହି ନଥିଲେ । ସେହି ସମୟରେ ଦେବତା ଓ ଅସୁରମାନଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଲାଗିଥାଏ । ଅସୁରମାନେ ଅତ୍ୟନ୍ତ ବଳୀ ଥିଲେ । ସେମାନେ ଦେବତାମାନଙ୍କୁ ପରାସ୍ତ କରି ଦେଉଥିଲେ । ସେମାନଙ୍କର ପ୍ରବଳ ପ୍ରହାର ସହ୍ୟ କରି ନ ପାରିବାରୁ ଦେବତାମାନେ ଅତ୍ୟନ୍ତ ତ୍ରସ୍ତ ହୋଇ ପଡ଼ିଥିଲେ । ଯୁଦ୍ଧରେ ଜୟ ପରାଜୟ ସେନାପତିଙ୍କ ଉପରେ ନିର୍ଭର କରେ । ଯଦି ସେନାପତି ବୀର, ଉତ୍ସାହୀ, କୁଶଳୀ ଓ ବୁଦ୍ଧିମାନ ହୋଇଥାଆନ୍ତି, ତେବେ ଅଳ୍ପ ସୈନ୍ୟ ନେଇ ମଧ୍ୟ ସେ ବିଜୟଲାଭ କରିପାରନ୍ତି । ସେନାପତି ଅଯୋଗ୍ୟ ହୋଇଥିଲେ ଯେତେ ଅଧିକ ସୈନ୍ୟ ସଙ୍ଗରେ ନେଇଥିଲେ ମଧ୍ୟ ବିଜୟ କରିବାରେ ସେ ସର୍ବଦା ସନ୍ଦେହୀ ହୋଇଥାଆନ୍ତି । ସେତେବେଳେ ଦେବତାମାନଙ୍କ ପକ୍ଷରେ କୌଣସି ଯୋଗ୍ୟ ସେନାପତି ନ ଥିଲେ । ସେମାନେ ମୁଚୁକୁନ୍ଦଙ୍କର ବଳ, ପୌରୁଷ ଓ କାର୍ଯ୍ୟକୁଶଳତାର ବଡ଼ ଖ୍ୟାତି ଥିବାର ଶୁଣିଥିଲେ । ତେଣୁ ଦେବତାମାନେ ମିଳି ତାଙ୍କ ପାଖକୁ ଗଲେ ଓ କହିଲେ—"ରାଜନ୍ ! ଆପଣ ଆମ୍ଭମାନଙ୍କର ସେନାପତି ହୁଅନ୍ତୁ । ଅସୁରମାନେ ଆମ୍ଭମାନଙ୍କୁ ତ୍ରସ୍ତକରି ରଖିଅଛନ୍ତି ।" (୧)

---

(୧) କହନ୍ତି ବ୍ୟାସଙ୍କ କୁମର । ଇକ୍ଷ୍ୱାକୁ ବଂଶେ ନୃପବର ॥
ମାନଧାତା ନାମେ ମହେନ୍ଦ୍ର । ତାର କୁମର ମୁଚୁକୁନ୍ଦ ॥
ବିପ୍ରସେବକ ସତ୍ୟବାଦୀ । ସକଳ ଗୁଣେ ଗୁଣନିଧି ॥
ତାହାକୁ ଦେବଗଣେ ଆସି । ବଚନ କହିଲେ ବିଶ୍ୱାସି ॥
ତୋର ଶରଣ ନୃପବର । ଅମ୍ଭେ ଛାଡ଼ିଲୁ ସ୍ୱର୍ଗପୁର ॥
ହାରିଲୁ ଅସୁରଙ୍କୁ ରଣେ । ପଶିଲୁ ତୋହର ଶରଣେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦, ଦ୍ୱି ୫୪ଅ)

ମହାରାଜ ମୁଚୁକୁନ୍ଦ କହିଲେ—"ଯେ ଦୁଃଖୀମାନଙ୍କର ଦୁଃଖ ଦୂର କରେ ସେ କ୍ଷତ୍ରିୟ । ଆପଣମାନେ ଏବେ ମୋ ଶରଣରେ ଆସିଛନ୍ତି, ତେଣୁ ମୁଁ ନିଶ୍ଚୟ ଆପଣମାନଙ୍କର ସେନାପତି ହେବି ଓ ଅସୁରମାନଙ୍କ ଉପଦ୍ରବରୁ ଆପଣମାନଙ୍କୁ ରକ୍ଷା କରିବି ।" ଏହା କହି ମହାରାଜ ଦେବତାଗଣଙ୍କ ସହିତ ଗଲେ ଓ ସେମାନଙ୍କର ସେନାପତି ହୋଇ ସର୍ବଦା ଚିରକାଳ ପର୍ଯ୍ୟନ୍ତ ଦେବତାଗଣଙ୍କୁ ରକ୍ଷା କଲେ ।

କିଛି କାଳ ପରେ ଶେଷରେ ଭଗବାନ ଶଙ୍କରଙ୍କ ଔରସରୁ କୁମାର କାର୍ତ୍ତିକେୟ ଜନ୍ମଲାଭ କଲେ । ଦେବତାଗଣ ତାଙ୍କର ବଳ, ପରାକ୍ରମ, ପ୍ରଭାବ ଓ ଐଶ୍ୱର୍ଯ୍ୟକୁ ଦେଖି ମୁଗ୍ଧ ହେଲେ ଓ ତାଙ୍କୁ ନିଜର ସ୍ଥାୟୀ ସେନାପତି ପଦ ପ୍ରଦାନ କଲେ । କାର୍ତ୍ତିକେୟ ଅତ୍ୟନ୍ତ ବୁଦ୍ଧିମତ୍ତାର ସହିତ ସୁରସେନା ସଞ୍ଚାଳନ କଲେ । ଆଉ ମୁଚୁକୁନ୍ଦଙ୍କର ଆବଶ୍ୟକତା ରହିଲା ନାହିଁ । ତେଣୁ ଦେବତାମାନେ ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରି କହିଲେ—"ରାଜନ୍ ! ଆପଣଙ୍କର କଲ୍ୟାଣ ହେଉ । ଆପଣ ବହୁ ଶ୍ରମ ସ୍ୱୀକାର କଲେ ଓ ବହୁତ ଦିନ ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ରକ୍ଷା କଲେ । ସାହାଯ୍ୟ କରି ନ ଥିଲେ ବିପଦ କାଳରେ ଆମ୍ଭମାନଙ୍କୁ ସ୍ୱର୍ଗ ଭ୍ରଷ୍ଟ ହେବାକୁ ପଡ଼ି ଥାଆନ୍ତା । ଏବେ ଆପଣ କିଛିଦିନ ବିଶ୍ରାମ କରନ୍ତୁ । ଆମ୍ଭମାନଙ୍କୁ ରକ୍ଷା କରିବା କଷ୍ଟରୁ ଆପଣ ନିବୃତ୍ତ ହୁଅନ୍ତୁ" ।

ମହାରାଜ ମୁଚୁକୁନ୍ଦ କହିଲେ—"ଦେବଗଣ ! ଆପଣମାନଙ୍କ ଆଜ୍ଞାରେ ମୁଁ ଆପଣଙ୍କର ଯତ୍କିଞ୍ଚିତ୍ ସେବା କଲି, ବର୍ତ୍ତମାନ ଆଉ ଆପଣଙ୍କ ସେବା କରିବା ମୋର ଆବଶ୍ୟକ ନାହିଁ । ତେଣୁ ମୁଁ ମୋ ରାଜଧାନୀକୁ ଫେରି ଯାଉଛି ।"

ଦେବତାଗଣ ହସି ହସି କହିଲେ—"ରାଜନ୍ ! ଆପଣଙ୍କ ତ୍ୟାଗ ଶ୍ଳାଘନୀୟ । ଆପଣ ପୃଥିବୀର ନିଷ୍କଣ୍ଟକ ରାଜ୍ୟ, ବିପୁଳ ଭୋଗସୁଖକୁ ପରିତ୍ୟାଗ କରି ଆମ୍ଭମାନଙ୍କୁ ସାହାଯ୍ୟ କଲେ । ଏବେ ଆପଣ ପୁନଶ୍ଚ ନିଜ ରାଜଧାନୀକୁ ଫେରିଯିବାକୁ ଚାହୁଁଛନ୍ତି; କିନ୍ତୁ ବର୍ତ୍ତମାନ ତ ପୃଥିବୀ ପୃଷ୍ଠରେ ଆପଣଙ୍କ ରାଜଧାନୀର ଚିହ୍ନବର୍ତ୍ତି ନାହିଁ ?"

ମହାରାଜ ପଚାରିଲେ -"ଦେବଗଣ ! ମୋ ରାଜଧାନୀ ତେବେ ଗଲା କୁଆଡ଼େ ? ମୋ ବନ୍ଧୁ ବାନ୍ଧବ ଗଲେ କୁଆଡ଼େ ?"

ଦେବତାଗଣ କହିଲେ—"ରାଜନ୍ ଆପଣ ତ ଏତେଦିନ ପର୍ଯ୍ୟନ୍ତ ସ୍ୱର୍ଗରେ ରହିଥିଲେ । ମନୁଷ୍ୟଙ୍କର ୩୬୦ ବର୍ଷରେ ଆମର ଏଠାରେ ଏକ ବର୍ଷ । ଆପଣ ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗରେ ରହି ଆମ୍ଭମାନଙ୍କୁ ରକ୍ଷା କରୁଥିଲେ । ସେହି ହିସାବରେ ୯ ମଧ୍ୟରେ ପୃଥିବୀରେ ଅନେକ ଯୁଗ ବିତି ଗଲାଣି । ଏବେ ଆପଣଙ୍କ ପୁତ୍ର, ସ୍ତ୍ରୀ, ଜ୍ଞାତି କୁଟୁମ୍ବ, ବନ୍ଧୁବାନ୍ଧବ, ମନ୍ତ୍ରିପରିଷଦ ଓ ପ୍ରଜାଗଣମାନଙ୍କ ମଧ୍ୟରୁ କେହି ହେଲେ ପୃଥିବୀରେ

ନାହାନ୍ତି । ସେମାନେ ସମସ୍ତେ କାଳ କବଳରେ ପଡ଼ି ଅନେକ ଦିନୁ ବିଦାୟ ନେଇଛନ୍ତି ।"

ମହାରାଜ ମୁଚୁକୁନ୍ଦ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ଆରେ ! ଏ କାଳର କପରି କୁଟିଳ ଗତି ? ସମସ୍ତେ ତେବେ କଣ ପଞ୍ଚତ୍ୱ ପ୍ରାପ୍ତ ହୋଇ ଗଲେ ? ଜଣେ ହେଲେ କେହି ବଞ୍ଚିଲେ ନାହିଁ ?"

ଦେବତାଗଣ କହିଲେ—"ରାଜନ୍ ! ଏହି କାଳ ବିଶ୍ୱର ସମସ୍ତ ବଳବାନଙ୍କଠାରୁ ବଳୀୟାନ । ସେହି ହିଁ ଅବ୍ୟୟ ଅବିନାଶୀ ଅପରାଜିତ ଈଶ୍ୱର । କାଳ ସମ୍ମୁଖରେ କେହିହେଲେ ତିଷ୍ଠି ପାରନ୍ତି ନାହିଁ । ସମସ୍ତେ ତାଙ୍କର ଅଧୀନ । କେଳା ଯେପରି ମାଙ୍କଡ଼କୁ, ଖେଳାଳୀ ଯେପରି କାଠ ପୁତୁଳକୁ ଓ ପଶୁପାଳକ ଯେପରି ପଶୁମାନଙ୍କୁ ନଚାଏ ଓ ଚରାଏ, କାଳ ସେହିପରି ପ୍ରାଣୀମାନଙ୍କୁ ହିଁ ନଚାଉ ଅଛି । ଏହି କାଳ ହିଁ ସାରା ସଂସାରକୁ ଖେଳ ଖେଳି ନିୟନ୍ତ୍ରଣ କରୁଛି ।"

ମୁଚୁକୁନ୍ଦ କହିଲେ—"ଦେବଗଣ ! ଯଦି ଧରାବକ୍ଷରେ ମୋର ନିଜର ଲୋକ କେହି ନାହାନ୍ତି, ତେବେ ମୁଁ ସେଠାକୁ ଯାଇ କଣ କରିବି ? ଆପଣ ମୋତେ କୌଣସି ମାର୍ଗ କହି ଦିଅନ୍ତୁ ।"

ଦେବଗଣ କହିଲେ—"ରାଜନ୍ ! ଆପଣ ଆମ୍ଭମାନଙ୍କୁ ରକ୍ଷା କରିବା ପାଇଁ ଏଠାରେ ଅନେକ କଷ୍ଟ ସହିଲେ । ଆପଣଙ୍କର ଯେଉଁଥିରେ ସୁଖ ହେବ, ସେହିପରି କୌଣସି ମନୋଭିଳଷିତ ବର ଆମ୍ଭମାନଙ୍କଠାରୁ ମାଗି ନିଅନ୍ତୁ । କିନ୍ତୁ ମୋକ୍ଷ ମାଗନ୍ତୁ ନାହିଁ । ଆମ୍ଭମାନଙ୍କର ମୋକ୍ଷ ଦେବାର ଅଧିକାର ନାହିଁ । ଭଗବାନ୍ କେବଳ ମୋକ୍ଷ ଦେଇ ପାରିବେ ।" (୧)

ମହାରାଜ ମୁଚୁକୁନ୍ଦ ଏହା ଶୁଣି ନମ୍ରତାପୂର୍ବକ ଦେବଗଣଙ୍କୁ ପ୍ରଣାମକରି କହିଲେ—"ଦେବଗଣ ! ତୁମ୍ଭେମାନେ ଯଦି ମୋତେ ମୋକ୍ଷ ଦେଇ ପାରିବ ନାହିଁ, ତେବେ ଗାଢ଼ ନିଦ୍ରା ହେବାପାଇଁ ବର ପ୍ରଦାନ କର । ନିଦ୍ରାରେ ସମସ୍ତ ଇନ୍ଦ୍ରିୟ ଶିଥିଳ ହୋଇଯାଇ ବିଶ୍ରାମ କରନ୍ତି । ଚିନ୍ତା ନ ଥାଏ । ଶ୍ରମ କ୍ଳାନ୍ତି ଦୂର ହୋଇଯାଏ । ଶରୀର ହାଲୁକା ହୋଇଯାଏ । ମୁଁ ମଧ୍ୟ ବହୁତ କ୍ଳାନ୍ତ ହୋଇଯାଇଛି ।"

---

(୧) ରାଜନ ଗ୍ରୁଡ଼ ମନୁ ଚିନ୍ତା । ଆମ୍ଭେ ହୋଇଲୁ ବରଦାତା ॥
ଧନ ସମ୍ପଦ କାମ ଯେତେ । ମାଗ ତୁ ଦେବୁ ଅପ୍ରମିତେ ॥
ମୋକ୍ଷକୁ ନୋହୁଁ ଅଧିକାରୀ । ଏଥକୁ ପ୍ରଭୁ ନରହରି ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦. ୫୪ଅ )

ଦେବଗଣ କହିଲେ—"ଠିକ୍ ଅଛି, ଆମ୍ଭେମାନେ ଆପଣଙ୍କୁ ଗାଢ଼ ନିଦ୍ରା ହେବା ପାଇଁ ବର ଦେଉ ଅଛୁ ।"

ମହାରାଜ ମୁଚୁକୁନ୍ଦ କହିଲେ—"ଯଦି କେହି ମୋତେ ମଝିରେ ଜାଗ୍ରତ କରିଏ ?"

ଦେବଗଣ କହିଲେ—"ଆପଣଙ୍କୁ ମଝିରେ ଯିଏ ଉଠାଇବ, ସେ ନିଜ କର୍ମର ଫଳ ଭୋଗ କରିବ । ଆପଣଙ୍କ ଦୃଷ୍ଟି ତା ଉପରେ ପଡ଼ିବା ମାତ୍ରେ ସେ ଭସ୍ମ ହୋଇଯିବ । ଆପଣ ଯେତେବେଳେ ଉଠିବେ ପ୍ରଭୁ ଆଦିମୂଳଙ୍କ ଦର୍ଶନ ପାଇବେ ।"

ସୂତ କହିଲେ—"ମୁନିଗଣ ! ଦେବତାମାନଙ୍କ ଠାରୁ ଏହି ପ୍ରକାର ବରପ୍ରାପ୍ତ ହୋଇ ମହାରାଜ ମୁଚୁକୁନ୍ଦ ଏହି ଗୁମ୍ଫାରେ ଆସି ଶୟନ କରିଥିଲେ । ଶୋଇ ଶୋଇ ଏ ମଧ୍ୟରେ ଅନେକ ଯୁଗ ବିତିଗଲା । କିନ୍ତୁ ଭଗବାନ୍ ବାସୁଦେବଙ୍କୁ ତ ଏ ସମସ୍ତ କଥା ଜଣାଥିଲା, ତେଣୁ ସେ କାଳଯବନକୁ ଦଉଡ଼ାଇ ଦଉଡ଼ାଇ ଏହି ଗୁମ୍ଫାପର୍ଯ୍ୟନ୍ତ ନେଇ ଆସିଲେ । ସେ ଚିନ୍ତା କଲେ, ସାପ ମରୁ, ବାଡ଼ି ନ ଭାଙ୍ଗୁ । ଆମ୍ଭମାନଙ୍କୁ ଯୁଦ୍ଧ କରିବାକୁ ନ ପଡ଼ୁ ଓ ଯବନ ନିଜେ ନିଜେ ମରିଯାଉ । ଏଥିପାଇଁ ସେ ଏହି ଉପାୟରେ କୃତକାର୍ଯ୍ୟ ହେଲେ । କାଳଯବନ ମୁଚୁକୁନ୍ଦଙ୍କର ଦୃଷ୍ଟି ପଡ଼ିବା ମାତ୍ରେ ଭସ୍ମ ହୋଇଗଲା ।"

କାଳଯବନ ମରିଯିବାରୁ ମୁଚୁକୁନ୍ଦଙ୍କର କ୍ରୋଧ ଯେତେବେଳେ ଶାନ୍ତ ହୋଇଗଲା, ସେତେବେଳେ ଭଗବାନ କୃଷ୍ଣ ତାଙ୍କୁ ଦର୍ଶନ ଦେଲେ । ଭଗବାନଙ୍କର ପରମ-ଦର୍ଶନୀୟ ଶୋଭାକୁ ଦେଖି ମହାରାଜ ମୁଚୁକୁନ୍ଦ ଅତି ବିସ୍ମିତ ହେଲେ । ତାଙ୍କର ପରମ-ତେଜଯୁକ୍ତ ଦିବ୍ୟ ସ୍ୱରୂପକୁ ଦର୍ଶନ କରି ମହାବୁଦ୍ଧିମାନ ମୁଚୁକୁନ୍ଦ ସଙ୍କୋଚର ସହିତ ତାଙ୍କ ସଙ୍ଗେ ବାର୍ତ୍ତାଳାପ କରିବାକୁ ଆରମ୍ଭ କଲେ । ଦୁଇଜଣଙ୍କ ମଧ୍ୟରେ ଯାହା କଥା-ବାର୍ତ୍ତା ହେଲା ବର୍ତ୍ତମାନ ମୁଁ ଆପଣମାନଙ୍କୁ କହିବି ।"

## ଛପ୍ପୟ

ଏବମସ୍ତୁ କହି ସୁରନି ସମର୍ଥନ ନୃପକୋ କୀହ୍ନୋଂ ।
ଶ୍ରମିତ ଭୂପକୁଁ ଗାଢ଼ ନୀଂଦ କୋ ମିଲି ବର ଦୀହ୍ନୋଂ ॥
ସୋୟେ ତବତେଂ ଗୁଫା ମାଁହି ବହୁ ବରଷ ବିତାୟେ ।
କାଲଯବନକୋ ଅନ୍ତ କରାବନ ହରି ତହଁ ଆୟେ ॥
ଭସ୍ମ ଯବନ ଜନ ହ୍ୱେ ଗୟୋ, ତବ ଦରଶନ ନଟବର ଦାୟୋ ।
ଲଖି ଅତି ସୁନ୍ଦର ସୁଘର ନର, ଭୂପତି ଅତି ବିସ୍ମିତ ଭୟୋ ॥

—*—

# ମୁଚୁକୁନ୍ଦ ଓ ମାଧବ

ବିମୋହିତୋଽୟଂ ଜନ ଈଶ ମାୟୟା
ତ୍ୱଦୀୟୟା ତ୍ୱାଂ ନ ଭଜତ୍ୟନର୍ଥଦୃକ୍ ।
ସୁଖାୟ ଦୁଃଖପ୍ରଭବେଷୁ ସଜ୍ଜତେ
ଗୃହେଷୁ ଯୋଷିତ୍ ପୁରୁଷଶ୍ଚ ବଞ୍ଚିତଃ ॥ *

(ଶ୍ରୀ ଭା : ୧୦ମ ସ୍କନ୍ଧ ୫୧ ଅ: ୪୬ ଶ୍ଳୋକ)

## ଛପ୍ପୟ

ପୂଛତ ବନସ୍ୟାବନତ ନୃପତ ତରପତ ଅତ ବୋଲତ ।
ପ୍ରଭୁ ଅତ କୋମଲ ଚରନ କଠିନ ମହି ପୈ ବେଯୌଂ ଡୋଲତ ॥
ହୋ ତ୍ରିଦେବମହଁ ଏକ ଅପର ସୁର ଅଥବା ସ୍ୱାମୀ ।
ଅଥବା ଅଜ ଅଖିଲେଶ ଅମରପତି ଅନ୍ତରଯାମୀ ॥
ହୌଂ ମାନ୍ଧାତା ନୃପ ତନୟ, କୋଇ କହେଂ ମୁଚକୁନ୍ଦ ସବ ।
ସୁରବର ଲହି ସୋବତ ରହ୍ୟୋ, ଦେବେଂ ପରିଚୟ ଆପୁ ଅବ ॥

ଜୀବ ଭଗବାନଙ୍କୁ ଭୁଲି ମୋହରୂପୀ ଗାଢ଼ ନିଦ୍ରାରେ ଶୋଇ ରହେ ।
ଯେତେବେଳେ ଭଗବାନ୍ ଅସି ତାକୁ ଜାଗ୍ରତ କରନ୍ତି, ସେତେବେଳେ ସେ ଜାଗ୍ରତ

---

* ମୁଚୁକୁନ୍ଦ କହିଲେ, "ହେ ଈଶ ! ମାୟାରେ ବିମୋହିତ ଏହି ନରନାରୀମାନେ ଆପଣଙ୍କୁ ଭଜନ କରୁ ନାହାନ୍ତି । କାରଣ ଏମାନେ ଅନର୍ଥ ହିଁ ଦେଖୁଛନ୍ତି । ଏମାନେ ସୁଖ ଆଶାରେ ଦୁଃଖମୟ ବିଷୟ ଭୋଗରେ ମାତି ରହିଛନ୍ତି । ଏହି ଭଳି ସ୍ତ୍ରୀ ପୁରୁଷଙ୍କ ଦ୍ୱାରା ଓ ପୁରୁଷ ସ୍ତ୍ରୀଙ୍କ ଦ୍ୱାରା ଆସକ୍ତ ହୋଇ ଯଥାର୍ଥ ସୁଖରୁ ବଞ୍ଚିତ ହୋଇଯାଉଛନ୍ତି; ପ୍ରତାରିତ ହୋଇଯାଉଛନ୍ତି" ।

ହୁଏ । କାତର ହୋଇ ମଧ୍ୟ ଯାହାକୁ ସେ ଚିହ୍ନି ନ ଥାଏ, ତାଙ୍କୁ ତାଙ୍କର ପରିଚୟ ପଚାରିଥାଏ । ତଥାପି ସେହି ଗୁରୁଗଣଙ୍କର ଗୁରୁ ଚରାଚର ଈଶ୍ୱର ପ୍ରଭୁ ଅଚ୍ୟୁତ ଭଗବାନ୍ କୃପାପୂର୍ଣ୍ଣ ଦୃଷ୍ଟିରେ ତାଙ୍କୁ ଚାହାନ୍ତି ଓ ନିଜେ ନିଜର ପରିଚୟ ଦିଅନ୍ତି । ସେତେବେଳେ ସେ ନିଜର ସ୍ୱରୂପକୁ ଜାଣେ ଏବଂ ତାଙ୍କର ଶରଣ ନିଏ । ଗୁରୁ ରୂପରେ ଭଗବାନ୍ ତାଙ୍କୁ ନିଜ ନିକଟକୁ ଆସିବାର ସାଧନ ବତାନ୍ତି । ମୁକ୍ତିର ମାର୍ଗ ବତାଇ ଦିଅନ୍ତି । ଜୀବ ଯେତେବେଳେ ମୁକ୍ତ ହୋଇଯାଏ, ସେତେବେଳେ ତାକୁ ମୁକ୍ତିଦାତା ଦର୍ଶନ ଦିଅନ୍ତି; କିନ୍ତୁ ତଥାପି ସେ ଲୋକାନ୍ତର ଦୃଷ୍ଟିରେ ମାର୍ଗ ବତାଇ ଥାଆନ୍ତି ।

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ଅତି ଅଦ୍ଭୁତ ରୂପକୁ ଦର୍ଶନ କରି ମହାରାଜ ମୁଚୁକୁନ୍ଦ ସହସା ଭ୍ରମରେ ପଡ଼ିଗଲେ ଓ ଭୟଭୀତ ହୋଇ ପଚାରିଲେ— 'ହେ ଶ୍ରୀମନ୍ ! ଆପଣ କିଏ ? ଆପଣଙ୍କ ମୃଦୁଳ ଚରଣ ତ କମଳଦଳ ସଦୃଶ ମୃଦୁଳ ଓ ମନୋହର । ଆପଣ ଏହି ଅତି ସୁକୁମାର କୋମଳ ପାଦରେ ଏ କଣ୍ଟକାକୀର୍ଣ୍ଣ ଘୋର ବନ ମଧ୍ୟରେ କେଉଁ କାରଣରେ ଭ୍ରମଣ କରୁଛନ୍ତି ? ଆପଣଙ୍କ ତେଜରୁ ତ ପ୍ରତୀତ ହେଉଛି, ଆପଣ ସାଧାରଣ ପୁରୁଷ ନୁହନ୍ତି, କୌଣସି ଦେବଶ୍ରେଷ୍ଠ । ସାଧାରଣ ପୁରୁଷଙ୍କ ପରି ଦେଖାଯାଉଥିଲେ ମଧ୍ୟ ଆପଣଙ୍କ ଅଙ୍ଗପ୍ରତ୍ୟଙ୍ଗରୁ ଅଦ୍ଭୁତ ତେଜ ଝଳସୁଛି ।"

ଭଗବାନ ଏ କଥା ଶୁଣି କେବଳ ହସିଲେ, କିଛି ହେଲେ ବି ଉତ୍ତର ଦେଲେ ନାହିଁ । ସେତେବେଳେ କୌଣସି ତର୍କ ନ କରି ରାଜା କହିଲେ– "ଆପଣଙ୍କ ତେଜରୁ ତ ଏପରି ପ୍ରତୀତ ହେଉଛି, ଆପଣ ସମସ୍ତ ତେଜସ୍ୱୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଗ୍ନିଦେବ ? କିମ୍ବା ହୁଏତ ଆପଣ ସ୍ୱୟଂ ଭଗବାନ୍ ଭୁବନଭାସ୍କର ? ଅଥବା ଆପଣ ଶର୍ବରୀନାଥ ଶଶି ହୋଇଥିବେ ? ଯଦି ଆପଣ ଚନ୍ଦ୍ର ନୁହନ୍ତି; ତେବେ ସ୍ୱର୍ଗାଧିପ ଦେବେନ୍ଦ୍ର ହୋଇଥିବେ ? ଅଥବା ଯମ, ବରୁଣ, କୁବେର, ବାୟୁ ନୈଋତ ଅଥବା ଈଶ ଏହି ଲୋକପାଳମାନଙ୍କ ମଧ୍ୟରୁ କେହି ହେଲେ ହୋଇଥିବେ ? ଅଥବା ବ୍ରହ୍ମା, ବିଷ୍ଣୁ, ମହେଶ ଏହି ଦେବତାଙ୍କ ମଧ୍ୟରୁ କେହି ହେଲେ ହୋଇଥିବେ ? ପ୍ରଭୋ ! ଯଦି ଆପଣଙ୍କର କୌଣସି ଆପତ୍ତି ନଥାଏ, ତେବେ ଆପଣ ମୋତେ ନିଜର ପରିଚୟ ପ୍ରଦାନ କରନ୍ତୁ । ନିଜର ଜନ୍ମ, କର୍ମ ଓ ଗୋତ୍ର ସମ୍ବନ୍ଧରେ କିଛି କହି ମୋର ସନ୍ଦେହ ମୋଚନ କରନ୍ତୁ ।"

ଏହା ଶୁଣି ଭଗବାନ୍ ହସି ହସି କହିଲେ– "ରାଜନ୍ ! ପ୍ରଥମେ ଆପଣ ନିଜର ପରିଚୟ ଦିଅନ୍ତୁ ଓ ଏ ଗୁମ୍ଫାରେ ଏକୁଟିଆ କାହିଁକି ଶୟନ କରିଥିଲେ କୁହନ୍ତୁ ?" ସଙ୍ଗେ ସଙ୍ଗେ ମୁଚୁକୁନ୍ଦ ନିଜର ପରିଚୟ ଆଦି ପ୍ରଦାନ କରି କହିଲେ—"ପ୍ରଭୋ !

ଦେବତା ଓ ଅସୁରଗଣ ମୋ ତେଜକୁ ସହ୍ୟକରିବାରେ ସମର୍ଥ ନୁହନ୍ତି; କିନ୍ତୁ ଆପଣଙ୍କ ତେଜ ସମ୍ମୁଖରେ ମୋର ତେଜ ନିଷ୍ପ୍ରଭ ହୋଇଯାଇଛି ? ଯେପରିକି ସୂର୍ଯ୍ୟ ଉଦୟ ହେବାକ୍ଷଣି ଜୁଳୁ ଜୁଳୁ ପୋକ ନିଷ୍ପ୍ରଭ ହୋଇଯାଏ । ମୁଁ ଆପଣଙ୍କ ଅସହ୍ୟ ତେଜ ସମ୍ମୁଖରେ ଆଉ ଅଧିକ ସମୟ ରହି ପାରିବିନାହିଁ । ମୋର ଆଖି ଝଲସି ଉଠୁଛି, ମୁଁ ଅଧିକ ସମୟ ଆପଣଙ୍କ ଆଡ଼କୁ ଚାହିଁଲେ ଚିରକାଳ ପାଇଁ ଆଉ ଦେଖି ପାରିବି ନାହିଁ । କୃପାକରି ଆପଣ ମୋତେ ନିଜର ପରିଚୟ ପ୍ରଦାନ କରନ୍ତୁ ।”

ମୁଚୁକୁନ୍ଦଙ୍କର ବିନୟାବନତ ବଚନ ଶୁଣି ଭୂତଭାବନ ଭଗବାନ ହସି ହସି ତାଙ୍କୁ ମେଘଗମ୍ଭୀର ବାଣୀରେ କହିଲେ—“ରାଜନ୍ ! ମୁଁ ମୋର କି ପରିଚୟ ଦେବି ? ମୋର କୌଣସି ନିର୍ଦ୍ଦିଷ୍ଟ ପରିଚୟ ଥିଲେ ତ ଦିଅନ୍ତି ! ପରିଚୟ ନ ଦେବା ହିଁ ମୋର ପରିଚୟ ! ପରିଚୟ ଦେବାକୁ ହେଲେ ପ୍ରଥମେ ଜନ୍ମକଥା କହିବାକୁ ହୁଏ । ମୋର ଜନ୍ମ କେଉଁ କୁଳରେ କେତେବେଳେ ହୁଏ, କିମ୍ବା ମୁଁ ଆଦୌ ଜନ୍ମ ହୁଏ ନାହିଁ କିମ୍ବା ଅସଂଖ୍ୟବାର ଜନ୍ମ ହୋଇ ସାରିଛି । ସେ ସମସ୍ତ କଥା ମୁଁ କିଛି ଜାଣେ ନାହିଁ । ବାକି ରହିଲା କର୍ମ ବିଷୟ । ମୁଁ ନିଜେ ନିଷ୍କାମ; କିନ୍ତୁ ମୋର ଅନନ୍ତ କର୍ମ । ତୁମେ ମୋର ନାମ ଜାଣିବାକୁ ଇଚ୍ଛା କରୁଛ, ଯଦି ମୋର କୌଣସି ଏକ ନିର୍ଦ୍ଦିଷ୍ଟ ନାମ ଥାଆନ୍ତା, ତାହାହେଲେ ମୁଁ ତୁମକୁ କହି ଦିଅନ୍ତି, ମୋର ତ ଅନନ୍ତ ନାମ । କେହି ହେଲେ ମୋର ଜନ୍ମ, କର୍ମ ଓ ନାମକୁ ଗଣନା କରି ପାରିବେ ନାହିଁ । ବରଂ ଏହା ସମ୍ଭବ ହୋଇପାରେ ଯେ, ବର୍ଷାର ଧାରକୁ କେହି ହେଲେ ଗଣିପାରେ, ସାତ ସମୁଦ୍ରର ଜଳ ବିନ୍ଦୁକୁ କେହି ଚାହିଁଲେ ବି ଗଣି ପାରେ । ପୃଥିବୀର ସମସ୍ତ ଧୂଳିକଣାକୁ କେହି ବୁଦ୍ଧିମାନ ବ୍ୟକ୍ତି ଗଣନା କରି କହିପାରେ, ଆକାଶର ତାରାମାନଙ୍କୁ ଗଣାଯିବା ସମ୍ଭବ ହୋଇପାରେ, ପ୍ରାଣୀମାନଙ୍କର ଲୋମକୂପ ଗଣାଯାଇ ପାରେ; କିନ୍ତୁ ମୋର ଜନ୍ମ, କର୍ମ, ଗୁଣ, ଓ ନାମ ଗଣନା କରିବା କାହାରିପକ୍ଷେ ସମ୍ଭବ ନୁହେଁ । ସର୍ବଜ୍ଞ ତ୍ରିକାଳଦର୍ଶୀ ଋଷି ମହର୍ଷିମାନେ ମଧ୍ୟ ମୋର କର୍ମ ସମ୍ବନ୍ଧରେ ନିରନ୍ତର ବର୍ଣ୍ଣନା କରି କରି ତାହାର ଅନ୍ତ ପାଇ ନାହାନ୍ତି । ତଥାପି ମୁଁ ଲୋକାଚାର ଦୃଷ୍ଟିରୁ ମୋର ଜନ୍ମ, କର୍ମ ଓ ନାମ ସମ୍ବନ୍ଧରେ ବର୍ଣ୍ଣନା କରୁଛି ।”

ଭଗବାନଙ୍କର ଏହି ଦୀର୍ଘ ବକ୍ତବ୍ୟ ଶୁଣି ମହାରାଜ ମୁଚୁକୁନ୍ଦଙ୍କ କର୍ଣ୍ଣ ଅଧିକ କିଛି ଶୁଣିବା ପାଇଁ ପ୍ରସ୍ତୁତ ହୋଇଗଲା । ସେ ମନେ ମନେ ବିଚାର କଲେ ‘ଏ ସ୍ୱୟଂ ନାରାୟଣ ନୁହନ୍ତି ତ ?’ ତାଙ୍କର ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଆଦି ଦେଖି ସେ ଏହାହିଁ ସ୍ଥିର କରିନେଲେ । ଏହା ସ୍ଥିରକରି ସେ ଅତ୍ୟନ୍ତ ବିନୟର ସହିତ ଦଣ୍ଡାୟମାନ ହୋଇ ରହିଲେ । ଭଗବାନ ଏହାପରେ କହିଲେ—“ରାଜନ୍ ! ମୁଁ ସମୁଦ୍ରରେ ଶେଷ-ଶଯ୍ୟାରେ ଯୋଗ ନିଦ୍ରାରେ ଶୟନ କରିଥିଲି । ସେହି ସମୟରେ ବେଦଗର୍ଭ ବ୍ରହ୍ମା

ଦେବତାଗଣଙ୍କ ସହିତ ମୋତେ ବସୁଧାଭାର ସମ୍ଭାଳିବା ପାଇଁ ପ୍ରାର୍ଥନା କଲେ । ମୁଁ ସେମାନଙ୍କ ପ୍ରାର୍ଥନା ସ୍ୱୀକାର କରି କହିଲି, 'ଆଚ୍ଛା ଠିକ୍ ଅଛି, ମୁଁ ଅବନୀରୁ ପାପଭାର ଦୂର କରିବାପାଇଁ ଅବତାର ଗ୍ରହଣ କରିବି ଓ ଦୈତମାନଙ୍କୁ ସଂହାର କରିବି ।' ସେହି ବଚନକୁ ପୂର୍ଣ୍ଣ କରିବା ପାଇଁ ମୁଁ ଯଦୁବଂଶରେ ବସୁଦେବଙ୍କ ଔରସରୁ ଦେବକୀଙ୍କ ଗର୍ଭରୁ ସମ୍ଭୂତ ହୋଇଛି । ବସୁଦେବ ମୋର ପିତା ହୋଇଥିବାରୁ ଲୋକମାନେ ମୋତେ ବାସୁଦେବ ବୋଲି କହନ୍ତି । ଜନ୍ମ ହେବା ମାତ୍ରେ ମୁଁ ଦୈତ୍ୟମାନଙ୍କୁ ସଂହାର କରିବା କାର୍ଯ୍ୟ ଆରମ୍ଭ କରିଦେଲି । ଅଘାସୁର, ବକାସୁର, ପ୍ରଲମ୍ବାସୁର, ତୃଣୁର ଓ ଅନ୍ୟାନ୍ୟ ଅନେକ ଅସୁରଙ୍କୁ ମୁଁ ପରଲୋକ ପଠାଇଲି । କଂସ ରୂପରେ ଉତ୍ପନ୍ନ ହୋଇଥିବା କାଳନେମି ଅସୁର ମୋରି ହାତରେ ମୃତ୍ୟୁ ବରଣ କଲା । ଯେଉଁ ସାଧୁଦ୍ରୋହୀ ଅସୁରମାନେ ନାନାବିଧ ରୂପ ଧାରଣ କରି ମୋ ନିକଟକୁ ଆସିଲେ, ସେ ସମସ୍ତଙ୍କୁ ମୁଁ ପରଲୋକ ପଠାଇ ଦେଲି । ଏହି କାଳଯବନ ମଧ୍ଯ ଭୂଭାର ସ୍ୱରୂପ ଥିଲା । ତାକୁ ମୁଁ ଏବେ ତୁମ ଦୃଷ୍ଟି ସମ୍ମୁଖରେ ଉପସ୍ଥିତ କରାଇ ମରାଇ ଦେଲି । ଏ ଗୁମ୍ଫା ମଧ୍ୟକୁ ଆସିବାର ମୋର ଅନ୍ୟ କିଛି ଉଦ୍ଦେଶ୍ୟ ନ ଥିଲା । କେବଳ ତୁମ ଉପରେ କୃପା କରିବା ପାଇଁ ହିଁ ମୁଁ ଏଠାକୁ ଆସିଅଛି । ତୁମେ ମୋର ଭକ୍ତ ଅଟ, ମୁଁ ଭକ୍ତବତ୍ସଳ । ତୁମେ ପୂର୍ବଜନ୍ମରେ ମୋତେ ଉପାସନା କରିଥିଲ । ତାହାର ଫଳସ୍ୱରୂପ ମୁଁ ବର ଦେବାପାଇଁ ତୁମ ସମ୍ମୁଖରେ ଉପସ୍ଥିତ ହୋଇଅଛି । ତୁମେ ମୋ ଠାରୁ ଇପ୍‌ସିତ ବର ମାଗିନିଅ । ଆଜି ମୁଁ ତୁମର ସମସ୍ତ କାମନା ପୂର୍ଣ୍ଣ କରିବି । ଯିଏ ମୋ ଶରଣ ନିଏ, ତାହାର ସମସ୍ତ କାମନା ମୁଁ ପୂରଣ କରେ ।''

ସୂତ କହିଲେ—''ମୁନିଗଣ ! ମହାରାଜ ମୁଚୁକୁନ୍ଦ ଭଗବାନଙ୍କର ପରିଚୟ ପାଇ ତାଙ୍କ ପାଦତଳେ ପଡ଼ିଗଲେ ଓ ଗଦ୍‌ଗଦ କଣ୍ଠରେ ତାଙ୍କର ସ୍ତୁତି କରିବାକୁ ଲାଗିଲେ । ସେ ଯେତେବେଳେ ଭଗବାନଙ୍କର ସ୍ତୁତି କଲେ ଓ ଭଗବାନ ତାଙ୍କୁ ଯେପରି କୃତାର୍ଥ କଲେ ସେ ସମ୍ବନ୍ଧରେ ମୁଁ ଆପଣମାନଙ୍କୁ ପରବର୍ତ୍ତୀ ଅଧ୍ୟାୟରେ କହିବି'' ।

## ଛପ୍‌ପୟ

**କହେଁ ବିହଁସି ବଲ ବନ୍ଧୁ ନାମ ନିଜ କାହା ବତାଉଁ ।**
**ଜନମ କରମ ଗୁନ ଅଖିଲ କହାଁ ତକ ତୁମ୍ହେ ଗିନାଉଁ ॥**
**ସୁରନି ବିନୟ୍ କବ କରୀ ଜନମ ମହି ଦୈ ତବ ଲୀୟୋ ।**
**କଂସାଦିକ ଜେ ଅସୁର ନାଶ ତିନ ସବକୋ କୀୟୋ ॥**
**ବାସୁଦେବ ମୋକୂଁ କହେଂ, କୃପା କରନ ଆୟୋ ୟହାଁ ।**
**ଜହାଁ ରହେଂ ମମ ଭକ୍ତଗନ, ଦୌରି ତୁରତ ପହୁଁଚୂଁ ତହାଁ ॥**

—*—

# ମୁଚୁକୁନ୍ଦଙ୍କ ସ୍ତୁତି

ଭବାପବର୍ଗୋ ଭ୍ରମତୋ ଯଦା ଭବେ-
ଜ୍ଜନସ୍ୟ ତର୍ହ୍ୟଚ୍ୟୁତ ସତ୍ସମାଗମଃ ।
ସତ୍ସଙ୍ଗମୋ ଯର୍ହି ତଦୈବ ସଦ୍‌ଗତୌ
ପରାବରେଶେ ତ୍ୱୟି ଜାୟତେ ମତିଃ ।।

( ଶ୍ରୀ: ଭା: ୧୦ମ ସ୍କନ୍ଧ ୫୧ ଅ. ୫୪ ଶ୍ଳୋକ )

"ଛପପ୍ୟ

ସୁମରି ଗରଗକେ ବଚନ ଯାଦି ମୁଚୁକୁନ୍ଦ ହିଁ ଆଇ ।
ଲପଟେ ଚରନନି ଦୌରି ବିନୟ ଧରି ଧୀର ସୁନାଇ ।।
ହେ ମାୟାପତି !ଈଶ ! ମୋହବଶ ତୁମହି ନ ଜାନେଂ ।
ଭରି ମଦମହଁ ଅଖିଲେଶ ନୃପତ ଅପନେକୁଁ ମାନେଂ ।।
କା ଇନକୁଁ ମାଗୁଁ ପ୍ରଭୋ ! ଛିନ ଭଙ୍ଗୁର ଯେ ବିଷୟ ସୁଖ ।
ତବ ଚରନନିମହଁ ହୋହି ମତି, ହୈ ଯହ ଜଗମହଁ ପରମ ସୁଖ ।।

ମନୁଷ୍ୟ ଯେତେ ବିଷୟ ସୁଖଭୋଗ ତଥା ଲୌକିକ ଉନ୍ନତ କରୁଥିଲେ ମଧ୍ୟ ଯେ ପର୍ଯ୍ୟନ୍ତ ତାହାର ଚିତ୍ତ ଭଗବାନଙ୍କ ପାଦପଦ୍ମରେ ନ ଲଗିଛି, ସେ ପର୍ଯ୍ୟନ୍ତ ତାକୁ ବାସ୍ତବ ଶାନ୍ତି, ସୁଖ ମିଳିବା ଓ ସେ ସନ୍ତୋଷ ଲାଭ କରିବା ସମ୍ଭବ ନୁହେଁ । ଯେତେ କଳା, ଯେତେ ଗୁଣ ଏ ଧରାବକ୍ଷରେ ରହିଛି ସେ ସମସ୍ତ ଅତି ନଗଣ୍ୟ । ଧର୍ମ, ଅର୍ଥ ଓ କାମ ଏହି ତ୍ରିବର୍ଗ ମଧ୍ୟ ସ୍ୱର୍ଗାଦିଲୋକ ପାଇବା ପାଇଁ ଉଦ୍ଦିଷ୍ଟ । ଏହାଦ୍ୱାରା ସଂସାରରେ ବାରମ୍ବାର ଜନ୍ମ ଗ୍ରହଣ କରିବାରୁ ନିଷ୍କୃତି ମିଳି ପାରେ ନାହିଁ । ଏହାଦ୍ୱାରା ଶାଶ୍ୱତ ଶାନ୍ତି ମଧ୍ୟ ଲାଭ କରାଯାଇ ପାରେ ନାହିଁ । ଯେତେବେଳେ ଭଗବାନ ସ୍ୱୟଂ ଆସି ଦର୍ଶନ ଦିଅନ୍ତି, ସେତେବେଳେ ଜୀବ ନିସ୍ତାର ପାଏ । ତାଙ୍କୁ ଲାଭ କରିବାର ମାର୍ଗ କେବଳ ତାଙ୍କଠାରେ ଶରଣାଗତି । ତାଙ୍କଠାରେ ସେହି କାରଣରୁ ସବୁକିଛି ସମର୍ପଣ କରି ନିଶ୍ଚିନ୍ତ ହେବା ଆବଶ୍ୟକ । ତାଙ୍କ କୃପାର ପ୍ରତୀକ୍ଷା କରିବା ଉଚିତ୍ । ଦିନେ ନା ଦିନେ

ଭକ୍ତବତ୍ସଲ ଭଗବାନ କୃପାକରି ଆମ ହୃଦୟ ଗୁମ୍ଫାରେ ଆବିର୍ଭାବ ହୋଇ ଆମଭଳି ନିଦ୍ରିତ ଜୀବଙ୍କୁ ଜାଗ୍ରତ କରାଇ ବର ପ୍ରଦାନ କରିବେ। ଏହା ହିଁ ଆମର ଶ୍ରେଷ୍ଠ ସାଧନ।

ସୂତ କହିଲେ "ମୁନିଗଣ! ମହାରାଜ ମୁଚୁକୁନ୍ଦ ମାଧବଙ୍କର ପରିଚୟ ପାଇ-ସିବାରୁ ହାତଯୋଡ଼ି ଗଦ୍‌ଗଦ ବାଣୀରେ ତାଙ୍କୁ ସ୍ତୁତି କରିବାକୁ ଲାଗିଲେ। ତାଙ୍କୁ ମହର୍ଷି ଗର୍ଗଙ୍କ ବଚନ ସ୍ମରଣ ହେଲା। ମହାମୁନି ଗର୍ଗ କହିଥିଲେ—'ଅଷ୍ଟବିଂଶତି କଳି ଯୁଗରେ ଭଗବାନ ବାସୁଦେବ ଅବତୀର୍ଣ୍ଣ ହୋଇ ଅସୁରଙ୍କୁ ସଂହାର କରିବେ ଓ ତୁମ ଉପରେ କୃପା କରିବେ।' ଭଗବାନଙ୍କ ଦର୍ଶନ ମାତ୍ରକେ ସବୁ ବୁଝିଗଲେ ଯେ, ଏ ହେଉଛନ୍ତି ସ୍ୱୟଂ ନାରାୟଣ। ମୋ ଉପରେ ଅନୁଗ୍ରହ କରି ମୋତେ ଦର୍ଶନ ଦେଲେ। ତେଣୁ ସେ ସ୍ତୁତି କରି କହିବାକୁ ଲାଗିଲେ--'ପ୍ରଭୋ! ଆପଣ ତ ମାୟାଧୀଶ। ଏ ମନୁଷ୍ୟମାନେ ମାୟାରେ ମୋହିତ ହୋଇ ମୁକ୍ତିଦାତା ଆପଣଙ୍କୁ ଚିହ୍ନି ପାରୁ ନାହାନ୍ତି। ଏମାନଙ୍କର ତ ଖାଦ୍ୟ, ପେୟ, ଶୟନ, ଘରଦ୍ୱାର, କୁଟୁମ୍ବ, ପରିବାର ଆଦି ପାଇଁ ନିରନ୍ତର ଚିନ୍ତା। ସ୍ତ୍ରୀ ପୁରୁଷକୁ ଦେଖି ଓ ପୁରୁଷ ସ୍ତ୍ରୀକୁ ଦେଖି ଭୁଲି ଯାଉଛନ୍ତି। ପୁରୁଷ ସ୍ତ୍ରୀର ମାୟା ଜାଲରେ ପଡ଼ି ଯାଉଛି। ଉଭୟେ ଉଭୟଙ୍କର ଚିନ୍ତା କରୁଛନ୍ତି। ସେମାନେ ଏହା ଜାଣି ପାରୁ ନାହାନ୍ତି ଯେ ପ୍ରକାରାନ୍ତରେ ସେମାନେ ବିଷ ପାନ କରୁ ଅଛନ୍ତି। କାମର ବଶୀଭୂତ ହୋଇ ଆପଣଙ୍କ ଭଳି କାମାରିଙ୍କୁ ଭୁଲି ଯାଉଛନ୍ତି ଓ ଜନ୍ମମୃତ୍ୟୁ ଚକ୍ରରେ ଘୂରି ବୁଲୁଛନ୍ତି। ପ୍ରଭୋ! ଏ ସାଂସାରିକ ବିଷୟ ଏପରି ଯେ, ସେଥିରେ ମନୁଷ୍ୟ କେବେହେଲେ ତୃପ୍ତିଲାଭ କରିପାରେ ନାହିଁ। ତେଣୁ ହେ ବାସୁଦେବ! ମୁଁ ଆପଣଙ୍କୁ ଏଭଳି ସାଂସାରିକ ବିଷୟ ମାଗୁ ନାହିଁ। ମୁଁ କେବଳ ଭକ୍ତ-ବାଞ୍ଛିତ ଆପଣଙ୍କ ଚରଣ ସେବା ହିଁ ଚାହୁଁଛି। ଆପଣଙ୍କ ପାଦପଦ୍ମରେ ପ୍ରୀତି ଅତୁଟ ରହୁ, ଏହା ହିଁ ମୋର ଏକମାତ୍ର ଅଭିଳାଷ। ଆପଣଙ୍କ ପରି ମୋକ୍ଷଦାତାଙ୍କୁ ପାଇ ଯଦି ବନ୍ଧନକାରି ବିଷୟ ଯାଚନ୍ତା କରେ, ତାହାହେଲେ ମୋତେ ଶତଧିକ୍‌କାର। ତେଣୁ ହେ ଜନାର୍ଦ୍ଦନ! ମୁଁ ଏହି ଏକମାତ୍ର ବର ପ୍ରାର୍ଥନା କରୁଛି ଯେ ଆପଣ ମୋତେ ଆପଣାର କରି ନିଅନ୍ତୁ ଓ ଏ ଶରଣାଗତକୁ ରକ୍ଷା କରନ୍ତୁ।" (୧)

(୧) ହେ ନାଥ ତୋର ମାୟାବଳେ। ମୋହିତ ପ୍ରାଣୀଏ ସ୍ୱେଚ୍ଛଳେ॥
ଅଶେଷ ଜନ୍ମ ପୁଣ୍ୟଫଳେ। ମନୁଷ୍ୟଦେହ ମହୀତଳେ॥
ଇନ୍ଦ୍ରିୟସୁଖେ ଦେଇ ମତି। ତୋର ଚରଣ ନ ଭଜନ୍ତି॥
ଅଶେଷ ଘୋର ତପ କରି। ଯାହା ଚିନ୍ତନ୍ତି ବ୍ରହ୍ମଋଷି॥
ହେ ନାଥ ପରମ ମଙ୍ଗଳ। ଅନାଦିଧର୍ମ ଆଦି ମୂଳ॥
ତୋହର ଅଭୟ ଚରଣ। ନିତ୍ୟେ ସେବିବି ନାରାୟଣ॥
ଆନ ଧର୍ମେ କାର୍ଯ୍ୟ ନାହିଁ। ଏ ବର ଦିଅ ମୋତେ ତୁହି॥
( ଭାଗବତ : ଜଗନ୍ନାଥ ଦାସ : ୧୦ସ୍କ, ୫୪ଅ )

ମହାରାଜ ମୁଚୁକୁନ୍ଦଙ୍କ ଏପରି ଗୂଢ଼ ଜ୍ଞାନମୟ ଉପଦେଶକୁ ଶୁଣି ଭଗବାନ ପ୍ରସନ୍ନ ହୋଇ କହିଲେ—"ହେ ରାଜନ୍ ! ମୁଁ ତ ଭାବୁଥିଲି ତୁମେ ମୋତେ ପୁନଃ ରାଜ୍ୟ ଆଦି ପ୍ରାର୍ଥନା କରିବ; କିନ୍ତୁ ତୁମେ ସେ ସବୁ କିଛି ତ ମାଗିଲ ନାହିଁ ?"

ମୁଚୁକୁନ୍ଦ କହିଲେ—"ପ୍ରଭୋ ! ବଡ଼ ବଡ଼ ଚକ୍ରବର୍ତ୍ତୀ ତ ରାଜ୍ୟାନୁରାଗରୁ ମୁକ୍ତ ହେବାପାଇଁ ଆପଣଙ୍କୁ ପ୍ରାର୍ଥନା କରିଥାଆନ୍ତି । ମୁଁ ଆପଣଙ୍କୁ ପାଇବା ପରେ ପୁନଶ୍ଚ ଏ ତୁଚ୍ଛ ରାଜ୍ୟ ଆଦି ପ୍ରାର୍ଥନା କରିବା ମୋର ଦୁର୍ଭାଗ୍ୟ ବ୍ୟତୀତ ଆଉ କଣ ହୋଇପାରେ ?"

ଭଗବାନ କହିଲେ—"ନା ରାଜନ୍ ! ତୁମେ ତ ବଡ଼ ବୁଦ୍ଧିମାନ । ମୁଁ ବାରମ୍ବାର ବରଦାନ କରିବା ପାଇଁ କହିବା ସତ୍ତ୍ୱେ ବି ତୁମେ ପ୍ରଲୋଭନରେ ବାସନାର ବଶୀଭୂତ ହେଉ ନାହାଁନ୍ତି । ଯେଉଁ ଲୋକ ମୋତେ ପାଇ ମଧ୍ୟ ଏସବୁ ତୁଚ୍ଛ ପଦାର୍ଥର କାମନା କରନ୍ତି, ସେ ମୋ ମାୟା କବଳରେ ପଡ଼ି ଠକି ଯାଆନ୍ତି ।"

ମୁଚୁକୁନ୍ଦ କହିଲେ—"ହେ ଭଗବାନ ! ତେବେ ଆପଣ ମୋତେ ବରର ପ୍ରଲୋଭନ ଦେଖାଇବା ଆବଶ୍ୟକ କ'ଣ ?"

ଭଗବାନ୍ କହିଲେ—"ରାଜନ୍ ! ତୁମ ବୁଦ୍ଧି ପରୀକ୍ଷା କରିବା ପାଇଁ ହିଁ ମୁଁ ବର ପ୍ରାର୍ଥନା କରିବା ପାଇଁ କହିଥିଲି । ଏବେ ତୁମେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛ । ମୋର ଭକ୍ତମାନେ ସର୍ବଦା ସଚେଷ୍ଟ ରହନ୍ତି, ତାଙ୍କୁ କୌଣସି ବିଷୟର ପ୍ରଲୋଭନ ଦେଖାଇଲେ ମଧ୍ୟ ସେମାନଙ୍କ ବୁଦ୍ଧି ସଂସାରର ବିଷୟ କାମନାରେ ବନ୍ଧ ହୁଏ ନାହିଁ ।"

ମୁଚୁକୁନ୍ଦ କହିଲେ—"ପ୍ରଭୋ ! ମୁଁ ଦେଖୁଛି ଅନେକ ବଡ଼ ବଡ଼ ଯୋଗୀଋଷି ଯୋଗାରୂଢ଼ ହୋଇ ମଧ୍ୟ ବିଷୟ ଫାନ୍ଦରେ ପଡ଼ିଯାଇ ଅଛନ୍ତି, ସେମାନଙ୍କର ଚିତ୍ତ ବିଷୟାସକ୍ତ ହୋଇଥିବାର ଦେଖାଯାଇଛି ?"

ଭଗବାନ୍ କହିଲେ—"ସେମାନେ ମୋର ଭକ୍ତ ନୁହନ୍ତି । ସେମାନେ ନିଜ ନିଜର ପ୍ରବଳ ପୁରୁଷାର୍ଥଦ୍ୱାରା ପ୍ରାଣାୟାମାଦି ସାଧନା କରି ନିଜ ନିଜ ମନକୁ ବଶ କରିବାର ଚେଷ୍ଟା କରୁ ଥାଆନ୍ତି ; କିନ୍ତୁ ଏ ମନ ତ ବଡ଼ ଠକ । ଯଦି ଏହାକୁ ଟିକିଏ ଛିଦ୍ର ମିଳିଯାଏ, ତେବେ ସେ ସଙ୍ଗେ ସଙ୍ଗେ ବିଷୟ ପ୍ରତି ଆସକ୍ତ ହୋଇପଡ଼େ । ଯେଉଁମାନେ ମୋର ଆଶ୍ରୟ ନ ନେଇ କେବଳ ନିଜର ସାଧନା ଦ୍ୱାରା ମନକୁ ବଶ କରିବାକୁ ଚେଷ୍ଟା କରନ୍ତି, ତାଙ୍କ ଭିତରେ ତ କାମନା ଭରି ରହିଥାଏ । ସୁଯୋଗ ପାଇଲେ ତାହା ପ୍ରକାଶ ପାଏ ଓ ବିଷୟରେ ବୁଡ଼ିଯାଏ । କିନ୍ତୁ ଯେ ମୋର ପ୍ରକୃତ ଭକ୍ତ, ସେ ଯଦି କେବେ ଭୁଲ୍‌ରେ ବିଷୟ ପ୍ରତି ଆକର୍ଷିତ ହୁଏ, ତେବେ ମୋ ଭକ୍ତି ପ୍ରଭାବରେ ସଙ୍ଗେ ସଙ୍ଗେ ନିଜକୁ ସମ୍ଭାଳି ନିଏ । ମୁଁ ତାଙ୍କୁ ବିଷୟ ଫାନ୍ଦରେ ପଡ଼ିବାକୁ

ଦିଏ ନାହିଁ । ଏବେ ତୁମେ ମୋଠାରେ ଚିତ୍ତ ରଖି ସ୍ୱଚ୍ଛନ୍ଦରେ ପୃଥିବୀରେ ବିଚରଣ କର । ମୁଁ ତୁମକୁ ବର ଦେଉଛି, ମୋଠାରେ ତୁମର ସର୍ବଦା ଅଚଳା ଭକ୍ତି ରହୁ ।"

ମୁଚୁକୁନ୍ଦ ଭଗବାନଙ୍କ ଚରଣରେ ବାରମ୍ବାର ପ୍ରଣାମ କରି ଶେଷକୁ ନିବେଦନ କଲେ—"ପ୍ରଭୋ ! ମୋତେ ଏବେ ଆଉ କେତେଦିନ ପର୍ଯ୍ୟନ୍ତ ସଂସାର ଚକ୍ରରେ ଘୂରିବାକୁ ପଡ଼ିବ ?"

ଭଗବାନ୍ କହିଲେ—"ରାଜନ୍ ! ଏବେ ଆଉ ତୁମର ସଂସାର ବନ୍ଧନ ନାହିଁ । ଜୀବର ସଂସାର ବନ୍ଧନ ସେହି ପର୍ଯ୍ୟନ୍ତ ରହେ, ଯେ ପର୍ଯ୍ୟନ୍ତ ସେ ମୋ ସମ୍ମୁଖକୁ ଆସି ନଥାଏ । ମୋ ସମ୍ମୁଖକୁ ଆସିବା ମାତ୍ରେ ହିଁ ତାହାର ଭବବନ୍ଧନ ଛିନ୍ନ ହୋଇଯାଏ । ଦେଖ; ତୁମେ କ୍ଷାତ୍ର ଧର୍ମରେ ସ୍ଥିତ ହୋଇ ମୃଗୟା ଆଦିରେ ବହୁ ଜୀବଙ୍କୁ ବଧ କରିଅଛ । ତୁମେ ଏବେ ସମାହିତ ଚିତ୍ତରେ ମୋର ଉପାସନା କରି ସେହି ପାପର ପ୍ରାୟଶ୍ଚିତ୍ତ କର, ଘୋର ତପସ୍ୟା କରି ତାହା କ୍ଷୀଣ କର । ତୁମର ଆଉ ଗୋଟିଏ ଜନ୍ମ ହେବ । ଆଗାମୀ ଜନ୍ମରେ ତୁମେ ସମସ୍ତ ପ୍ରାଣୀଙ୍କର ପରମ ସୁହୃତ୍ ଜଣେ ଉତ୍ତମ ବ୍ରାହ୍ମଣ ହେବ । ସେହି ସମୟରେ ତୁମେ ମୋର ପରମାତ୍ମ ସ୍ୱରୂପକୁ ଅବଶ୍ୟ ପ୍ରାପ୍ତ ହେବ ।" (୨)

ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ ଶୌନକ ପଚାରିଲେ—"ହେ ସୂତ ! ଭଗବାନଙ୍କ ଦର୍ଶନ ହେଲେ ତ କୋଟି ଜନ୍ମର ପାପ କ୍ଷୟ ହୋଇଯାଏ, ପୁଣି ମୁଚୁକୁନ୍ଦ କରିଥିବା ଏକ ଜନ୍ମର ମୃଗୟାଦି ଜନିତ ସାଧାରଣ ପାପ କାହିଁକି ନାଶ ନ ହେଲା ? ତାଙ୍କୁ କାହିଁକି ପୁନଶ୍ଚ ଏକ ଜନ୍ମ ନେବାକୁ ପଡ଼ିଲା ।?"

ସୂତ କହିଲେ "ମହାରାଜ ! ଭଗବାନ ତ ଭକ୍ତର ଭାବନା ଅନୁସାରେ ଫଳ ଦିଅନ୍ତି । ଭଗବତ୍ ଭକ୍ତ ତ କେବେହେଲେ ମୋକ୍ଷ ଇଚ୍ଛା କରନ୍ତି ନାହିଁ । ସେମାନେ କହନ୍ତି ଯେ, ଆମେ ପଛେ ଘୋର ନରକରେ ପଡ଼ୁ, ଅମର ପଛକେ ଅସଂଖ୍ୟ ଜନ୍ମ ହେଉ, କିନ୍ତୁ ହୃଦୟରେ ଭଗବାନଙ୍କ ସ୍ମୃତି ଜାଗ୍ରତ ରହୁ ।"

---

(୨) ସତ୍ରାଦ୍ଧ କୁଳେ ହୋଇ ଜାତ । ଜୀବ ମାରିଲୁ ଅପ୍ରମିତ ॥
ମୃଗୟା କରି ମାଂସ ଖାଇ । ଏ ଜନ୍ମେ ତୋର ଗତି ନାହିଁ ॥
ମୋହର ପାଦେ ଚିତ୍ତ କରି । ସାଧିବୁ ତପ ମହାଘୋର ॥
ପାପ-ଅନ୍ତରେ ଏ ସଂସାରେ । ଜନ୍ମିବୁ ବ୍ରାହ୍ମଣୀ ଉଦରେ ॥
ଆଉ ଜନମେ ଯୁତ ହୋଇ । ମୋ ପାଦେ ସମର୍ପିବୁ ଦେହ ॥
ତେବେ ପାଇବୁ ମୋ ଚରଣ । ହସି ବୋଲନ୍ତି ନାରାୟଣ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ ମ ସ୍କ, ୫୧ଅ)

ଶୌନକ କହିଲେ —"ହେ ସୂତ ! ଭକ୍ତ ମାଗେ ନାହିଁ ଏହାତ ଅଲଗା କଥା, କିନ୍ତୁ ସୂର୍ଯ୍ୟ ଉଦୟହେବା ମାତେ ଅନ୍ଧକାର ତ ରହିପାରେ ନାହିଁ ? ସେହିପରି ଭଗବାନଙ୍କ ଦର୍ଶନ ହେଲେ ଜନ୍ମମୃତ୍ୟୁ ଚକ୍ର ନାଶ ହେବା କଥା ।"

ସୂତ କହିଲେ—"ମହାରାଜ ! ହୋଇ ତ ଗଲା । କିନ୍ତୁ ଭଗବାନ ତ ପୁଣି ଭକ୍ତର ଭାବନାକୁ ଜାଣି ଫଳ ଦେବେ । ଭକ୍ତଙ୍କୁ ସେ ଗୋଲୋକ,ସାକେତ ଓ ବୈକୁଣ୍ଠାଦି ଲୋକ ଦିଅନ୍ତି । ଜ୍ଞାନୀଙ୍କୁ ଜ୍ଞାନରେ ମୁକ୍ତି ଦିଅନ୍ତି ଓ ବର୍ଣ୍ଣାଶ୍ରମ ଧର୍ମଦ୍ୱାରା ଯେଉଁମାନେ ସିଦ୍ଧିଲାଭ କରିବାକୁ ଚାହାନ୍ତି, ତାଙ୍କୁ ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ ଗତିମୁକ୍ତି ଦିଅନ୍ତି । ଏ ମହାରାଜ ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ ଉପାସନା କରିଥିଲେ । ବର୍ଣ୍ଣାଶ୍ରମ ଧର୍ମରେ ଚାରିବର୍ଣ୍ଣ ଓ ଚାରି ଆଶ୍ରମ ରହିଛି । ସେଥିରେ ପୁଣି ପୃଥକ୍ ପୃଥକ୍ ଧର୍ମ । ଶ୍ରଦ୍ଧା ଭକ୍ତି ପୂର୍ବକ ନିଜ ନିଜର ଅଧିକାର ଅନୁସାରେ ଯେଉଁ ବ୍ୟକ୍ତି ଧର୍ମରେ ରହି କର୍ତ୍ତବ୍ୟ ସମ୍ପାଦନ କରେ, ସେହି ଅନୁସାରେ ତାକୁ ସିଦ୍ଧି ପ୍ରାପ୍ତ ହୁଏ ।

ଉଦାହରଣ ସ୍ୱରୂପ ଜଣେ ଶୂଦ୍ର ତାହାର ଧର୍ମ ଶୁଦ୍ଧ ଭାବରେ ଅନ୍ୟ ତିନି ବର୍ଣ୍ଣର ସେବା କରିବା, ତହିଁରେ ନିଜର ଜୀବିକାର୍ଜନ କରିବା । ଗୃହସ୍ଥାଶ୍ରମକୁ ଛାଡ଼ି ଅନ୍ୟ କୌଣସି ଆଶ୍ରମର ବେଶ ଧାରଣ ନ କରିବା । ଏହି ପ୍ରକାରେ ସେ ନିଜର ସ୍ୱଧର୍ମ ଯଦି ପାଳନ କରୁଥାଏ, ତାହାହେଲେ ଶେଷରେ ସ୍ୱର୍ଗବାସ ସୁନିଶ୍ଚିତ । ସ୍ୱର୍ଗୀୟ ସୁଖ ଭୋଗକରି ପର ଜନ୍ମରେ ସେ ବୈଶ୍ୟ କୁଳରେ ଜନ୍ମଗ୍ରହଣ କରେ । ଶୂଦ୍ର ପାଇଁ କେବଳ ଥିଲା ଗୃହସ୍ଥାଶ୍ରମ ସୀମାବଦ୍ଧ । କିନ୍ତୁ ବୈଶ୍ୟପାଇଁ ଦୁଇ ଆଶ୍ରମର ବିଧାନ ରହିଛି । ସେ ବ୍ରହ୍ମଚର୍ଯ୍ୟାଶ୍ରମ ବ୍ରତ ପାଳନ କରି ବେଦାଧ୍ୟୟନ କରନ୍ତି ଓ ପୁନଶ୍ଚ ଗୃହସ୍ଥ ହୋଇ କୃଷି, ବାଣିଜ୍ୟ ଓ ଗୋ-ରକ୍ଷା ଦ୍ୱାରା ନିଜର ଜୀବିକା ନିର୍ବାହ କରି ଗୃହସ୍ଥ ଧର୍ମ ପାଳନ କରନ୍ତି । ଏହିପରି ଧର୍ମ ପାଳନ କରି ଆଦର୍ଶ ଗୃହସ୍ଥ ହୋଇ ମୃତ୍ୟୁପରେ ସେମାନେ ମହର୍ଲୋକ (ମହର୍ଷି ଲୋକ) ପର୍ଯ୍ୟନ୍ତ ଯାଇପାରନ୍ତି ଓ ସେଠାରେ ସୁଖ ଭୋଗ କରି ଶେଷରେ କ୍ଷତ୍ରିୟ ହୋଇ ଜନ୍ମଲାଭ କରନ୍ତି । କ୍ଷତ୍ରିୟଙ୍କ ପାଇଁ ତିନି ଆଶ୍ରମର ବିଧାନ ଅଛି । ସେ ବ୍ରହ୍ମଚର୍ଯ୍ୟବ୍ରତ ଧାରଣ କରି ଗୃହସ୍ଥ ହୁଅନ୍ତି ଓ ଗୃହସ୍ଥ ଧର୍ମ ପାଳନ କରି ଶେଷରେ ବାନପ୍ରସ୍ଥୀ ହୋଇ ବନକୁ ଯାଇ ଘୋର ତପସ୍ୟା କରନ୍ତି । ସେହି ତପସ୍ୟା ପ୍ରଭାବରେ ସେହି ତପସ୍ୱୀଙ୍କର ତପଲୋକ ପର୍ଯ୍ୟନ୍ତ ପ୍ରାପ୍ତ ହୋଇଥାଏ । ଶେଷରେ ସେ ବ୍ରାହ୍ମଣ ହୋଇ ଜନ୍ମଲାଭ କରେ । ବ୍ରାହ୍ମଣଙ୍କର ଚାରି ଆଶ୍ରମର ଅଧିକାର ଅଛି । ପ୍ରଥମେ ସେ ବ୍ରହ୍ମଚର୍ଯ୍ୟାଶ୍ରମରେ ରହି ବେଦାଧ୍ୟୟନ କରି, ପୁନଶ୍ଚ ଗୃହସ୍ଥ ହୋଇ ଯାଗଯଜ୍ଞାଦି ଅନୁଷ୍ଠାନ କରନ୍ତି । ତଦନନ୍ତର ବାନପ୍ରସ୍ଥବ୍ରତ ପାଳନ କରି ଶେଷକୁ ସନ୍ନ୍ୟାସାଶ୍ରମ ଧାରଣ ପୂର୍ବକ ତପ ଆଚରଣ କରନ୍ତି । ଏହିପରି ସନ୍ନ୍ୟାସାଶ୍ରମ ପାଳନ କରି ଶେଷରେ ବ୍ରହ୍ମାଙ୍କ ସତ୍ୟଲୋକ ଲାଭ କରନ୍ତି । ସେମାନେ ସେହି ଲୋକରେ ଏକ କଳ୍ପ ପର୍ଯ୍ୟନ୍ତ

ରହନ୍ତି । ସେମାନଙ୍କର ଜ୍ଞାନପ୍ରାପ୍ତିରେ କିଛି ବାକି ଥିଲେ ବ୍ରହ୍ମା ତାହା ପୂର୍ତ୍ତି କରି ଦିଅନ୍ତି ଓ କଳ୍ପାନ୍ତରେ ବ୍ରହ୍ମାଙ୍କ ସହିତ ସେ ମୁକ୍ତ ହୋଇଯାଆନ୍ତି । ଏହା ହିଁ ବର୍ଣ୍ଣାଶ୍ରମୀ-ମାନଙ୍କର କ୍ରମମୁକ୍ତିର ବିଧାନ । ଯେଉଁ ବ୍ୟକ୍ତି ନୈଷ୍ଠିକ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରେ ସେ ଜନଲୋକ (ଜ୍ଞାନ ଲୋକ) ପର୍ଯ୍ୟନ୍ତ ଯାଏ ଓ ସେଠାରୁ ଆଉ ଫେରି ଆସେ ନାହିଁ । ସେହିଠାରେ ହିଁ ତାହାର ମୁକ୍ତି । ଭଗବଦ୍ ଭକ୍ତଙ୍କ ପାଇଁ ଏପରି କୌଣସି ନିୟମ ନାହିଁ । ସେମାନେ ଯେଉଁ ବର୍ଣ୍ଣର ହୋଇଥାଆନ୍ତୁ ପଛକେ, ଯେଉଁ ଆଶ୍ରମର ହୋଇଥାଆନ୍ତୁ ପଛକେ ଭକ୍ତି ଦ୍ୱାରା ସେମାନେ ଭଗବାନଙ୍କ ଲୋକ ବୈକୁଣ୍ଠ ପ୍ରାପ୍ତ ହୁଅନ୍ତି । ମହାରାଜ ମୁଚୁକୁନ୍ଦଙ୍କର ନିଷ୍ଠା ବର୍ଣ୍ଣାଶ୍ରମଧର୍ମରେ ମଧ୍ୟ ଥିଲା ଓ ସେ ଭଗବାନଙ୍କର ଭକ୍ତ ମଧ୍ୟ ଥିଲେ । ତେଣୁ ତାଙ୍କ ନିଷ୍ଠାକୁ ପୂର୍ତ୍ତି କରିବା ପାଇଁ ଭଗବାନ ତାଙ୍କୁ ବାନପ୍ରସ୍ଥ ବ୍ରତ ପାଳନ କରିବାକୁ ଆଜ୍ଞା ଦେଲେ । ଏହାଦ୍ୱାରା ସେ ପରଜନ୍ମରେ ସର୍ବଭୂତ ସୁହୃଦ୍ ବ୍ରାହ୍ମଣ ହୋଇ କେବଳ ଭଗବାନଙ୍କୁ ପ୍ରାପ୍ତ ହେବେ, ଏହା ବର ଦେଇ ତାଙ୍କ ବର୍ଣ୍ଣାଶ୍ରମ ଧର୍ମର ନିଷ୍ଠା ସ୍ୱୀକାର କଲେ ଓ ଭକ୍ତିର ମହତ୍ତ୍ୱ ପ୍ରଦର୍ଶନ କରାଇଲେ । ଭଗବାନଙ୍କୁ ଦର୍ଶନ କରିବା ମାତ୍ରେ ବାସ୍ତବରେ ତାଙ୍କର ସମସ୍ତ ବନ୍ଧନ ତୁଟି ଯାଇଥିଲା । ସେ କେବଳ ଏକ ଉପାସନାରେ ବ୍ରତୀ ହେବାପାଇଁ ଭଗବାନ୍ ଏପରି ଆଦେଶ କଲେ । ଭଗବାନଙ୍କୁ ଦର୍ଶନ କରିବାରୁ ତାଙ୍କ ହୃଦୟରେ ଭକ୍ତି ଭାବ ବୃଦ୍ଧି ପାଇଥିଲା । ତେଣିକି ଜନ୍ମ ହେଉ ବା ନ ହେଉ ତାଙ୍କର ଆଉ କୌଣସି ଚିନ୍ତା ନଥିଲା ।”

ଶୌନକ କହିଲେ—“ହେ ସୂତ ! ଏବେ ଆମ୍ଭମାନଙ୍କର ଶଙ୍କା ସମାଧାନ ହୋଇଗଲା । ଏହାପରେ କଣ ହେଲା ଆପଣ କୁହନ୍ତୁ । ମହାରାଜ ମୁଚୁକୁନ୍ଦ ଏହାପରେ କେଉଁଠାକୁ ଗଲେ ?”

ସୂତ କହିଲେ—“ହଁ, ମହାଶୟ ! ମୁଁ ତ ସେଇକଥା କହିବାକୁ ଯାଉଛି । ମହାରାଜ ମୁଚୁକୁନ୍ଦ ଭଗବାନଙ୍କର ଦିବ୍ୟ ସ୍ତୁତି କଲେ । ତାହା ମୁଁ ପ୍ରସଙ୍ଗକ୍ରମେ ବର୍ଣ୍ଣନା କରିବି । ଭଗବାନଙ୍କଠାରୁ ବର ପାଇ ସେ ଶ୍ରଦ୍ଧା ସହକାରେ ଭଗବାନଙ୍କୁ ପରିକ୍ରମା କଲେ ଓ ତାଙ୍କ ଚରଣରେ ପ୍ରଣାମ କରି ତାଙ୍କ ପଛେ ପଛେ ଗୁମ୍ଫାରୁ ବାହାରି ଆସିଲେ । ବାହାରକୁ ଆସି ସେ ଯାହା ସବୁ ଦେଖିଲେ, ସେଥିରେ ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ତ ସତ୍ୟ ଯୁଗର ମନିଷ ରୂପେ ୨୮ ହାତ ଉଚ୍ଚତା ବିଶିଷ୍ଟ ଥିଲେ । ଏବେ ଉଚ୍ଚତାର ଅଧେ ବିଶିଷ୍ଟ ଲୋକମାନଙ୍କୁ ଦେଖି ସେ ଭ୍ରମରେ ପଡ଼ିଗଲେ । ତାଙ୍କ ଅମଳରେ ସେ ଯେଉଁ ବଟବୃକ୍ଷ ଦେଖିଥିଲେ, ତା ନିକଟରେ ଏବେକାର ବଟବୃକ୍ଷ ଅତି କ୍ଷୁଦ୍ର ଦେଖାଯାଉଥିଲା । ସେ ଯେଉଁ ଗୋରୁଗାଈ ଦେଖିଥିଲେ ସେମାନଙ୍କ ନିକଟରେ

ଏବେକାର ଗୋରୁଗାଈ ଛେଳି ଛୁଆ ପରି ତାଙ୍କୁ ଦେଖାଗଲେ । ନର, ନାରୀ, ପଶୁ, ପକ୍ଷୀ, ବୃକ୍ଷ, ଲତା ସବୁ କିଛି ତାଙ୍କୁ ଅକାରରେ ଅତ୍ୟନ୍ତ ଶ୍ରେଷ୍ଠ ଦେଖାଗଲା । ସେ ବୁଝି ପାରିଲେ ଯେ, ପୃଥିବୀରେ ଏବେ କଳିଯୁଗ ପ୍ରବେଶ କରିଛି । ଯେପରି ସହରବାସୀ ଜଣେ ଧୋବ ଧାଉଳିଆ ଲୋକ କୌଣସି ପାହାଡ଼ିଆ ଭୂମିର ଅଣ୍ଡ ଅପରିଷ୍କାର ଲୋକଙ୍କ ସହିତ ରହିଲେ ବ୍ୟତିବ୍ୟସ୍ତ ହୋଇପଡ଼େ, ସେହିପରି ସେହି ସତ୍ୟଯୁଗର ମହାରାଜ ଏ କଳିଯୁଗର ଲୋକଙ୍କୁ ଦେଖି ଅତ୍ୟନ୍ତ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ସମସ୍ତଙ୍କ ଶରୀରରୁ ପାପର ଦୁର୍ଗନ୍ଧ ବାହାରୁ ଥାଏ । ସମସ୍ତଙ୍କଠାରେ ରାଗ, ଦ୍ୱେଷ, ଈର୍ଷା, ଦମ୍ଭ, ପାପ, ଅସତ୍ୟ ଆଦି ଦୁର୍ଗୁଣର ଆଭାସ ମିଳୁଥାଏ । ଏପରି ଲୋକଙ୍କ ସଙ୍ଗରେ ମୁହୂର୍ତ୍ତେ ମାତ୍ର ରହିବା ପାଇଁ ତାଙ୍କୁ ବହୁତ କଷ୍ଟ ହେଲା । ସେ ସଙ୍ଗେ ସଙ୍ଗେ ଉତ୍ତର ଖଣ୍ଡ ଯାତ୍ରା କଲେ ଓ ବଦରୀନାଥ ଆଗକୁ ସମ୍ୟାପ୍ରାସ ପ୍ରଦେଶରେ ବରଫରେ ଆଚ୍ଛାଦିତ ଥିବା ଏକ ଗୁମ୍ଫା ମଧ୍ୟରେ ରହି ଘୋର ତପସ୍ୟା କରିବାକୁ ଲାଗିଲେ । ଶୁଣାଯାଏ, ସେ ଏବେ ମଧ୍ୟ ସେହି ସ୍ଥାନରେ ରହି ତପସ୍ୟା କରୁଅଛନ୍ତି । ବଦରୀନାଥ ଆଗକୁ ମାଣାଗ୍ରାମ ଉପରକୁ ଥିବା ଗୁମ୍ଫା ଏବେ ସୁଦ୍ଧା ମୁଚୁକୁନ୍ଦ ଗୁମ୍ଫା ନାମରେ ବିଖ୍ୟାତ ।

ଏହି ପ୍ରକାରେ ଶ୍ରଦ୍ଧାର ସହିତ ତପ ଆଚରଣ କରି ସେହି ରାଜର୍ଷି ଭଗବାନଙ୍କ ବରରେ ବଳୀୟାନ ହୋଇ ଏବଂ ସଙ୍ଗ ଓ ସଂଶୟରହିତ ହୋଇ ଗନ୍ଧମାର୍ଦ୍ଦନ ପର୍ବତରେ ମୁନିବ୍ରତ ପାଳନ ପୂର୍ବକ ସମସ୍ତ କଷ୍ଟ ସହି ନରନାରାୟଣ ପୀଠ ନିକଟରେ ଶାନ୍ତ ଭାବରେ ଅଦ୍ୟାବଧି ଆରାଧନାରେ ମଜ୍ଜି ରହିଛନ୍ତି । ମୁଁ ମାନ୍ଧାତା ପୁତ୍ର ମୁଚୁକୁନ୍ଦଙ୍କ ବିଷୟରେ ଆପଣମାନଙ୍କୁ ସମସ୍ତ କଥା କହିଲି, ଏବେ ଆଉ କଣ ଶୁଣିବାକୁ ଇଚ୍ଛା କୁହନ୍ତୁ ?"

ଶୌନକ କହିଲେ—"ହେ ସୂତ ! ଏବେ ଆପଣ ଆମ୍ଭମାନଙ୍କୁ ଭଗବାନଙ୍କ ପରବର୍ତ୍ତୀ ଚରିତ ଶୁଣାନ୍ତୁ । କାଳଯବନକୁ ବିନାଶ କରାଇ ଭଗବାନ୍ କେଉଁଠାକୁ ଗଲେ ? ବଳଦେବ କେଉଁଠି ରହିଲେ ? କାଳଯବନର ସୈନ୍ୟମାନେ କୁଆଡ଼େ ଗଲେ ଓ ଜରାସନ୍ଧ ଆଉ ଆକ୍ରମଣ କଲା କି ନାହିଁ, ଏ ସମସ୍ତ କଥା ଆମ୍ଭମାନଙ୍କୁ କୁହନ୍ତୁ ।"

ଏହା ଶୁଣି ସୂତ କହିଲେ—"ମହାରାଜ ! ଭଗବାନ୍ ଯାହା ଭୟରେ ଦାଉଡୁଥିଲେ, ସେ ତ ଏବେ ମୃତ୍ୟୁ ବରଣ କଲା । ଏହାପରେ ସେ ପୁନଶ୍ଚ ମଥୁରାପୁରୀ ଫେରି ଆସିଲେ । ବଳଦେବ ସେହି ମଥୁରାରେ ଥିଲେ । ତଥାପି ସେଠାରେ ଜରାସନ୍ଧ ଲୁଣ୍ଟତରାଜ କରୁଥିଲା । ସେହି କାରଣରୁ ତ ସେ ମଥୁରା ତ୍ୟାଗ କରି ଦ୍ୱାରକାରେ ବସବାସ

ଅନ୍ତ କଣ ଦେଇଥିଲେ । ଏବେ ସେ ମଥୁରା ଛାଡ଼ି ଦ୍ୱାରକା ଚାଲିଗଲେ । ଏହି ପ୍ରସଙ୍ଗ ମୁଁ ପରବର୍ତ୍ତୀ ଆଲୋଚନାରେ ଶୁଣାଇବ ।"

## ଛପ୍ପୟ

ଦୟେଁ। ଭକ୍ତି ବରଦାନ ଗୁହାତେଁ ନିକସେ ଯଦୁବର ।
ଦେଖେଂ ନୃପ ମୁଚୁକୁନ୍ଦ କଲିଯୁଗୀ ଲଘୁ ପଶୁ ନରୁନର ॥
ବଦରୀବନ ତପ କରନ ଗୟେ ତହଁ ମୁନି ବ୍ରତ ସାଧେଂ ।
ସଂଯମ ଶ୍ରଦ୍ଧା ସହିତ ଶ୍ୟାମକୁଁ ନିତ ଆରାଧେଂ ॥
ଇତ ମଥୁରା ଆୟେ ମଦନମୋହନ ସେନା ଯବନ କୀ ।
ଲୁଟି ପାଟ ବାଁଧୀ ତୁରତ, ଲୁଟରୀଂ ସବ ଧନରତନ କୀ ॥

—※—

# ଜରାସନ୍ଧର ଅଷ୍ଟାଦଶବାର ଆକ୍ରମଣ

ନୀୟମାନେ ଧନେ ଗୋଭି ର୍ନୃଭି ଶ୍ଚାଚ୍ୟୁତଚୋଦିତୈଃ ।
ଆଜଗାମ ଜରାସନ୍ଧସ୍ତ୍ରୟୋବିଂଶତ୍ୟନୀକପଃ ।। *

(ଶ୍ରୀ ଭା : ୧୦ମ ସ୍କନ୍ଧ ୫୬ ଅ: ୬ ଶ୍ଳୋକ)

## ଛପ୍‌ପୟ

ଖବର ଭୈଲନି ଲଦି ଦ୍ୱାରକା ଧନ ପହୁଁଚବତ ।
ତବଇ ନିରଖ୍ୟୋ ଜରାସନ୍ଧ ସେନାସଙ୍ଗ ଆବତ ।।
ରାମଶ୍ୟାମ ଲଖି ସୈଂନ ବାଁଧିକେ ମୁଟ୍‌ଠୀ ଭାଗେ ।
ଜରାସନ୍ଧ କେ ସକଲ ବୀର ବର ପୀଛେଁ ଲଗେ ।।
ଭଗତ ଭଗତ ଦୋଉ ଥକେ, ଚଢେ ପ୍ରବର୍ଷଣପେ ଉଛରି ।
ଘେର୍‌ୟୋ ଗିରି ଚହୁଁ ଔର ତେଂ, ଜାରୈଃ ନହିଂ
ଅବ ଯ୍ୟେ ଉତରି ।।

ଭଗବାନ ଯେତେବେଳେ ଯେଉଁ ଲୀଳା ରଚନା କରନ୍ତି, ସେତେବେଳେ ତାହାକୁ ପୂର୍ଣ୍ଣ କରିଥାଆନ୍ତି । ଯୋଦ୍ଧାର ଲୀଳା ଆରମ୍ଭ ଯଦ କରନ୍ତି, ତେବେ ନିଜେ ପୂର୍ଣ୍ଣ ଯୋଦ୍ଧା ସାଜିଥାଆନ୍ତି । ଶୃଙ୍ଗାର ଲୀଳା ପ୍ରଦର୍ଶନ କରିବାକୁ ହେଲେ, ସ୍ୱୟଂ ମନ୍ମଥର ମନକୁ ମଧ ମନ୍ଥନ କରିବା ରୂପ ଧାରଣ କରନ୍ତି ଓ ଯେତେବେଳେ ଭୟଭୀତଙ୍କ ଭଳି ପଳାୟନର

---

* ଗୋରୁ ମହିଷ ବନମାଳୀ । ଧରି ଦ୍ୱାରକାପୁରେ ଚଳି ।।
ବନ୍ଧୁର କାର୍ଯ୍ୟ ଅନୁବନ୍ଧ । ଆସି ମିଳିଲା ଜରାସନ୍ଧ ।।
ତେଇଶ ଅକ୍ଷୌହିଣୀ ବଳ । ଶୁଭଇ ମୁଖରବ ଗୋଳ ।।
(ଭାଗବତ : ଜଗନ୍ନାଥ ଦାସ : ୧୦ସ୍କ, ୫୪ଅ)

ଲୀଳା କରିବାକୁ ଚାହାନ୍ତି, ସେତେବେଳେ ସାକ୍ଷାତ ଭୟଭୀତ ହୋଇ ପଳାୟନ ଲୀଳା କରନ୍ତି । କାରଣ ସେ ସବୁଦିଗରୁ ବିଗ୍ରହ କଲେ ସର୍ବକର୍ମରେ ପୂର୍ଣ୍ଣ । ପୂର୍ଣ୍ଣଙ୍କ କାର୍ଯ୍ୟରେ ଅପୂର୍ଣ୍ଣତାର ପ୍ରଶ୍ନ କେଉଁଠି ?''

ସୂତ କହିଲେ—''ମୁନିଗଣ ! କାଳଯବନକୁ ମୁଚୁକୁନ୍ଦଙ୍କ ଦ୍ୱାରା ମରାଇ ଶ୍ୟାମସୁନ୍ଦର ମୁଚୁକୁନ୍ଦଙ୍କ ସଙ୍ଗରେ ଗୁମ୍ଫା ମଧ୍ୟରୁ ବାହାରି ଆସିବା ପରେ ମୁଚୁକୁନ୍ଦ ତ ଉତ୍ତରଖଣ୍ଡ ଯାତ୍ରା କଲେ । ଭଗବାନ ଶ୍ୟାମସୁନ୍ଦର ସେଠାରୁ ବଳଦେବ ଜଗି ରହିଥିବା ମଥୁରାପୁରୀକୁ ଫେରି ଆସିଲେ । ଏବେ ଆଉ ମଥୁରାପୁରୀରେ ରହିବା ଆବଶ୍ୟକ ନ ଥିବାରୁ ସେ ଦୁହେଁ ଦ୍ୱାରକା ଯାତ୍ରା କଲେ । ପଥ ମଧ୍ୟରେ ଦୁହେଁ କାଳଯବନର ସୈନ୍ୟମାନଙ୍କୁ ସଂହାର କଲେ । କେତେକ ସୈନ୍ୟ ଭୟରେ ପଳାୟନ କଲେ । ସେହି ମ୍ଳେଚ୍ଛ ସେନାଙ୍କ ପାଖରେ ବହୁତ ଧନ ଥିଲା, ଭଗବାନ ସେ ସମସ୍ତ ହରଣ କରି-ନେଲେ ଓ ସେ ସମସ୍ତ ଧନରତ୍ନ ଖଚର ଓ ଲୋକମାନଙ୍କ ସାହାଯ୍ୟରେ ଦ୍ୱାରକା ନେଇ ଆସିଲେ ।''

ଶୌନକ ପଚାରିଲେ—''ହେ ସୂତ ! ଏତେଗୁଡ଼ିଏ ମ୍ଳେଚ୍ଛ ସେନାଙ୍କୁ ଭଗବାନ ଅତି କମ୍ ସମୟ ମଧ୍ୟରେ କିପରି ସଂହାର କଲେ ?''

ସୂତ କହିଲେ—''ମହାରାଜ ! ଅଧିକ ସଂଖ୍ୟାରେ ତ ବିଜୟ ହୁଏ ନାହିଁ, ବିଜୟ ହୁଏ ହାର୍ଦ୍ଦିକ ଉତ୍ସାହ ଓ ଆଗ୍ରହ ଦ୍ୱାରା । ଯାହାଙ୍କର ସୈନ୍ୟ ସଞ୍ଚାଳନ ସୁଚାରୁ ରୂପେ ହୁଏ, ତାଙ୍କର ଯେତେ କମ୍ ସୈନ୍ୟ ଥିଲେ ମଧ୍ୟ ବିଜୟ ସୁନିଶ୍ଚିତ । ବିପରୀତରେ ଯାହାଙ୍କର ଯୋଗ୍ୟ ସେନାପତି ନ ଥାନ୍ତି, ତାଙ୍କର ଯେତେ ଅଧିକ ସୈନ୍ୟ ଥିଲେ ମଧ୍ୟ ସେ କେବେହେଲେ ବିଜୟ ଲାଭ କରିପାରନ୍ତି ନାହିଁ ।''

ପ୍ରାଚୀନ କାଳରେ ସମସ୍ତ ପ୍ରଜା କ୍ଷତ୍ରିୟମାନଙ୍କ ଉପରେ ଅସନ୍ତୁଷ୍ଟ ହୋଇ ସେମାନଙ୍କ ବିରୁଦ୍ଧରେ ସଶସ୍ତ୍ର ବିଦ୍ରୋହ କରୁଥିଲେ । ଏକ ପକ୍ଷରେ କେବଳ କ୍ଷତ୍ରିୟ ରହୁଥିଲେ ଓ ଅପର ପକ୍ଷରେ ବ୍ରାହ୍ମଣ, ବୈଶ୍ୟ ଓ ଶୂଦ୍ର ଆଦି ରହୁଥିଲେ । ଯୁଦ୍ଧରେ ବାରମ୍ବାର କ୍ଷତ୍ରିୟମାନେ ଜୟଲାଭ କଲେ । ଯଦିଚ ସେମାନଙ୍କର ସଂଖ୍ୟା ଅତି କମ୍ ଥିଲା, ତଥାପି ସେମାନେ ସଂଖ୍ୟାଧିକ ଅପର ପକ୍ଷର ଲୋକମାନଙ୍କୁ ଯୁଦ୍ଧ କୌଶଳରେ ଜିତି ଗଲେ । ନିଜର ପରାଜୟ ହେଉଥିବାର ଦେଖି ବ୍ରାହ୍ମଣାଦି ବର୍ଣ୍ଣ ଅତ୍ୟନ୍ତ ଚିନ୍ତିତ ହେଲେ । ସେମାନେ ଅସ୍ତ୍ରଶସ୍ତ୍ର ରଖି ଦେଇ କ୍ଷତ୍ରିୟଙ୍କ ନିକଟକୁ ଗଲେ ଓ କହିଲେ— କ୍ଷତ୍ରିୟଗଣ ! ଆମ୍ଭେମାନେ ତୁମକୁ ଧର୍ମପୂର୍ବକ ଏହି ପ୍ରଶ୍ନ ପଚାରୁଛୁ ଯେ, ଆମ୍ଭେମାନେ ସଂଖ୍ୟାରେ ଅଧିକ ହୋଇଥିଲେ ମଧ୍ୟ ବାରମ୍ବାର କାହିଁକି ପରାଜିତ ହେଉଛୁ ଓ ଆପଣମାନେ ସଂଖ୍ୟାରେ କମଥାଇ ସର୍ବଦା ବିଜୟଲାଭ କରୁଛନ୍ତି ?''

କ୍ଷତ୍ରିୟଗଣ କହିଲେ—"ଦେଖନ୍ତୁ ! ଆପଣମାନେ ଯଦିଚ ଆମ୍ଭମାନଙ୍କଠାରୁ ସଂଖ୍ୟାରେ ଅଧିକ, ତଥାପି ଆପଣମାନଙ୍କ ମଧ୍ୟରେ ସଙ୍ଗଠନ ନାହିଁ । ଆପଣମାନଙ୍କର କୌଣସି ଜଣେ ସେନାପତି ବି ନାହିଁ । ସେନାପତିଙ୍କ ଆଦେଶରେ ହିଁ ସୈନ୍ୟମାନେ ଯୁଦ୍ଧ କରନ୍ତି । ଯାହାଙ୍କର ସେନାପତି ନଥାନ୍ତି, ସେମାନେ କାହା ସାହସରେ ଯୁଦ୍ଧ କରିବେ ? ତେଣୁ ସେମାନଙ୍କର ସାହସ ଭଙ୍ଗ ହୁଏ । ଆପଣମାନେ ନିଜ ନିଜକୁ ଅତ୍ୟନ୍ତ ବୁଦ୍ଧିମାନ ମନେକରି ଜଣେ ଅନ୍ୟ ଜଣଙ୍କ କଥା ଶୁଣିବାକୁ ପ୍ରସ୍ତୁତ ହେଉ ନ ଥିବାରୁ ବିଜୟ ଲାଭ କରି ପାରୁ ନାହାନ୍ତି । ବିନା ସେନାପତିରେ ସୈନ୍ୟମାନେ କେବେହେଲେ ବିଜୟୀ ହୋଇ ପାରନ୍ତି ନାହିଁ ।"

ଏହାଶୁଣି ସମସ୍ତେ ଫେରି ଆସିଲେ ଓ ନିଜର ଦଳର ଜଣେ ସେନାପତି ବାଛିଲେ । କାଳଯବନର ମୃତ୍ୟୁପରେ ତା ସୈନ୍ୟମାନଙ୍କର ସାହସ ସେହି କାରଣରୁ କମି ଯାଇଥିଲା । ସେମାନେ ଭଗବାନଙ୍କର ବାଣ ବର୍ଷାକୁ ସହ୍ୟକରି ପାରି ନଥିଲେ । ସେମାନେ ପରାଜିତ ହେବାରୁ ଭଗବାନ୍ ସେମାନଙ୍କର ସମସ୍ତ ଧନରତ୍ନ ନେଇ ଦ୍ୱାରକା ଚାଲିଗଲେ । ଯୋଗକୁ ସେ ଦ୍ୱାରକା ଯିବା ପଥରେ ସେହି ଦିନ ସେହିବାଟରେ 'ଦିଗଶୂଳ' ଥିଲା ଓ ଚନ୍ଦ୍ରମା ପିଠି ପଛକୁ ରହିଯାଇ ଥିଲା । ଭଗବାନ ଶୁଭ ମୁହୂର୍ତ୍ତ ନ ବିଚାରି ଯାତ୍ରା କରିଥିଲେ । ସେଥିପାଇଁ ସେହି ଅପହୃତ ଧନ ତାଙ୍କ କାର୍ଯ୍ୟରେ ଆସିଲା ନାହିଁ । ସେ ମଥୁରା ନଗରୀରୁ ବାହାରିବା ମାତ୍ରେ ସମ୍ମୁଖରେ ଜରାସନ୍ଧ ବହୁସଂଖ୍ୟାରେ ସୈନ୍ୟ ନେଇ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଥିବାର ଦେଖିଲେ । ଅନ୍ୟ ଉପାୟ ନ ଦେଖି ସେ ବଳଦେବଙ୍କ ସଙ୍ଗରେ ଧରି ପଳାୟନର ଛଳନା କଲେ । କହିଲେ —"ଭାଇ ! ଚାଲ ପଳାଇ ଯିବା, ଏମାନଙ୍କୁ ଏବେ ଜୟ କରି ପାରିବା ନାହିଁ ! ଜରାସନ୍ଧ ବର୍ତ୍ତମାନ ବ୍ରାହ୍ମଣଙ୍କ ଆଶୀର୍ବାଦ ନେଇ ଆସିଅଛି ।"

ବଳଦେବ କୃଷ୍ଣଙ୍କ ହାତ ଧରି ତାଙ୍କ ସଙ୍ଗେ ପଳାଇବାକୁ ଲାଗିଲେ । ଏହାଦେଖି ଜରାସନ୍ଧ ବହୁତ ହସିଲା ଓ ଚିତ୍କାର କରି କହିଲା, "ରେ କୃଷ୍ଣ-ବଳରାମ ! ମୁଁ ତ ତୁମ ଦୁହିଁଙ୍କ ବଳର ପ୍ରଶଂସା ଶୁଣିଥିଲି, ଏବେ ତୁମେ ଚୋରଙ୍କ ପରି ପଳାଉଥିବାର ଦେଖୁଛି, ଯାଇ ଯାଇ କେଉଁଯାଏ ଯିବ ? ତୁମେ ଯେଉଁଠାକୁ ଯିବ, ମୁଁ ତୁମ ପଛେ ପଛେ ସେହି ପର୍ଯ୍ୟନ୍ତ ଯିବି ।" ଏହା କହି ସେ ନିଜର ସମସ୍ତ ରଥୀ, ଅଶ୍ୱାରୋହୀ, ଗଜାରୋହୀ ଓ ଅନ୍ୟାନ୍ୟ ସୈନ୍ୟଙ୍କୁ ସଙ୍ଗରେ ନେଇ ତାଙ୍କ ପଶ୍ଚାତ୍‌ଧାବନ କଲା ।

ଏ ଦୁହେଁ ତ ଜାଣି ଜାଣି ପଳାଉଳର ଛଳନା କରୁଥିଲେ ଓ ବିନା ଯାନରେ ପାଦରେ ଦୌଡ଼ୁଥିଲେ, ତେଣୁ ଦୌଡ଼ି ଦୌଡ଼ି ଦୁହେଁ ଥକି ପଡ଼ିବାର ଛଳନା ବି କଲେ । ଏବେ ଶତ୍ରୁହାତରେ ତ ପଡ଼ିଯିବେ, ଶତ୍ରୁ ସେ ଦୁହିଙ୍କୁ ବନ୍ଦୀକରି ନିଜ କାରାଗାରକୁ ନେଇଯିବ । ଏହିକଥା ଭାବି ଭଗବାନ୍ ଓ ବଳରାମ ସଙ୍ଗେ ସଙ୍ଗେ ସମ୍ମୁଖରେ

ଥିବା 'ପ୍ରବର୍ଷଣ' ନାମକ ଏକ ପାହାଡ଼ ଉପରକୁ ଉଠିଗଲେ । ସେହି ପର୍ବତରେ ସର୍ବଦା ବର୍ଷା ହେଉଥାଏ । ସେଥିପାଇଁ ତାହାର ନାମ ପ୍ରବର୍ଷଣ । ଭଗବାନ ଓ ବଳରାମ ଖାଲି ପାଦ ଥିବାରୁ ପାହାଡ଼ ଉପରକୁ ଅକ୍ଳେଶରେ ଉଠିଗଲେ; କିନ୍ତୁ ଏମାନଙ୍କର ହାତୀ, ଘୋଡ଼ା ଓ ରଥ ନେଇ ଏମାନେ ଉପରକୁ ଉଠନ୍ତେ ଅବା କପରି ? ଜରାସନ୍ଧକୁ ଜଣାଥିଲା ଯେ, ଯଦି ଦଶକୋଡ଼ିଏ ବା ପଚିଶ ଜଣ ସୈନ୍ୟ ପର୍ବତ ଉପରେ ଚଢ଼ି ତାଙ୍କ ପିଛୁ ଧରିବେ, ତେବେ ଏ ଦୁଇଭାଇ ସେମାନଙ୍କୁ ମାରିଦେବେ । ସେ ସତରଥର ଲଢ଼ିଛି, ତେଣୁ ଏ ଦୁହିଙ୍କର ବଳ ପରାକ୍ରମ ତାକୁ ଭଲ ଭାବରେ ଜଣା ଥିଲା । ସେଥିପାଇଁ ସେ ଚିନ୍ତାକଲା ; ଏବେ ତ ଏ ଦୁହେଁ ପାହାଡ଼ ଉପରେ ଅଛନ୍ତି, ମୁଁ ଏ ପାହାଡ଼ର ଚାରିପାଖ ଘେରାଉ କରି ନେବି, ଯେତେବେଳେ ଏ ଦୁହେଁ ତଳକୁ ଓହ୍ଲାଇବେ ମୁଁ ଅକ୍ଳେଶରେ ତାଙ୍କୁ ଯୁଦ୍ଧରେ ହରାଇ ବନ୍ଦୀ କରିବି । ପୁନଶ୍ଚ ସେ ଚିନ୍ତା କଲା, ସମ୍ଭବତଃ ଏ ଦୁହେଁ ତଳକୁ ନ ଓହ୍ଲାଇ ଉପରେ ରହିପାରି ବସିରହି ପାରନ୍ତି । ଏଥିପାଇଁ ମୁଁ ଏ ପାହାଡ଼ର ଚାରିପଟେ ଅଗ୍ନି ସଂଯୋଗ କରି ଦେବି, ହୁଏତ ଅଗ୍ନି ଭୟରେ ସେ ଦୁହେଁ ତଳକୁ ଓହ୍ଲାଇ ଆସିବେ । ଯଦି ନ ଓହ୍ଲାନ୍ତି, ତେବେ ପାହାଡ଼ ଉପରେ ନିଶ୍ଚିତ ଭାବରେ ଭସ୍ମ ହୋଇଯିବେ । ଏହା ଚିନ୍ତାକରି ସେ ବଡ଼ବଡ଼ ଗଛ କାଟି, ବାରୁଦ ଭରିକରି ଚତୁର୍ଦ୍ଦିଗରେ ନିଆଁ ଲଗାଇ ଦେଲା । ଗୋଟିଏ କୋଣରେ ପ୍ରଚଣ୍ଡ ଅଗ୍ନି ଜଳିଉଠି ଚତୁର୍ଦ୍ଦିଗ ବ୍ୟାପିଯିବାର ଦେଖି ଭଗବାନ ବଳଦେବଙ୍କ ସହିତ ସେହି ପର୍ବତ ଉପରୁ ସମସ୍ତଙ୍କ ଦୃଷ୍ଟିର ଅନ୍ତରାଳରେ ତେଇଁ ପଡ଼ି ରାତାରାତି ଦଉଡ଼ି ପଳାଇ ଗଲେ ।

ଜରାସନ୍ଧର ଆଖିରେ ଧୂଳିଦେଇ ଏହିପ୍ରକାର ଦୁଇ ଭାଇ ନିଜର ନୂଆ ରାଜଧାନୀ ଦ୍ୱାରକାପୁରୀରେ ଯାଇ ପହଞ୍ଚିଲେ । ଦ୍ୱାରକାର ଚତୁର୍ଦ୍ଦିଗରେ ତ ସମୁଦ୍ରର ଖାଇ ଥିଲା, ଯେଥିରେ କୌଣସି ଶତ୍ରୁ ସହଜରେ ଗଡ଼ ମଧ୍ୟରେ ପ୍ରବେଶ କରିବା ସମ୍ଭବ ନ ଥିଲା; ତେଣୁ ସେମାନେ ସେହି ପୁରୀକୁ ଆସି ସୁଖରେ ଅବସ୍ଥାନ କଲେ ।

ଏଣେ ଜରାସନ୍ଧ ଦେଖିଲା ଯେ, ପାହାଡ଼ର ସର୍ବାଙ୍ଗ ଅଗ୍ନି ବ୍ୟାପିଯାଇ ପାହାଡ଼ର ଅଗ୍ରଭାଗ ପର୍ଯ୍ୟନ୍ତ ହୁ-ହୁ ହୋଇ ଜଳୁଛି । କିନ୍ତୁ ରାମକୃଷ୍ଣ ଦୁହେଁ ଓହ୍ଲାଇ ନାହାନ୍ତି । ଏ ଦୁହେଁ ସେଠାରେ ନିଶ୍ଚିତ ଭାବରେ ଜଳିପୋଡ଼ି ମରି ଯାଇଥିବେ । ଠିକ୍ ହୋଇଛି, ବିନା ଯୁଦ୍ଧରେ ମୋ ଶତ୍ରୁଙ୍କୁ ମୁଁ ସଂହାର କରିଛି । ଏହା ଭାବି ସେ ବିଜୟ ଉଲ୍ଲାସରେ ମଗଧକୁ ଫେରି ଆସିଲା ଓ ନିଜକୁ ସମ୍ରାଟ ବୋଲି ଘୋଷଣା କରି ପୃଥିବୀ ପାଳନ କରିବାକୁ ଲାଗିଲା । 'ମୁଁ ଶ୍ରୀକୃଷ୍ଣଙ୍କୁ ବି ଜିଣିଗଲି' ଏହା ଭାବି ତାହାର ଅଭିମାନ ଆହୁରି ବୃଦ୍ଧି ପାଇଲା ।

ଏହା ଶୁଣି ଶୌନକ ପ୍ରଶ୍ନକଲେ — "ହେ ସୂତ ! ଭଗବାନ୍ ଦ୍ୱାରକାପୁରୀରେ ପହଞ୍ଚି କି କି ଲୀଳା କରିଥିଲେ ? ସେ କାହାକୁ ବିବାହ କଲେ, ନା ନାହିଁ ? ସେ କେତେ

ବିବାହ କଲେ, ତାଙ୍କର କେତେ ପିଲାପିଲି ହେଲେ ଓ ସେ କି କି ଲୀଳା ସେଠାରେ ଭିଆଇଲେ ଏ ସମସ୍ତ କଥା ଆମ୍ଭମାନଙ୍କୁ କୁହନ୍ତୁ । ଏପର୍ଯ୍ୟନ୍ତ ଆମ୍ଭେମାନେ ବୃନ୍ଦାବନ-ବିହାରୀ ନନ୍ଦନନ୍ଦନଙ୍କର ତଥା ମଥୁରେଶ ବସୁଦେବନନ୍ଦନଙ୍କର ଚରିତ ଶୁଣିଲୁ । ଏବେ ଆମ୍ଭମାନଙ୍କୁ ଦ୍ୱାରକେଶ ଭଗବାନଙ୍କ ଚରିତ ଶୁଣାନ୍ତୁ ।''

ସୂତ କହିଲେ—''ହଁ ମହାରାଜ ! ଏବେ ମୁଁ ଦ୍ୱାରକେଶ ଭଗବାନଙ୍କ ଚରିତ ଶୁଣାଉଛି । ଭଗବାନ୍ ଏଠାରେ ଆଉ ଅବିବାହିତ ହୋଇ ରହିଲେ ନାହିଁ, ସେ ଏଠାରେ ବିବାହ କରି ମଧ୍ୟ ସେଥିରେ ନିର୍ଲିପ୍ତ ରହିଲେ । ସେ ପୂର୍ବରୁ ତ ବିବାହ କରିବାକୁ ଇଚ୍ଛା କରୁଥିଲେ; କିନ୍ତୁ ବଡ଼ଭାଇ ବିବାହ କରି ନଥିବାରୁ ସେ ଛୋଟ ହୋଇ କିପରି ବିବାହ କରି ଥାଆନ୍ତେ ? ଏହି କାରଣରୁ ସେ ଏପର୍ଯ୍ୟନ୍ତ ମୌନ ରହିଥିଲେ । ଯେତେବେଳେ ଆନର୍ତ୍ତନରେଶ ମହାରାଜ-ରୈବତଙ୍କ କନ୍ୟା ରେବତୀଙ୍କୁ ବଳରାମ ବିବାହ କରି ସାରିଲେ ଓ ବ୍ରହ୍ମାଙ୍କ କହିବା ଅନୁସାରେ ରେବତୀଙ୍କୁ ଅଳ୍ପ ଉଚ୍ଚତା ସମ୍ପନ୍ନା କରାଇଲେ, ସେତେବେଳେ ଭଗବାନ୍ ସନ୍ତୋଷ ପ୍ରକାଶ କଲେ ଓ ନିଜର ବିବାହ ପାଇଁ ବ୍ୟବସ୍ଥା କଲେ ।

ବଳଭଦ୍ର ଯେପରି ରେବତୀଙ୍କୁ ବିବାହ କରିଥିଲେ ସେ ପ୍ରସଙ୍ଗ ମୁଁ ପୂର୍ବ ଅଧ୍ୟାୟ ରୈବତ ପ୍ରସଙ୍ଗରେ ବର୍ଣ୍ଣନା କରିଛି । ଏବେ ଭଗବାନ୍ ଯେପରି ବିବାହ ସମୟରେ ଶିଶୁପାଳର ପକ୍ଷପାତୀ ଶାଲ୍ୱାଦି ଅନେକ ରାଜାଙ୍କର ମାନ ମର୍ଦ୍ଦନ କରି ବିଦର୍ଭ ନରେଶ ମହାରାଜ ଭୀଷ୍ମକଙ୍କ କନ୍ୟା ଶ୍ରୀ ରୁକ୍ମିଣୀଙ୍କୁ ହରଣ କଲେ ଓ ତାଙ୍କୁ ରାକ୍ଷସ-ବିବାହ ବିଧିରେ ଯେପରି ବିବାହ କଲେ ସେ ବିଷୟରେ ମୁଁ ଆଗକୁ କହିବି । କଥାଟି ହେଉଛି, ଶ୍ରୀରୁକ୍ମିଣୀ ତ ଶ୍ରୀଲକ୍ଷ୍ମୀଙ୍କର ଅଂଶାବତାର ଥିଲେ । ସେହି ପରିଜନ୍ମ ସିଦ୍ଧ ଅଧିକାର ତ ଶ୍ରୀମନ୍ନାରାୟଣଙ୍କର ହିଁ ଥିଲା; କିନ୍ତୁ ରୁକ୍ମିଣୀଙ୍କ ପିତା ତାଙ୍କ ବିବାହ ପ୍ରସ୍ତାବ ଶିଶୁପାଳଙ୍କ ସହିତ ପକାଇ ଥିଲେ । ସେହି ସମୟରେ ବିବାହ ବେଦିରୁ ହିଁ ଭଗବାନ୍ ତାଙ୍କୁ ରଥରେ ବସାଇ ଏପରି ଭାବରେ ନେଇ ଆସିଲେ ଯେ, ଯେପରି କି ଦେବଗଣ ଜଗି ରହିଥିବା ବେଳେ ସେମାନଙ୍କ ଚକ୍ଷୁ ସମ୍ମୁଖରେ ଗରୁଡ଼ ସ୍ୱର୍ଗରୁ ଅମୃତ ହରଣ କରି ନେଇଥିଲେ ।''

ଏହା ଶୁଣି ଶୌନକ ପଚାରିଲେ—''ହେ ସୂତ ! ଭଗବାନଙ୍କୁ ବିବାହ କରିବା ପାଇଁ କଣ କନ୍ୟା ମିଳୁ ନଥିଲେ ଯେ, ସେ ରାକ୍ଷସ ବିବାହ ବିଧିରେ କନ୍ୟାକୁ ହରଣ କରି ଆଣିବାକୁ ବାଧ୍ୟ ହେଲେ ? ଅମିତ ପରାକ୍ରମୀ ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ର ଏତେ ବଡ଼ବଡ଼ ରାଜାଙ୍କୁ ପରାସ୍ତ କରି କିପରି କନ୍ୟାକୁ ହରଣ କରି ଆଣିଲେ ? ଏହା ସହିତ ଭଗବାନ୍‌ଙ୍କର ଆଉ ଯେଉଁ ଲୀଳା ସବୁ ଦ୍ୱାରକାପୁରୀରେ ଘଟିଥିଲା, ସେ ସମସ୍ତ ଆପଣ ଆମ୍ଭମାନଙ୍କୁ କୁହନ୍ତୁ । ଯେତେ କଥା ଭଗବାନଙ୍କ ସମ୍ବନ୍ଧରେ ଶୁଣୁଥିଲେ ମଧ୍ୟ ଆମ୍ଭମାନଙ୍କର ତୃପ୍ତି ହେଉ ନାହିଁ ।''

ସୂତ କହିଲେ—"ମୁନିଗଣ ! ଆପଣମାନେ ଧନ୍ୟ, ଯେହେତୁ ଭଗବାନଙ୍କ ଚରିତ ଶ୍ରବଣ କରିବା ପାଇଁ ଆପଣମାନଙ୍କର ଅତ୍ୟନ୍ତ ଅନୁରାଗ । ଏବେ ମୁଁ ଆପଣମାନଙ୍କୁ ଦ୍ୱାରକାଲୀଳା ବିସ୍ତୃତ କହିବି, ଆପଣମାନେ ତାହା ମନୋଯୋଗ ସହକାରେ ଶ୍ରବଣ କରନ୍ତୁ ।"

## ଛପ୍ପୟ

ପରବତ ଲୀଯୋ ଘେରି ଆଗି ଚହୁଁ ଓର ଲଗାଇ ।
ଜରି ଜାଚେ ମମ ଶତ୍ରୁ କସ୍ରଁଧ ମନହିଁ ସିହାଇ ॥
କୂଦେ ଦୋଉ ବନ୍ଧୁ ନ ଭୟ କଛୁ ମନମହିଁ ମାନେଯା ।
କବ ଗିରିତୈଂ ଗିରି ଗୟେନ କାହୁନେ କଛୁ ଜାନେଯା ॥
ଜରାସନ୍ଧ ନିଜପୁର ଗୟୋ, ଶତ୍ରୁ ମରେଯା ହିୟ ମାନିକେଂ ।
ଇତ ସୁଖତେଂ ଯଦୁବର ରହେଂ, ପୁରୀ ଦ୍ୱାରକା ଆନିକେଂ ॥

—※—

# ଶ୍ରୀ ରୁକ୍ମଣୀ ଚରିତ

**ରାଜାଽଽସୀଦ୍ ଭୀଷ୍ମକୋ ନାମ ବିଦର୍ଭାଧିପତିର୍ମହାନ୍ ।**
**ତସ୍ୟ ପଞ୍ଚାଭବନ୍ ପୁତ୍ରାଃ କନ୍ୟୈକା ଚ ବରାନନା ॥ ※**

( ଶ୍ରୀ: ଭା: ୧୦ମ ସ୍କନ୍ଧ ୫୨ ଅ. ୨୧ ଶ୍ଳୋକ )

---

※ ଭୀଷ୍ମକ ନାମେ ମହୀନାଥ । ବିଦର୍ଭନଗରେ ସମ୍ଭୂତ ॥
ତାହାର ପତ୍ନୀଗର୍ଭୁଁ ଜାତ । ଏକ ଦୁହିତା ପାଞ୍ଚସୁତ ॥
............... । ପ୍ରତ୍ୟକ୍ଷେ କମଳା ସମ୍ଭୂତ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ ସ୍କ, ୫୧ଅ)

## ଛପପଦ୍ୟ

ପୁଚ୍ଛନ୍ତି ଶୌନକ-ସୂତ ! ଦ୍ୱାରକା ବୃତ୍ତ ବତାଓ ।
କୈ ହରି କିୟେ ବିବାହ ଭୟେ କୈ ପୁତ୍ର ସୁନାଓ ॥
ହଁସି କେ ବୋଲେ ସୂତ-କହୁଁ ତକ ବ୍ୟାହ ଗିନାଉଁ ।
ମୁଖ୍ୟ ଭୟେ ଜେ ଆଠ ପ୍ରଥମ କୁଁ ପ୍ରଥମ ସୁନାଉଁ ॥
ନୃପ ବିଦର୍ଭ ପତି ଭୀଷ୍ମ କେ, ପାଞ୍ଚ ପୁତ୍ର ରୁକ୍ମୀ ବଡ଼ୋ ।
ବହିନ ରୁକ୍ମିନୀ ଅଂଶ ଶ୍ରୀ, ଜାକେ ହିତ ହରି ତେଂ ଲଡ଼େୟା ॥

ପୂର୍ବଜନ୍ମର ସଂସ୍କାର ଅନୁସାରେ ବୈବାହିକ ସମ୍ବନ୍ଧ ସ୍ଥାପିତ ହୋଇଥାଏ । କୁମାରୀ କନ୍ୟା ଓ କୁମାର ବରଙ୍କ ପିତା ମାତା ଯେତେ ଯାହା ସହିତ ସମ୍ବନ୍ଧ ସ୍ଥାପନ କରିବାପାଇଁ ଚେଷ୍ଟା କରନ୍ତୁ ପଛକେ, ଯେ ପର୍ଯ୍ୟନ୍ତ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରସ୍ତାବ ପକ୍କା ନ ହୋଇଛି, ସେପର୍ଯ୍ୟନ୍ତ ବିବାହ କାର୍ଯ୍ୟ ସଫଳ ହୋଇପାରେ ନାହିଁ । ବିବାହ ବେଦିରୁ ବର ବାହୁଡ଼ି ଯାଇ ଅନ୍ୟତ୍ର ବିବାହ କରେ । ଏହାର ବିପରୀତରେ ଯାହାକି ସ୍ୱପ୍ନରେ ବି ସମ୍ଭବ ନୁହେଁ, ତାହା ମଧ୍ୟ ଘଟିଥାଏ । ଯାହାର ଯାହା ସହିତ ପୂର୍ବଜନ୍ମର ସଂସ୍କାର ରହିଛି, ତାହା ସହିତ ତାହାର ସମ୍ବନ୍ଧ ସ୍ଥାପିତ ହୋଇଯାଏ । ମନୁଷ୍ୟ ଯେତେ ପ୍ରଯତ୍ନ କଲେ ମଧ୍ୟ ସବୁ ବ୍ୟର୍ଥ ହୋଇଯାଏ । ଯାହା ଭାଗ୍ୟରେ ଯେଉଁ କନ୍ୟା ଲେଖିବାର ଥାଏ, ତାକୁ ସେହି କନ୍ୟା ହିଁ ମିଳେ ।

ସୂତ କହିଲେ—"ମୁନିଗଣ ! ଆପଣମାନେ ମୋତେ ଭଗବାନଙ୍କ ବିବାହ ସମ୍ବନ୍ଧରେ ପଚାରିଛନ୍ତି, ବର୍ତ୍ତମାନ ମୁଁ ସେହି କଥା କହୁଛି । ଦକ୍ଷିଣ ଦେଶରେ ବିଦର୍ଭ (ବିରାର) ନାମକ ଏକ ସମୃଦ୍ଧିଶାଳୀ ଦେଶ ଅଛି । ଯେଉଁ ସମୟରେ ଭଗବାନ୍ ଦ୍ୱାରକାପୁରୀରେ ଅବସ୍ଥାନ କଲେ, ସେହି ସମୟରେ ବିଦର୍ଭର ଅଧିପତି ଥିଲେ ମହାରାଜ ଭୀଷ୍ମକ । ସେ ଅତ୍ୟନ୍ତ ଧର୍ମପରାୟଣ ଓ ପ୍ରଜାବତ୍ସଳ ଥିଲେ । ବହୁଦିନ ପର୍ଯ୍ୟନ୍ତ ସେ ଭଗବତୀଙ୍କୁ ଆରାଧନା କରିଥିଲେ । ତାଙ୍କ ଆରାଧନାରେ ପ୍ରସନ୍ନ ହୋଇ ସ୍ୱୟଂ ଲକ୍ଷ୍ମୀଦେବୀ ତାଙ୍କୁ ବର ଦେଇ କହିଥିଲେ—'ମୁଁ ତୁମର କନ୍ୟା ହୋଇ ଜନ୍ମଗ୍ରହଣ କରିବି ।' ସେଥିପାଇଁ ଲକ୍ଷ୍ମୀଙ୍କ ଅଂଶରୁ ତାଙ୍କର ଏକ ପରମ ସୁନ୍ଦରୀ, ସୁଶୀଳା, ସର୍ବଗୁଣ ସମ୍ପନ୍ନା କନ୍ୟା ଜାତ ହୋଇଥିଲା । ମହାରାଜ ତାହାର ନାମ ଦେଇଥିଲେ ରୁକ୍ମଣୀ । ଭୀଷ୍ମକଙ୍କର ରୁକ୍ମୀ, ରୁକ୍ମରଥ, ରୁକ୍ମବାହୁ, ରୁକ୍ମକେଶ ଓ ରୁକ୍ମମାଳୀ ନାମରେ ପାଞ୍ଚ ପୁତ୍ର ମଧ୍ୟ ଥିଲେ । ଏମାନଙ୍କ ମଧ୍ୟରେ ରୁକ୍ମୀ ବଡ଼ । ଏ ସମସ୍ତ ଭାଇଙ୍କର ସବା ସାନ ଭଉଣୀ ହେଉଛନ୍ତି ରୁକ୍ମଣୀ ।

ବାଲ୍ୟକାଳରୁ ରୁକ୍ମିଣୀ ଅତ୍ୟନ୍ତ ସୁନ୍ଦରୀ ଥିବାରୁ ତାଙ୍କୁ ଯିଏ ଦେଖୁଥିଲା ସିଏ ମୁଗ୍ଧ ହୋଇ ଯାଉଥିଲା । ସେ ପିତା, ମାତା, ପରିଜନ ପ୍ରତ୍ୟେକଙ୍କର ସୁଖଦାୟିନୀ ରୂପେ ଅନ୍ତଃପୁରରେ ରହି ସରୋବର କୁମୁଦିନୀ ତଥା ସୁନ୍ଦର ଉଦ୍ୟାନର ସୁବର୍ଣ୍ଣଲତା ପରି ଶୋଭା ପାଉଥିଲେ । କ୍ରମେ ସେ ବାଲ୍ୟ, ପୌଗଣ୍ଡ ଓ କୈଶୋରାବସ୍ଥା ଅତିକ୍ରମ କରି ଯୁବାବସ୍ଥାରେ ଉପନୀତ ହେଲେ । ଏଣେ ଭଗବାନ ମଧ୍ୟ ଚିନ୍ତା କରୁଥାଆନ୍ତି, ମୋ ଶକ୍ତିରୂପିଣୀ ଲକ୍ଷ୍ମୀ ମୋ ବିନା ଅତ୍ୟନ୍ତ ଚିନ୍ତିତ ହେଉଥିବେ । ତେଣୁ ତାଙ୍କ ମନରେ ମଧ୍ୟ ବିବାହର ସଂକଳ୍ପ ଜାଗ୍ରତ ହୋଇଥାଏ । ନାରଦ ତ ଭଗବାନଙ୍କର ସଙ୍କଳ୍ପ ରୂପୀ । ତେଣୁ ସେ ଚିନ୍ତା କଲେ—'ଭଗବାନ ଏତେ ବଡ଼ ହୋଇ ଗଲେଣି । ତାଙ୍କୁ ଏକା ଏକା ଭଲ ଲାଗୁ ନ ଥିବ । ଯଦି ତାଙ୍କର ଯୁଗଳ ରୂପ ମୁଁ ଦର୍ଶନ କରିବି, ତେବେ ଅତ୍ୟନ୍ତ ଭାଗ୍ୟବାନ ହେବି । ଯୁଗଳ ଉପାସନା ବିନା ଶକ୍ତି ସମ୍ପୂର୍ଣ୍ଣ ଲାଭ ହୁଏ ନାହିଁ । ଏହା ଚିନ୍ତା କରି ସେ ବିଦର୍ଭାଧିପତି ମହାରାଜ ଭୀଷ୍ମକଙ୍କ ରାଜଧାନୀ କୁଣ୍ଡିନପୁର-ଠାରେ ଯାଇ ପହଞ୍ଚିଲେ । ମହାରାଜ ଭୀଷ୍ମକ ଦେବର୍ଷି ନାରଦଙ୍କୁ ଦେଖି ନିଜ ସିଂହାସନରୁ ସହସା ଉଠି ଦଣ୍ଡାୟମାନ ହେଲେ ଓ ଦେବର୍ଷିଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କଲେ । ଏହାପରେ ତାଙ୍କ ଚରଣ ବନ୍ଦନା ଓ ବିଧି ପୂର୍ବକ ପୂଜା କରି ନିଜର ପୁତ୍ରମାନଙ୍କୁ କହିଲେ, ସମସ୍ତେ ଦେବର୍ଷିଙ୍କୁ ପ୍ରଣାମ କର । ଏ ମଧ୍ୟରେ ଅନ୍ତଃପୁରରୁ ରୁକ୍ମିଣୀଙ୍କୁ ସଙ୍ଗରେ ନେଇ ମହାରାଣୀ ମଧ୍ୟ ସେଠାକୁ ଆସିଯାଇଥିଲେ । ସେ ଦୁହେଁ ମଧ୍ୟ ମୁନିଙ୍କର ଚରଣ ବନ୍ଦନା କଲେ ।''

ମୁନି ଅତ୍ୟନ୍ତ ଗମ୍ଭୀର ଭାବରେ ରୁକ୍ମିଣୀଙ୍କୁ ଦର୍ଶନକରି ଭାବିଲେ—ଏ ହେଉଛନ୍ତି ଜଗଜ୍ଜନନୀ । ଏହି ହିଁ ଭଗବତୀ ଶକ୍ତି ଓ ଜଗତ୍‌ପତିଙ୍କ ସହଧର୍ମିଣୀ । ଏହା ଚିନ୍ତାକରି ସେ ମନେ ମନେ ତାଙ୍କ ଚରଣରେ ପ୍ରଣାମ କଲେ । ବାହାରକୁ ଜାଣି ଜାଣି ସେ ପଚାରିଲେ—''ରାଜନ୍ ! ଇଏ ବୋଧହୁଏ ଆପଣଙ୍କ କନ୍ୟା ?''

ରାଜା କହିଲେ—''ହଁ ଭଗବାନ ! ଏ ଆପଣଙ୍କର ମଧ୍ୟ କନ୍ୟା ।''

ଏହା ଶୁଣି ମୁନି ପଚାରିଲେ—''ଆପଣ ଏହାଙ୍କର ବିବାହ ପ୍ରସ୍ତାବ କେଉଁଠାରେ ସ୍ଥିର କଲେଣି କି ?'' ରାଜା ଚିନ୍ତିତ ହୋଇ କହିଲେ—''କେଉଁଠି ପ୍ରସ୍ତାବ ପକାଇବି ମହାରାଜ ! କୌଣସି ଅନୁରୂପ ବର ଏ ପର୍ଯ୍ୟନ୍ତ ମିଳି ନାହାନ୍ତି ।''

ନାରଦ କହିଲେ—''ରାଜନ୍ ! ତୁମ କନ୍ୟା ପାଇଁ ଉପଯୁକ୍ତ ବରର ଠିକଣା ମୁଁ ପାଇଛି, ଯଦି ତୁମେ ମୋ କଥାରେ ଏକମତ ହେବ, ତାହାହେଲେ ମୁଁ କହିବି ।''

ରାଜା ଆଗ୍ରହ ପ୍ରକାଶ କରି କହିଲେ—''ଭଗବନ୍ ! ଆପଣ ଏପରି କାହିଁକି କହୁଛନ୍ତି ? ଆପଣଙ୍କ ଆଜ୍ଞା ତ ଇନ୍ଦ୍ର ଟାଳିଦେଇ ପାରିବେ ନାହିଁ । ପୁନଶ୍ଚ ଆପଣ

ଯାହା କହିବେ, ତାହା ତ ମୋ କଲ୍ୟାଣ ପାଇଁ କହିବେ । କନ୍ୟାପାଇଁ ମୁଁ ନିରନ୍ତର ଚିନ୍ତିତ ।''

ନାରଦ କହିଲେ -''ରାଜନ୍ ! ତୁମ କନ୍ୟାଯୋଗ୍ୟ ବର ତ ସ୍ୱୟଂ ଭଗବାନ ବାସୁଦେବ । ସେ ଶୋଭାର ଧାମ । ତାଙ୍କର ବର୍ଣ୍ଣ ନବୀନ ଜଳଧର ଭଳି ଶ୍ୟାମଳ । ସେ ପରମରୂପବାନ୍ ଓ ଗୁଣବାନ୍ ଅଟନ୍ତି । ସେହି ଭୁବନମୋହନ ହେଉଛନ୍ତି ଜଗତ୍ପତି । ମୁଁ ତାଙ୍କ ବିଷୟରେ ଅଧିକ ଅବା କଣ କହିବି, ଯେପରି ତୁମର କନ୍ୟା ସ୍ୱୟଂ ଲକ୍ଷ୍ମୀଙ୍କର ଅବତାର, ସେହିପରି ସେ ନାରାୟଣଙ୍କ ଅବତାର । ତୁମ କନ୍ୟା ପାଇଁ ଯୋଗ୍ୟ ବର ହିଁ ସେହି ମଦନମୋହନ ମାଧବ ।''

ମହାରାଜ ଭୀଷ୍ମକ କହିଲେ —''ଭଗବନ ! ଦ୍ୱାରକାନାଥ ଭଗବାନ ବାସୁଦେବଙ୍କର ସୌନ୍ଦର୍ଯ୍ୟର ଖ୍ୟାତି ମୁଁ ମଧ୍ୟ ଶୁଣିଛି । ଋଷିଗଣ ମୋତେ ତାଙ୍କ କଥା ଶୁଣାଇଛନ୍ତି । ସେ ସ୍ୱୟଂ ବିଷ୍ଣୁଙ୍କ ଅବତାର । ସେ କାହିଁକି ମୋ କନ୍ୟାକୁ ଅବା ବିବାହ କରିବାକୁ ରାଜି ହେବେ ?''

ନାରଦ କହିଲେ—''ସେ ଦାୟିତ୍ୱ ମୋତେ ଦିଅନ୍ତୁ । ଭଗବାନଙ୍କୁ ମୁଁ ଏ ପ୍ରସ୍ତାବରେ ରାଜି କରାଇବି ।''

ରାଜା ଆନନ୍ଦ ମନରେ କହିଲେ—''ତେବେ ଆଉ ଏଥିରେ ମୋର କହିବାର କ'ଣ ଅଛି ? ଆପଣ ଏ ପ୍ରସ୍ତାବରେ ତାଙ୍କୁ ରାଜି କରନ୍ତୁ । ମୁଁ ଏଥିପାଇଁ ନିଜକୁ ଅତି ଭାଗ୍ୟବାନ ମନେ କରିବି ।''

ନାରଦ କହିଲେ—''ତେବେ ଠିକ୍ ଅଛି, ମୁଁ ବର୍ତ୍ତମାନ ଦ୍ୱାରକାପୁରୀ ଯାତ୍ରା କରୁଛି । ଭଗବାନଙ୍କର ଅନୁମତି ନେଇ ଫେରି ଆସିବି ।'' ଏହା କହି ନାରଦ ଦ୍ୱାରକାପୁରୀ ଯାତ୍ରା କଲେ ।

ଏଣେ ନିଜ ମାତାଙ୍କ ପଛରେ ବସି ରୁକ୍ମଣୀ ସବୁକଥା ଶୁଣୁଥିଲେ । ସେ ଅନୁଭବ କଲେ, ସତେ ଯେପରି କେହି ଆସି ତାଙ୍କ ଶୂନ୍ୟ ହୃଦୟ ଅଧିକାର କରି ନେଇଛନ୍ତି । ନାରଦଙ୍କଠାରୁ ଶୁଣିଥିବା ଭଗବାନଙ୍କର ରୂପ ତାଙ୍କ ହୃଦୟ ଦେଶରେ ଅଙ୍କି ହୋଇଗଲା । ସେ ଦିବାନିଶି ସେହି ରୂପକୁ ଚିନ୍ତା କରିବାକୁ ଲାଗିଲେ । ତାଙ୍କଠାରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିଦେଲେ । ନାରଦଙ୍କ ସମ୍ମୁଖରେ ରାଜା ଏ ପ୍ରସ୍ତାବକୁ ସ୍ୱୀକାର କରିଥିଲେ ଓ ରାଣୀ ମଧ୍ୟ ତାହା ଅନୁମୋଦନ କରିଥିଲେ । ତେଣୁ ସେ ଦୃଢ଼ ନିଶ୍ଚିତ ହୋଇଥିଲେ ଯେ, ଦ୍ୱାରକାଧୀଶ ଶ୍ୟାମସୁନ୍ଦର ହିଁ ତାଙ୍କର ପାଣିଗ୍ରହଣ କରିବେ । ତାଙ୍କୁ ନିଜର କରିନେବେ । ସେ ମନେ ମନେ ସର୍ବଦା ଶ୍ୟାମସୁନ୍ଦରଙ୍କୁ ଚିନ୍ତା କରିବାକୁ ଲାଗିଲେ ଓ ନାନା ପ୍ରକାର ସୁଖ ସ୍ୱପ୍ନ ଦେଖିବାକୁ ଲାଗିଲେ ।

ନାରଦ ବୀଣା ବଜାଇ ବଜାଇ ହରିଗୁଣ ଗାନ କରି କରି ଦ୍ୱାରକାପୁରୀରେ ଯାଇ ପହଞ୍ଚିଗଲେ । ନାରଦଙ୍କୁ ଦେଖି ଭଗବାନ୍ ସିଂହାସନରୁ ଉଠିପଡ଼ିଲେ ଓ ବିଧିବତ୍ ତାଙ୍କର ପୂଜାକରି କହିଲେ—"କହନ୍ତୁ ଦେବର୍ଷେ ! କେଉଁଠାରୁ ବର୍ତ୍ତମାନ ଆପଣଙ୍କର ଆଗମନ ହେଲା ?"

ନାରଦ କହିଲେ—"କେଉଁଠାରୁ ଆସିବି ଆଉ କ'ଣ ବାସୁଦେବ ! ଆପଣ ଏକା ରହୁଥିବାରୁ ମୋ ଚିତ୍ତ କଦାପି ଶାନ୍ତ ହେଲା ନାହିଁ । କାରଣ ମୁଁ ଯୁଗଲ ମୂର୍ତ୍ତିର ଉପାସକ । ତେଣୁ ଲକ୍ଷ୍ମୀଙ୍କ ସହିତ ନାରାୟଣଙ୍କୁ ଦର୍ଶନ କରିବା ମୋର ଇଚ୍ଛା । ସେହି କାରଣରୁ ଆପଣଙ୍କ ବିବାହ ପ୍ରସ୍ତାବ ଠିକ୍‌ଠାକ୍ କରି ଏଠାକୁ ଆସି ଅଛି ।"

ଭଗବାନ୍ ଆଶ୍ଚର୍ଯ୍ୟ ହୋଇ କହିଲେ—"ଦେବର୍ଷେ ! ଆପଣତ ଭଲ କଥା କହୁଛନ୍ତି ? ଏପରି ଏ ଦୁନିଆଁରେ କେଉଁ ଅନ୍ଧ ଅଛି, ଯେ କି ମୁଁ ବିବାହ କରିବା ପାଇଁ ମୋତେ କନ୍ୟା ପ୍ରଦାନ କରିବ ? ଆମେ ତ ଦେଶ ଛାଡ଼ି ଭୟରେ ଆସି ଏ ସମୁଦ୍ର-ପନ୍ତାରେ ଆସି ପଡ଼ିଛୁ । ଆମର ହାରି ଗୁହାରି ଶୁଣିବାକୁ ଏଠି କେହି ନାହିଁ । କିଏ ମୋତେ କାହିଁକିବା କନ୍ୟା ଦେବ ? ବଳଦେବଙ୍କୁ ତ କୌଣସି ପ୍ରକାର କେଉଁ ସତ୍ୟ-ଯୁଗର ଏକ ଡେଙ୍ଗେଇ ବୋହୂ ମିଳିଗଲା । ସେ ତାଙ୍କୁ ହଳ ମୂଷଳରେ ଆଘାତ ଦେଇ ଠିକ୍‌ଠାକ୍ କରିନେଲେ । ଏବେ ମୋତେ କିଏ କାହିଁକି ବିବାହ କରିବ ?"

ନାରଦ କହିଲେ—"ଅଚ୍ଛା ମହାରାଜ ! ଆପଣ ଅନ୍ୟ କାହା ଆଗରେ ଏପରି କଥା କହି ପାରନ୍ତି;କିନ୍ତୁ ମୁଁ ତ ଆପଣଙ୍କର ସବୁ ମହିମା ଜାଣେ । ମୁଁ ମଧ୍ୟ ଆପଣଙ୍କ ପାଇଁ ଉପଯୁକ୍ତ ସହଧର୍ମିଣୀ ଠିକ୍‌କରି ଆସିଛି । ସେ ଅତ୍ୟନ୍ତ ସୁନ୍ଦରୀ ଓ ସୁକୁମାରୀ ରାଜକୁମାରୀ । ସେ ଆପଣଙ୍କ ଅନୁକୂଳ ଓ ଆପଣ ମଧ୍ୟ ତାଙ୍କ ଅନୁକୂଳ । ସେ ଯଦି ସ୍ୱର୍ଣ୍ଣର ମୁଦ୍ରିକା, ତେବେ ଆପଣ ନୀଳା-ରତ୍ନ । ସେ ଚନ୍ଦ୍ରିକା ଓ ଆପଣ ଚନ୍ଦ୍ର, ସେ ପ୍ରଭା ଓ ଆପଣ ସୂର୍ଯ୍ୟ ଅଟନ୍ତି । ମୁଁ ଆଉ ଅଧିକ କଣ କହିବି ? ସେ ବାସ୍ତବରେ ଆପଣଙ୍କ ଲକ୍ଷ୍ମୀ । କେବଳ ଆପଣଙ୍କ ସ୍ୱୀକୃତି ମୋର ଆବଶ୍ୟକ ।"

ଭଗବାନ୍ ପଚାରିଲେ—"ଏହା ସତ ହୋଇ ପାରେ, ତେବେ ତାଙ୍କ ନାମ, ଗୋତ୍ର ଓ ଠିକଣା କଣ କହନ୍ତୁ ।"

ନାରଦ କହିଲେ—"ବିଦର୍ଭାଧିପ ମହାରାଜ ଭୀଷ୍ମକଙ୍କର ସେ ଏକମାତ୍ର କନ୍ୟା । ତାଙ୍କ ନାମ ରୁକ୍ମିଣୀ । ସେ ତାଙ୍କ ପିତାଙ୍କର ଏକମାତ୍ର କନ୍ୟା ଓ ତାଙ୍କର ପାଞ୍ଚ ଭାଇ । ତାଙ୍କ ରୂପ ବିଷୟରେ ତ କହିବା ବାହୁଲ୍ୟ । ଆପଣ ଏତିକି ଜାଣି ଥାଆନ୍ତୁ ଯେ, ସେ ସାକ୍ଷାତ୍ ମୂର୍ତ୍ତିମତୀ ସୁନ୍ଦରତା । ତାଙ୍କ ପିତାଙ୍କ ସହିତ ମୁଁ କଥାବାର୍ତ୍ତା ପକ୍କା କରି ଆସିଛି ।"

ଭଗବାନ୍ ନିଜର ପ୍ରସନ୍ନତାକୁ ମନ ଭିତରେ ଚପାଇ ରଖି ଉପରକୁ କିଛି ନ ଜାଣିଲାପରି କହିଲେ—"ଆପଣ ଯେତେବେଳେ କଥା ପକ୍କା କରି ଆସିଛନ୍ତି, ସେତେବେଳେ ମୁଁ ଆପଣଙ୍କ କଥାକୁ କିପରି ଅବା ଟାଳି ପାରିବି ? ସେତେବେଳେ ଆପଣ ତାଙ୍କର ରୂପ, ଶୀଳ, ବୁଦ୍ଧି, ଉଦାରତା, ସୁଲକ୍ଷଣ ଆଦି ଗୁଣଗୁଡ଼ିକ ଅତି ସୁନ୍ଦର ବୋଲି କହୁଛନ୍ତି, ସେଥିରେ ମୋର ଆଉ ଆପତ୍ତି କରିବାର କଣ ଅଛି ? ମୁଁ ଆପଣଙ୍କୁ ପ୍ରତିଜ୍ଞା କରି କହୁଛି ଯେ, ମୁଁ ଯଦି ବିବାହ କରେ ତେବେ ରୁକ୍ମିଣୀଙ୍କୁ ହିଁ ବିବାହ କରିବି ।"

ଏ କଥା ଶୁଣି ନାରଦ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ବୁଝିଗଲେ ଯେ ଏବେ ରୁକ୍ମିଣୀଙ୍କ ବିବାହ ବିଷୟରେ ଆଉ କିଛି ବାଧାବିଘ୍ନ ନାହିଁ । ଭଗବାନଙ୍କ ସହିତ ତାଙ୍କର ହିଁ ବିବାହ ହେବ । କାରଣ ଭଗବାନ ସତ୍ୟ ପ୍ରତିଜ୍ଞ । ସେ ଯାହା ପ୍ରତିଜ୍ଞା କରନ୍ତି, ତାହା ପୂରଣ କରନ୍ତି । ଏହା ଚିନ୍ତାକରି ସେ ପୁନଶ୍ଚ ଭୀଷ୍ମକଙ୍କ ନିକଟକୁ ଧାଇଁଲେ ଓ ତାଙ୍କୁ ଯାଇ କହିଲେ—"ରାଜନ୍ ! ଆପଣଙ୍କ ମନୋରଥ ପୂର୍ଣ୍ଣ ହେଲା; ଭଗବାନ ଆପଣଙ୍କ କନ୍ୟାଙ୍କ ସମ୍ବନ୍ଧରେ ସହର୍ଷ ସ୍ୱୀକାର କରି ନେଲେ ।"

ଏହା ଶୁଣି ରାଜା ଅତ୍ୟନ୍ତ ପ୍ରସନ୍ନ ହେଲେ । ଏହାପରେ ଯେଉଁ ଅତିଥି ବ୍ରାହ୍ମଣମାନେ ବାହାରୁ ଆସିଲେ, ରୁକ୍ମିଣୀ ତାଙ୍କୁ ଭଗବାନଙ୍କ ବିଷୟରେ କିଛି ନା କିଛି ପ୍ରଶ୍ନ କରିବାକୁ ଲାଗିଲେ । ସେମାନେ ତାଙ୍କୁ ଭଗବାନଙ୍କର ରୂପ, ବଳବୀର୍ଯ୍ୟ, ଗୁଣ ଓ ମହାନ ବୈଭବର ପ୍ରଶଂସା ଶୁଣାଇଲେ । ଭଗବାନଙ୍କର ଗୁଣାନୁବାଦ ଶୁଣି ଶୁଣି ତାଙ୍କର ଅନ୍ତଃକରଣ ପ୍ରସନ୍ନ ହୋଇଉଠିଲା ଓ ତାଙ୍କ କଥା ସର୍ବଦା ଶୁଣିବାପାଇଁ ମନ ବ୍ୟଗ୍ର ହେଲା ।

ରାଜାଙ୍କର ଯେତେ ସୁହୃତ୍, ବନ୍ଧୁବାନ୍ଧବ ଆଦି ଥିଲେ, ସେ ସମସ୍ତଙ୍କର ଅଚଳାଚଳ ସମ୍ମତି ଥିଲା । ମହାରାଣୀ ମଧ୍ୟ ଚାହୁଁଥିଲେ ଯେ, ଭଗବାନ କିପରି ମୋ କନ୍ୟାର ପତି ହୁଅନ୍ତି । କିନ୍ତୁ ମହାରାଜାଙ୍କର ଜ୍ୟେଷ୍ଠପୁତ୍ର ରୁକ୍ମୀ ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରତି ମନମଧ୍ୟରେ ଦ୍ୱେଷ ରଖିଥିଲେ । ରାଜା ଏକଥା ଜାଣି ନଥିଲେ । ଦିନେ ରାଜା ତାଙ୍କର ସେହି ଜ୍ୟେଷ୍ଠପୁତ୍ରଙ୍କୁ ପାଖକୁ ଡାକି କହିଲେ—"ରୁକ୍ମି ! ଦେଖ, ରୁକ୍ମିଣୀ ଏବେ ବିବାହଯୋଗ୍ୟା ହୋଇ ଯାଇଛି, ତାହାର ବିବାହ ଶୀଘ୍ର କରାଇବାକୁ ହେବ । ମୁଁ ସର୍ବଦା ଏଥିପାଇଁ ଚିନ୍ତିତ । କୌଣସିଠାରେ ତାହାର ବିବାହ ସମ୍ବନ୍ଧ ସ୍ଥିର କରିନେବା ଉଚିତ୍ ।"

ରୁକ୍ମୀ ପଚାରିଲେ—"ହେ ପିତୃଦେବ ! ଆପଣ ଏ ସମ୍ବନ୍ଧରେ କୌଣସି ପ୍ରସ୍ତାବ ପକାଇଛନ୍ତି କି ?"

ରାଜା କହିଲେ—"ହଁ ! ମୁଁ ତ କୌଣସି ଠାରେ ପ୍ରସ୍ତାବ ପକାଇ ନାହିଁ, କିନ୍ତୁ ନାରଦଙ୍କଠାରୁ ମୁଁ ଭଗବାନ୍ ବାସୁଦେବଙ୍କର ପ୍ରଶଂସା ଶୁଣିଅଛି । ମୋର ଇଚ୍ଛା ତାଙ୍କ ସହିତ ରୁକ୍ମିଣୀର ବିବାହ କରିଦେଲେ ଭଲହୁଅନ୍ତା । ତୋର ଏଥିରେ ମତ କଣ ? "

ଏକଥା ଶୁଣିବାମାତ୍ରେ ରୁକ୍ମୀଙ୍କର ଅନ୍ତଃକରଣ କ୍ରୋଧରେ ଜଳି ଉଠିଲା । ସେ ଭାବିଲେ 'ଗୋଟାଏ ଗଉଡ଼ ଟୋକାକୁ ମୁଁ ଭଣୋଇ ବୋଲି କହିବ ?' ସେ ବାହାରକୁ ନମ୍ରତା ଦେଖାଇ କହିଲେ—"ପିତୃଦେବ ! ଆପଣ ତ ଗୁରୁଜନ, ମୁଁ ଆପଣଙ୍କୁ ଏ ସମ୍ବନ୍ଧରେ କ'ଣ ବା କହିବି, କିନ୍ତୁ ଆପଣଙ୍କର ତ ନିଜର ପଦମର୍ଯ୍ୟାଦା ରଖି ଯାହା କିଛି କରିବାକୁ ପଡ଼ିବ । ଆମେ ହେଉଛେ ମୂର୍ଦ୍ଧାଭିଷିକ୍ତ ରାଜା । ରାଜାମାନଙ୍କ ସହିତ ସମ୍ବନ୍ଧ କରିବା ଆମର କର୍ତ୍ତବ୍ୟ, କୃଷ୍ଣ ତ କୌଣସି ରାଜା ନୁହନ୍ତି । ଯଦୁବଂଶୀମାନଙ୍କୁ ମହାରାଜ ଯଯାତିଙ୍କର ଶାପ ଅଛି, ସେମାନଙ୍କର ରାଜା ହେବାର କୌଣସି ଅଧିକାର ନାହିଁ । ସେମାନେ କ୍ଷତ୍ରିୟ ପଦରୁ ବହିଷ୍କୃତ ହୋଇଛନ୍ତି ବୋଲି କୁହାଯାଏ । ପୁନଶ୍ଚ କୃଷ୍ଣଙ୍କର ତ ଜାତିର କୌଣସି ଠିକଣା ନାହିଁ । କେହି ତାଙ୍କୁ ନନ୍ଦଗଉଡ଼ ପୁଅ କହନ୍ତି ତ, କେହି ବାସୁଦେବ ପୁଅ କହନ୍ତି । ଏଗାରବର୍ଷ ପର୍ଯ୍ୟନ୍ତ ତ ସେ ଗଉଡ଼ ଘରେ ରହି ଗୋରୁ ଜଗୁଥିଲେ । ଗଉଡ଼ ଜାତି ସହିତ ମୋ ଭଉଣୀର ସମ୍ବନ୍ଧ ମୁଁ କଦାପି ହେବାକୁ ଦେବି ନାହିଁ ।"

ରାଜା ସରଳତାର ସହିତ କହିଲେ "ବାପା ! ସେ ହେଉଛନ୍ତି ସର୍ବଜ୍ଞ ଓ ଭଗବାନ । ମୁନି-ଋଷିଗଣ ତାଙ୍କୁ ଅବତାର ବୋଲି କହୁଛନ୍ତି । ତାଙ୍କ ସମ୍ବନ୍ଧରେ ତୁ ଏପରି କଥା କହିବା ଉଚିତ୍ ନୁହେଁ ।"

ରୁକ୍ମୀ କ୍ରୁଦ୍ଧ ହୋଇ କହିଲେ—"ହେ ପିତୃଦେବ ! ଆପଣ ତାଙ୍କୁ ଅବତାର ସ୍ୱୀକାର କରୁଥାଆନ୍ତୁ । ମୁଁ ତାହା ମାନିବି ନାହିଁ । ଅବତାର ତ ଏହିପରି ଲୋକଙ୍କୁ କୁହନ୍ତି, ଯେ କି ଜରାସନ୍ଧ ଭୟରେ ନିଜର ପୈତୃକ ନଗରକୁ ତ୍ୟାଗକରି ଏଠାରେ ସମୁଦ୍ର ଭିତରକୁ ପଳାଇ ଆସିଛନ୍ତି ? ଏପରି ପଳାୟନପନ୍ଥି ଭୀରୁ କାପୁରୁଷଙ୍କୁ ଆପଣ ଅବତାର କହୁଛନ୍ତି ? ମୁଁ ଆପଣଙ୍କୁ ଖୋଲି ଖୋଲି କହି ଦେଉଛି, ଯଦି ଆପଣ ରୁକ୍ମିଣୀକୁ ତାଙ୍କ ସହିତ ବିବାହ ଦିଅନ୍ତି, ତାହାହେଲେ ମୁଁ ବିଷ ଖାଇ ଆତ୍ମହତ୍ୟା କରିବି । ମୁଁ କଦାପି ସେ ଗଉଡ଼କୁ ମୋ ଭଣୋଇ ହେବାକୁ ଦେବି ନାହିଁ ।"

ରାଜା ଚିନ୍ତା କଲେ —'ଏବେ ତ ଘରେ କଳହ ସୃଷ୍ଟି ହେବାକୁ ଏ ବସିଲାଣି । ଏ ମୋର ବଡ଼ ପୁଅ ଓ ଯୁବରାଜ । ତା କଥା ନ ମାନିଲେ ଶତ୍ରୁତା ବଢ଼ିବ ।' ଏହିପରି ଚିନ୍ତାକରି ସେ କହିଲେ, "ତାହାହେଲେ ତୁ ତ ଏବେ କର୍ତ୍ତବ୍ୟ, ଅକର୍ତ୍ତବ୍ୟ ହୃଦୟଙ୍ଗମ କଲୁଣି । ଏ ଦାୟିତ୍ୱ ସବୁ ତୋର, ମୁଁ ତ ପାଚିଲା ଆମ୍ବ ଭଳି ହେଲଣି, କେତେବେଳେ ଝଡ଼ିପଡ଼ିବି ତାହା କିଛି ହେଲେ ନାହିଁ । ଯଦି କୌଣସି ମୂର୍ଦ୍ଧାଭିଷିକ୍ତ ରାଜକୁମାରଙ୍କ ସହିତ ରୁକ୍ମିଣୀଙ୍କୁ ବିବାହ ଦେବାକୁ ତୁ ସ୍ଥିର କରିଥାଉ, ତେବେ ତାହା ବୁଝି ସ୍ଥିର

କର । ମୁଁ ଶ୍ରୀକୃଷ୍ଣଙ୍କ ସହିତ ତାହାର ବିବାହ ପ୍ରସ୍ତାବରେ ଆଉ ଆଗେଇବି ନାହିଁ । କେବଳ ମୁଁ ମନରେ ଭାବୁଥିଲି ଯେ, ଏହା ହୋଇଥିଲେ ଭଲ ହୋଇଥାଆନ୍ତା । ତୋ'ର ଯଦି ଇଚ୍ଛା ନୁହେଁ, ତାହାହେଲେ ସେ କଥା ଛାଡ଼ । ତୁ ଯେଉଁଠି ସ୍ଥିର କରିଛୁ ସେଠି କଥା ପକ୍କା କରିଦେ ।''

ରୁକ୍ମୀ କହିଲେ—''ହେ ପିତୃଦେବ ! ମୋର ଇଚ୍ଛା, ଚେଦି ରାଜ୍ୟରେ ମହାରାଜା ଦମଘୋଷଙ୍କ ପୁତ୍ର କୁମାର ଶିଶୁପାଳ ରୁକ୍ମଣୀ ପାଇଁ ଉପଯୁକ୍ତ ପାତ୍ର । ସେ ମଧ୍ୟ ମୂର୍ଦ୍ଧାଭିଷିକ୍ତ ମହାରାଜା ଓ ସମ୍ରାଟ ଜରାସନ୍ଧଙ୍କ ମିତ୍ର । ପୃଥିବୀରେ ତାଙ୍କ ସଦୃଶ ବଳବାନ ଅନ୍ୟ କୌଣସି ରାଜା ନାହାନ୍ତି । ଏ ସମ୍ବନ୍ଧ ସର୍ବଥା ଆମର ଅନୁରୂପ ସମ୍ବନ୍ଧ ହେବ ।'' (୧)

ମହାରାଜ ଭୀଷ୍ମକ କହିଲେ—''ବାବୁ ! ମୁଁ ତ ଥରେ କହି ଦେଲି, ତୋର ଯାହା ଇଚ୍ଛା, ତୁ ତାହା କର । ମୁଁ ତୋର କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବି ନାହିଁ । ଯା ତୁ ଶିଶୁପାଳ ସହିତ ସମ୍ବନ୍ଧ ପକ୍କା କରିନେ ।''

ସୂତ କହିଲେ—''ମୁନିଗଣ ! ଏହା ଶୁଣି ରୁକ୍ମୀ ଚେଦି ଯାଇ କଲେ ଓ ଶିଶୁପାଳଙ୍କ ସହିତ ରୁକ୍ମଣୀଙ୍କର ବିବାହ ପ୍ରସ୍ତାବ ପକ୍କା କରି ଆସିଲେ । ଶୁଭଲଗ୍ନ ଦେଖି ବିବାହ ଦିନ ତିଥି ନକ୍ଷତ୍ର ସ୍ଥିର ହୋଇଗଲା । ଏ ଖବର ଯେତେବେଳେ ରୁକ୍ମଣୀଙ୍କ କର୍ଣ୍ଣଗୋଚର ହେଲା, ତାଙ୍କ ଦୁଃଖର ସୀମା ରହିଲା ନାହିଁ । ସେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ଓ କିଂକର୍ତ୍ତବ୍ୟ ବିମୂଢ଼ା ହୋଇ ନିଜର କର୍ତ୍ତବ୍ୟ କ'ଣ ତାହା ସ୍ଥିର କରି ପାରିଲେ ନାହିଁ ।''

## ଛପ୍ପୟ

ନାରଦାଦି ମୁନି ଆଇ କୃଷ୍ଣକୀ କୀର୍ତ୍ତି ବଢ଼ାଇ ।
ସୁନତ ରୁକ୍ମିଣୀ ହୃଦୟ ମାଁହି ହରି ମୂର୍ତ୍ତି ସମାଇ ।।
ଇତି ହରି ନିଶ୍ଚୟ କରେଂୟା ରୁକ୍ମିନୀକୁଁ ଅପନାଉଁ ।
କରିକେ ବିବଧ ଉପାୟ ପ୍ରିୟାକୁଁ ଘର ଲଇଆଉଁ ।।
ମାତୁ ପିତା ସହମତ ସବହିଁ ହରି ବରତେଁ କଗ ହୋହି ଯଶ ।
ରୁକ୍ମୀ ନେ ଶିଶୁପାଲ ସଁଗ, କରୀ ସଗାଇ ଦ୍ୱେଷ ବଶ ।।

—*

(୧) ଭୀଷ୍ମକ କୃଷ୍ଣଙ୍କୁ ବରିଲା । ତା ଶୁଣି ରୁକ୍ମୀ କୋପ କଲା ।।
ଅନେକ ନିନ୍ଦାବାକ୍ୟ କରି । ଶିଶୁପାଳକୁ ଗଲା ବରି ।।
(ଭାଗବତ : ଜଗନ୍ନାଥ ଦାସ : ସ୍କ. ୧୦. ଅ. ୫୬)

# ଶ୍ରୀ ରୁକ୍ମିଣୀଙ୍କର ଭଗବାନଙ୍କୁ ସଂଦେଶ

ତଦବେତ୍ୟା ସିତାପାଙ୍ଗୀ ବୈଦର୍ଭୀ ଦୁର୍ମନା ଭୃଶମ୍ ।
ବିଚିନ୍ତ୍ୟାପ୍ତଂ ଦ୍ୱିଜଂ କଞ୍ଚିତ୍ କୃଷ୍ଣାୟ ପ୍ରାହିଣୋଦ ଦ୍ରୁତମ୍ ॥ *

( ଶ୍ରୀ: ଭା: ୧୦ମ ସ୍କନ୍ଧ, ୫୨ ଅ: ୨୭ ଶ୍ଳୋକ )

## ଛପ୍ପୟ

ସୁନତ ରୁକ୍ମିନୀ ଭଇ ଦୁଖିତ ଅତିଶୟ ଘବରାଇ ।
ବୁଲବାୟେ ବର ବପ୍ର ବୃଦ୍ଧ ନିଜ ବିପତ ସୁନାଇ ॥
ପ୍ରେମ ପତ୍ରିକା ଲଖୀ ବପ୍ରକେ କରମହଁ ଦୀହ୍ନୀଂ ।
ପରି ଚରନନିମେଂ ବନୟ ପ୍ରେମତେଂ ବହୁ ବଧି କୀହ୍ନୀଂ ॥
ଚଲେ ଦ୍ୱାରିକା ଦ୍ୱିଜ ତୁରନ୍ତ, ପ୍ରଭୁ ପଥକୋ ସବ ଶ୍ରମ ହରେ୍ୟା ।
ନିରଖି ବପ୍ରକୂ ମୁଦିତ ମନ, ହ୍ୱୈ ହରିନେ ସ୍ୱାଗତ କରେ୍ୟା ॥

ଜୀବ ଯେତେବେଳେ ସୁରଅନ୍ତ୍ର ନୈରାଶ ହୋଇ ପଡ଼େ, ଯେତେବେଳେ ସେହି ନୈରାଶାରେ ତାକୁ ଏକ ଅନ୍ଧାରଲୋକ ଦେଖାଯାଏ । ମୁଁ କାହିଁକି ହରିଙ୍କ ଶରଣ ନ ନେବି ? ଯିଏ ବିପଦରେ ଯାହା ଅସମ୍ଭବ, ତାହା କଦାପି ସମ୍ଭବ ହୋଇ ପାରିବ ନାହିଁ ବୋଲି ଭାବି ବିଚଳିତ ହୋଇ ପଡ଼େ, ସେ ବିପଦର ପାଶରେ ଆବଦ୍ଧ ହୁଏ । ଯିଏ ଭଗବାନଙ୍କ ପକ୍ଷେ କିଛି ଅସମ୍ଭବ ନୁହେଁ, ସବୁ ସମ୍ଭବ ବୋଲି ବିଶ୍ୱାସ କରେ, ସେ ଭଗବାନଙ୍କ ଶରଣ ନେବାମାତ୍ରେ ସମସ୍ତ ଆପତ୍ତି ବିପତ୍ତିରୁ ଉଦ୍ଧାର ପାଏ । ବିପଦ କାଳରେ ଭଗବାନଙ୍କୁ ସ୍ମରଣ କଲେ ସେ ତାହା ଶୁଣନ୍ତି ଓ ବିପଦରୁ ଉଦ୍ଧାର

---

* ଶିଶୁପାଳକୁ ଦେବା ଶୁଣି । ଚକିତେ ଭାଳଇ ରୁକ୍ମିଣୀ ॥
ଏକାନ୍ତମଧ୍ୟେ ବସିଣ । ବୃଦ୍ଧବ୍ରାହ୍ମଣ ହକାରିଣ ॥
ବୋଲଇ ଶୁଣ ବିପ୍ରମଣି । ଦ୍ୱାରକା ଯାଅ ଏହିକ୍ଷଣି ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ, ୧୦ ଅ, ୫୨·)

କରନ୍ତି । ଶ୍ୟାମସୁନ୍ଦର ହେଉଛନ୍ତି ପ୍ରତ୍ୟେକ ପ୍ରାଣୀଙ୍କର ସୁହୃଦ୍ । ସେ ନିଜ ଭକ୍ତପାଇଁ ଅସମ୍ଭବକୁ ସମ୍ଭବ କରି ପାରନ୍ତି । ଭକ୍ତର ବିନମ୍ରଭାବ ଯୋଗୁଁ ସେ ସବୁ କିଛି କରିବାକୁ ଉଦ୍ୟତ ହୁଅନ୍ତି ।

ସୂତ କହିଲେ - "ମୁନିଗଣ ! ଭଗବତୀ ରୁକ୍ମିଣୀ ଯେତେବେଳେ ସଖୀମାନଙ୍କ ଠାରୁ ଶୁଣିଲେ ଯେ ତାଙ୍କର ବିବାହ ଚେଦିରାଜ ଶିଶୁପାଳଙ୍କ ସହିତ ହେବାକୁ ସ୍ଥିର ହୋଇ ସାରିଲାଣି, ସେତେବେଳେ ତାଙ୍କ ଦୁଃଖର ସୀମା ରହିଲା ନାହିଁ । ସେ ମନ ମଧ୍ୟରେ ଅତ୍ୟନ୍ତ ଦୁଃଖ ଅନୁଭବ କଲେ । ଏହି ଦୁଇଟିରି ଦିନ ମଧ୍ୟରେ ଶିଶୁପାଳ ବରଯାତ୍ରୀଙ୍କୁ ସଙ୍ଗରେ ନେଇ କୁଣ୍ଡିନପୁର ଆସିଯିବେ । ମୁଁ ତ ଶ୍ୟାମସୁନ୍ଦରଙ୍କୁ ମୋ ହୃଦୟରେ ସ୍ଥାନ ଦେଇ ସାରିଛି, ମୋ ଅନ୍ତଃକରଣରେ ତ ତାଙ୍କର ମନମୋହିନୀ ମୂର୍ତ୍ତି ବସାବାନ୍ଧି ସାରିଛି । ମୁଁ ତ ମୋର ତନ-ମନ ସବୁ କିଛି ମନମୋହନଙ୍କୁ ସମର୍ପିତ କରି ସାରିଛି । ଏବେ ସେ ପର ପୁରୁଷ ଶିଶୁପାଳ କିପରି ମୋତେ ସ୍ପର୍ଶ କରିବ ? ମୁଁ ଏବେ କରିବି କ'ଣ ? କୌଣସି ନଦୀ କିମ୍ବା କୂପରେ ପଡ଼ି ମରିବି ଅଥବା ବିଷ ଖାଇ କିମ୍ବା ଗଳାରେ ଫାଶ ଦେଇ ମରିବା ବ୍ୟତୀତ ମୋର ଆଉ ଅନ୍ୟ ଉପାୟ ନାହିଁ । ସେତେବେଳେ ମୋର ଶବକୁ ଯେ କେହି ସ୍ପର୍ଶ କରୁ ଥାଆନ୍ତୁ ।

ଏହି ପ୍ରକାର ଅତ୍ୟନ୍ତ ଦୁଃଖରେ ମ୍ରିୟମାଣ ହୋଇ ଭଗବତୀ ରୁକ୍ମିଣୀ ଚିନ୍ତା କରିବାକୁ ଲାଗିଲେ । ଚିନ୍ତା କରି ସେ ସ୍ଥିର କଲେ—"ମୁଁ ଏବେ ଆତ୍ମହତ୍ୟା କରି କିଛି ଲାଭ ନାହିଁ, ଶ୍ୟାମସୁନ୍ଦରଙ୍କ ନିକଟରେ ଏବେ ମୋର ପ୍ରାର୍ଥନା ଜଣାଇବି, ସେ ସର୍ବଜ୍ଞ ସର୍ବସମର୍ଥ । ସେ ଯଦି ଚାହିଁବେ ତାହାହେଲେ ମୋତେ ଉଦ୍ଧାର କରି ପାରିବେ । ଯଦି ପାଣିଗ୍ରହଣ ପୂର୍ବରୁ ମୋର ପ୍ରାଣଧନ ଆସିଯାଆନ୍ତି, ଓ କୌଣସି ଉପାୟରେ ମୋତେ ଅପହରି ନିଅନ୍ତି, ତାହାହେଲେ ଉତ୍ତମ । ତାହା ନ ହେଲେ ମୁଁ ଯେ କୌଣସି ପ୍ରକାରେ ନିଜ ପ୍ରାଣ ପରିତ୍ୟାଗ କରିଦେବି । ଜୀବିତାବସ୍ଥାରେ ମୋ ନିଜ କରକୁ ଅନ୍ୟ କାହାରି କରରେ ସ୍ପର୍ଶ କରାଇ ଦେବିନାହିଁ ।" ଏହା ଚିନ୍ତାକରି ସେ ତାଙ୍କର ଜଣେ ଅତିବିଶ୍ୱାସୀ ବୃଦ୍ଧ ବ୍ରାହ୍ମଣଙ୍କୁ ଡକାଇଲେ । ବ୍ରାହ୍ମଣଙ୍କୁ ତ କୌଣସିଠାରେ କେହି ଅଟକାଇ ରଖନ୍ତି ନାହିଁ । ତାଙ୍କର ସର୍ବତ୍ର ଅପ୍ରତ୍ୟାହତ ଗତି ଥିଲା । ବ୍ରାହ୍ମଣ ଦେବ ରାଜକୁମାରୀଙ୍କ ଡାକରା ଶୁଣି ବୃଦ୍ଧା ଦାସୀ ସହିତ ଅନ୍ତଃପୁରକୁ ଗଲେ । ରାଜକୁମାରୀ ରୁକ୍ମିଣୀ ଦେବୀ ଏକାନ୍ତରେ ବୃଦ୍ଧ ବ୍ରାହ୍ମଣଙ୍କର ପୂଜା କଲେ ଓ ନିଜର ନେତ୍ର ଜଳରେ ତାଙ୍କ ଚରଣ ପ୍ରକ୍ଷାଳନ କରିବାକୁ ଲାଗିଲେ ।

ବୃଦ୍ଧ ବ୍ରାହ୍ମଣ ପ୍ରେମ ଭାବରେ ତାଙ୍କୁ କହିଲେ—"ମା ! ତୁ କାହିଁକି ଦୁଃଖ କରୁଛୁ ? ତୋର କି ବିପତ୍ତି ପଡ଼ିଛି ? ତୁ ତୋର ଏତେ ଅଧୈର୍ଯ୍ୟ ହୋଇ କାନ୍ଦିବାର କାରଣ ମୋତେ କହ ।"

ରୁକ୍ମିଣୀ କହିଲେ—"ଦେବ ! ମୁଁ ଦୁଃଖ ସାଗରରେ ବୁଡ଼ିରହିଛି । ସବୁ ଦିଗରୁ ଏବେ ନିରାଶ ହୋଇ ପଡ଼ିଛି । ଆପଣ କେବଳ ଏ ଦୁଃସମୟରେ ମୋର ଭରସା । ଆପଣ ଯଦି ମୋତେ ସାହାଯ୍ୟ ନ କରିବେ, ତାହାହେଲେ ମୁଁ ନିଶ୍ଚୟ ଆତ୍ମହତ୍ୟା କରିବି ।"

ବୃଦ୍ଧ ବ୍ରାହ୍ମଣ କହିଲେ "ମା ! ତୁ ତୋ ଦୁଃଖର କାରଣ ପ୍ରଥମେ ମୋତେ କହ । ମୁଁ ପ୍ରତିଜ୍ଞା କରି କହୁଛି, ମୋ ପ୍ରାଣପଣେ ମୁଁ ତୋତେ ସାହାଯ୍ୟ କରିବି । ମୋ ଦ୍ୱାରା ଯାହା ହୋଇ ପାରିବ, ତାହା ସମ୍ପାଦନ କରିବାରେ ଟଳେହେଲେ ପଶ୍ଚାତ୍‌ପଦ ହେବନାହିଁ ।

ରୁକ୍ମିଣୀ କହିଲେ—"ହେ ପିତୃତୁଲ୍ୟ ଦେବ ! ମୋତେ କହିବାକୁ ଲଜ୍ଜାବୋଧ ହେଉଛି, କିନ୍ତୁ ନ କହି ରହିପାରୁ ନାହିଁ । ମୁଁ ମୋ ହୃଦୟରେ ଦ୍ୱାରକାନାଥଙ୍କୁ ସ୍ଥାନ ଦେଇଛି, କିନ୍ତୁ ମୋର ମାତା ପିତା ମୋର ମନକଥା ନ ବୁଝି ମୋର ବିବାହ ଚେଦିରାଜଙ୍କ ସହିତ କରିବା ପାଇଁ ସମସ୍ତ ଆୟୋଜନ କରି ସାରିଲେଣି । ଆପଣ କୃପାକରି ମୋର ଏହି ପତ୍ରକୁ ଦ୍ୱାରକାନାଥ ଶ୍ରୀକୃଷ୍ଣଙ୍କ ଚରଣ କମଳରେ ପହଞ୍ଚାଇ ଦିଅନ୍ତୁ । ତାଙ୍କର ଯାହା କର୍ତ୍ତବ୍ୟ ସେ ତେଣିକି କରନ୍ତୁ ବା ନ କରନ୍ତୁ ମୋର ଏଥିରେ କିଛି କହିବାର ନାହିଁ । ସେ ଯଦିଚ ସର୍ବଜ୍ଞ, ସବୁ କିଛି ଜାଣନ୍ତି, ତଥାପି ଭକ୍ତର କର୍ତ୍ତବ୍ୟ ନିଜର ପ୍ରଭୁଙ୍କ ଆଗରେ ନିଜର ଦୁଃଖ ଜଣାଇବା ଓ ତାଙ୍କୁ ବିନୟ ସହକାରେ ପ୍ରତିକାର ପାଇଁ ପ୍ରାର୍ଥନା କରିବା ।"

ବ୍ରାହ୍ମଣ ଚକିତ ହୋଇ କହିଲେ "ମା ! ଏହାତ ଅତି କଠିନ ବ୍ୟାପାର । ବିବାହ ସମୟ ତ ଆଉ ଦୁଇ ଗୋଟିଦିନ ରହିଲା, ମୁଁ ଏକେତ ବୃଦ୍ଧ ଲୋକ, ଏତେ ଦୂର ପଥ ପାଦରେ ଚାଲି ଚାଲି ଯାଇ ଦ୍ୱାରକାରେ ପହଞ୍ଚିବା ମୋ ପକ୍ଷେ ଏ ଦୁଇ ଚାରି ଦିନ ମଧ୍ୟରେ ସମ୍ଭବ ନୁହେଁ । ତେଣୁ ଯଥା ସମୟରେ ମୁଁ କିପରି ଏ ଖବର ପହଞ୍ଚାଇ ପାରିବ ?"

ରୁକ୍ମିଣୀ କହିଲେ—"ଆପଣ ଆଗ ଯାତ୍ରା ଆରମ୍ଭ କରି ଦିଅନ୍ତୁ, ତାଙ୍କ ନିକଟରେ ପହଞ୍ଚିବା ଦାୟିତ୍ୱ ତାଙ୍କ ଉପରେ ହିଁ ନିର୍ଭର କରେ । ଜୀବ କର୍ମ କରେ, କିନ୍ତୁ କର୍ମର ଫଳ ଦାତା ସ୍ୱୟଂ ଈଶ୍ୱର । ଆମ ମନୁଷ୍ୟମାନଙ୍କ ପାଇଁ ସମ୍ଭବ ଅସମ୍ଭବର ବିଚାର । କିନ୍ତୁ ତାଙ୍କ ପକ୍ଷେ କୌଣସି କଥା ଅସମ୍ଭବ ନୁହେଁ ।

ବ୍ରାହ୍ମଣ କହିଲେ—"ତାହା ହେଲେ ଠିକ୍ ଅଛି । ପ୍ରଯତ୍ନ କରିବା ଆମର କର୍ତ୍ତବ୍ୟ । ତାହାର ଫଳ ଭଗବାନଙ୍କ ହାତରେ । ମୁଁ ମୋ ପ୍ରଯତ୍ନରେ କଦାପି ହେଳା କରିବି ନାହିଁ । ତେବେ ସେଠାକୁ ଯାଇ ମୋତେ କଣ କହିବାକୁ ହେବ କୁହ ।"

ରୁକ୍ମିଣୀ କହିଲେ—"ଆପଣ ମୋର ଏହି ପତ୍ରଟି ନେଇ ତାଙ୍କ ଚରଣରେ ସମର୍ପଣ କରିଦେବେ । ଯଦି ସେ ଆପଣଙ୍କୁ ତାହା ପଢ଼ିବାକୁ କହନ୍ତି ତାହା ହେଲେ ଆପଣ ବିସ୍ତାରିତ ବର୍ଣ୍ଣନା କରି ତାଙ୍କୁ ଶୁଣାଇ ଦେବେ । ମୋର ସମସ୍ତ ପ୍ରକାର ସ୍ଥିତି ତାଙ୍କୁ ମଧ୍ୟ ବୁଝାଇଦେବେ । ତେଣିକି ସେ ଯାହା ଉଚିତ୍ ମନେ କରିବେ ତାହା କରିବେ ।"

ସୂତ କହିଲେ—"ମୁନିଗଣ ! ରୁକ୍ମିଣୀଙ୍କର ଏହି କଥା ଶୁଣି ତାଙ୍କଠାରୁ ପତ୍ର ନେଇ ବୃଦ୍ଧ ବ୍ରାହ୍ମଣ ଦ୍ୱାରକାଯାତ୍ରା କଲେ । ଏକେତ ବୃଦ୍ଧ ଶରୀର, ରାସ୍ତା ମଧ୍ୟ ଅବଡ଼ା ଖାବଡ଼ା । ହସ୍ତରେ ଯଷ୍ଟି ଟିଏ ଧରି ବୃଦ୍ଧ କାଠବାଡ଼ି କଷ୍ଟେ ମଷ୍ଟେ ଚାଲିଲେ । ଚାଲି ଚାଲି ସେ ଥକି ପଡ଼ିଲେ । ଯାଉ ଯାଉ ପଥ ମଧ୍ୟରେ ସେ ଗୋଟିଏ ସୁନ୍ଦର ଉଦ୍ୟାନ ଦେଖିବାକୁ ପାଇଲେ । ସେଠାରେ ସେ ପୁଷ୍କରଣୀରୁ ସ୍ୱଚ୍ଛ ଜଳପାନ କରି ଗୋଟିଏ ବୃକ୍ଷ ମୂଳେ ବିଶ୍ରାମ ନେଉ ନେଉ ଶୋଇପଡ଼ିଲେ ।

ଏଣେ ଅନ୍ତର୍ଯ୍ୟାମୀ ଭଗବାନ୍ ଚିନ୍ତା କଲେ—"ଏ ବ୍ରାହ୍ମଣ ଯଦି ଏହି ପ୍ରକାର ଚାଲି ଚାଲି ଆସେ, ତାହା ହେଲେ ସେ ଚାରି ବର୍ଷ ଚାଲିଲେ ମଧ୍ୟ ଦ୍ୱାରକାରେ ପହଞ୍ଚି ପାରିବ ନାହିଁ । ମୋର ପ୍ରିୟାକୁ ତେଣେ ଏକ ଏକ ମୁହୂର୍ତ୍ତ ଅତ୍ୟନ୍ତ ଦୁର୍ବିସହ ହୋଇ ପଡ଼ିଲଣି ।" ଏହା ଚିନ୍ତା କରି ସେ ଯୋଗମାୟାଙ୍କୁ ଆଜ୍ଞା ଦେଲେ । ତାଙ୍କ ଆଜ୍ଞାରେ ଯୋଗମାୟା କ୍ଷଣକ ମଧ୍ୟରେ ବ୍ରାହ୍ମଣଙ୍କୁ ଦ୍ୱାରକାରେ ଆଣି ପହଞ୍ଚାଇ ଦେଲେ ଓ ସେ ଯେପରି ଉଦ୍ୟାନ ମଧ୍ୟରେ ଶୋଇଥିଲେ, ସେହିପରି ଦ୍ୱାରକାର ଏକ ଉପବନ ମଧ୍ୟରେ ଶୁଆଇଦେଲେ ।

କିଛି ସମୟ ପରେ ବ୍ରାହ୍ମଣ ଯେତେବେଳେ ଆଖି ମଳି ମଳି ନିଦରୁ ଉଠିଲେ, ସେତେବେଳେ ଦେଖିଲେ ତାଙ୍କ ସମ୍ମୁଖରେ ଚତୁର୍ଦ୍ଦିଗରେ ଅଗାଧ ସମୁଦ୍ର ଓ ସେହି ସମୁଦ୍ର ମଧ୍ୟରେ ସ୍ୱର୍ଣ୍ଣ ନିର୍ମିତ ଦ୍ୱାରକାପୁରୀ । ସେ ସେହି ଦ୍ୱାରକାପୁରୀର ଏକ ଉପବନ ମଧ୍ୟରେ ଆସି ଉପସ୍ଥିତ । ସେ ସେଠାରେ ଲୋକମାନଙ୍କୁ ପଚାରିଲେ—"ଏ କେଉଁ ନଗର ?" ଲୋକମାନେ ତାଙ୍କୁ କହିଲେ "ଏ ଦ୍ୱାରକାପୁରୀ ।

ବ୍ରାହ୍ମଣ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଯାଇ କହିଲେ, "ଆରେ, ମୁଁ ତ କୁଣ୍ଡିନପୁର ଉପବନରେ ଶୋଇ ଯାଇଥିଲି, ଶୋଇ ରହିଥିବା ଅବସ୍ଥାରେ ଏଠାକୁ ଆସିଲି କିପରି ? ଏହା ତ ଅତ୍ୟନ୍ତ ଆଶ୍ଚର୍ଯ୍ୟ କଥା ।"

ଲୋକମାନେ ତାଙ୍କୁ କହିଲେ—"ଆପଣ ଶୋଇଥିବା ଅବସ୍ଥାରେ ଆସିଲେ କି ବସିଥିବା ଅବସ୍ଥାରେ ଆସିଲେ, ଆମର ସେଥିରେ ଯାଏ ଆସେ କେତେ, ଏହା କିନ୍ତୁ ଦ୍ୱାରକାପୁରୀ । ଏଥିରେ ସନ୍ଦେହ କରିବାର କିଛି ନାହିଁ ।"

ବ୍ରାହ୍ମଣ ବିସ୍ମିତ ହୋଇ କହିଲେ—"ମୁଁ ତ ତାହା ମାନୁଛି, କିନ୍ତୁ ମୁଁ ଏତେ ଶୀଘ୍ର ଏଠାକୁ ଅସିଲି କିପରି ? ଯାହା ହେଉ ସେ କଥା ଚିନ୍ତା କରି କିଛି ଲାଭନାହିଁ । ଏହା ବୋଧହୁଏ ଭଗବାନଙ୍କ ମାୟା" । ସେ ପଚାରିଲେ "ଆପଣମାନେ ମୋତେ କହି ପାରିବେ କି, ଏଥିରେ ଶ୍ରୀ କୃଷ୍ଣଚନ୍ଦ୍ରଙ୍କ ଭବନ କେଉଁଠି ?"

ଲୋକମାନେ ହସି ହସି କହିଲେ—"ବିପ୍ରବର ! ଆପଣ ଭଗବାନ ଶ୍ରୀକୃଷ୍ଣଙ୍କ ଉପବନରେହିଁ ବିଶ୍ରାମ କରିଥିଲେ । ଆପଣଙ୍କ ସମ୍ମୁଖରେ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ସୁବର୍ଣ୍ଣ ନିର୍ମିତ ମହଲ । ଭଗବାନ ବ୍ରହ୍ମଣ୍ୟଦେବ ଅଟନ୍ତି । ତାଙ୍କର ଏଠାରେ ବ୍ରାହ୍ମଣଙ୍କ ପାଇଁ ଦ୍ୱାର ସର୍ବଦା ଉନ୍ମୁକ୍ତ । ଅପଣ ପ୍ରତିହାରୀଙ୍କୁ ଜଣାଇ ଦିଅନ୍ତୁ, ସେ ଆପଣଙ୍କୁ ଭଗବାନଙ୍କ ନିକଟକୁ ନେଇଯିବେ ।"

ଏହା ଶୁଣି ବୃଦ୍ଧ ବ୍ରାହ୍ମଣ ନିଜର ଆସନ ଓ କମଣ୍ଡଳୁ ଧରି ଅଗ୍ରସର ହେଲେ । ଦ୍ୱାରପାଳମାନେ ବୃଦ୍ଧ ବ୍ରାହ୍ମଣଙ୍କୁ ଦେଖିବାକ୍ଷଣି ଉଠି ଠିଆହେଲେ ଓ ତାଙ୍କ ଅଭିପ୍ରାୟ ଜାଣି ଅତ୍ୟନ୍ତ ଅଦର ସତ୍କାରେ ତାଙ୍କୁ ରାଜଭବନ ଭିତରକୁ ପାଛୋଟି ନେଲେ । ଭିତରକୁ ଯାଇ ବ୍ରାହ୍ମଣ ଦେଖିଲେ—ଅାଦିପୁରୁଷ ଭଗବାନ୍ ବାସୁଦେବ ଏକ ରତ୍ନବମଣ୍ଡିତ ସୁବର୍ଣ୍ଣମୟ ସିଂହାସନରେ ବିରାଜମାନ କରି ଅଛନ୍ତି । ବ୍ରହ୍ମଣ୍ୟଦେବ ବୃଦ୍ଧ ବ୍ରାହ୍ମଣଙ୍କୁ ତାଙ୍କ ନିକଟକୁ ଅସୁଥିବାର ଦେଖି ସଙ୍ଗେ ସଙ୍ଗେ ସିଂହାସନରୁ ଉଠି ଦଣ୍ଡାୟମାନ ହେଲେ ଓ ଅତ୍ୟନ୍ତ ଅଦରର ସହିତ ତାଙ୍କର ସ୍ୱାଗତ ସତ୍କାର କରି ଏକ ଉତ୍ତମ ଅାସନରେ ନେଇ ବସାଇଲେ । ଏହାପରେ ସେବକଙ୍କଦ୍ୱାରା ସଙ୍ଗେ ସଙ୍ଗେ ପୂଜାର ସମସ୍ତ ସାମଗ୍ରୀ ମଗାଇଲେ । ଯେପରି ଦେବେନ୍ଦ୍ର ବୃହସ୍ପତିଙ୍କୁ ପୂଜା କରନ୍ତି, ଭକ୍ତ ଭଗବାନଙ୍କୁ ପୂଜାକରେ, ଭଗବାନ୍ ସେହିପରି ଶ୍ରଦ୍ଧାଳୁଙ୍କର ବୃଦ୍ଧ ପୁରୋହିତଙ୍କର ପୂଜା କଲେ । (୧) ଯିଏ ପତ୍ନୀଙ୍କର ପୂଜ୍ୟ ସେ ନିଜର ମଧ୍ୟ ପୂଜନୀୟ । ସୁନ୍ଦର ସୁବାସିତ ଜଳଦ୍ୱାରା ସ୍ନାନାଦି କରାଇ, ବିଧିପୂର୍ବକ ପୂଜନ କରି ସେ ସୁନ୍ଦର ସ୍ୱାଦିଷ୍ଟ ଛପନପ୍ରକାର ଭୋଜନ କରାଇଲେ । ଯେତେବେଳେ ବ୍ରାହ୍ମଣ ଦେବତା ଭୋଜନରୁ ନିବୃତ୍ତ ହେଲେ, ସେତେବେଳେ ଭଗବାନ୍ ତାଙ୍କୁ ସୁନ୍ଦର ଶଯ୍ୟାରେ ନେଇ ଶୁଆଇଲେ ଓ ନିଜେ ତାଙ୍କ ପାଖରେ ବସି ନିଜର କମଳ ସଦୃଶ କୋମଳ କରରେ ଧିରେ ଧିରେ ପାଦ ସେବା କଲେ । ଭଗବାନତ ପୂର୍ବରୁ ବ୍ୟସ୍ତ ହୋଇ ପଡ଼ିଥିଲେ, ତେଣୁ ଏକାନ୍ତ ଅବସର ଦେଖି ସେ ପଚାରିଲେ—"ବିପ୍ରବର !

(୧) ବିପ୍ରବତ୍ସଳ ନରହରି । ବ୍ରାହ୍ମଣ କର ଧରି ॥
ନିଜ ଅାସ୍ଥାନେ ବସାଇଲେ । ଅନେକମତେ ପୂଜା କଲେ ॥
ତାହାଙ୍କୁ ଯେହ୍ନେ ଦେବଗଣେ । ବାଣୀପେ ପୂଜନ୍ତି ଚରଣେ ॥
କୃଷ୍ଣ ପୂଜିଲେ ସେହିମତେ । ଶୁଣ ଶୁଜନ ଏକଚିତ୍ତେ ॥
(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ. ୫୭)

ଆପଣ ତ କୁଣ୍ଡିନପୁରରୁ ଆସିଛନ୍ତି, ଏ କଥା ମୁଁ ଶୁଣି ସାରିଛି । ଏବେ ଆପଣ ପ୍ରଥମେ ନିଜର କୁଶଳ ସମ୍ବାଦ କୁହନ୍ତୁ । ଆପଣଙ୍କ ଚିତ୍ତ ସର୍ବଦା ସନ୍ତୁଷ୍ଟ ରହୁଛି ନା ? କାରଣ ସନ୍ତୋଷ ହିଁ ବ୍ରାହ୍ମଣଙ୍କର ପରମ ଧନ । ଆପଣଙ୍କର ପିତା, ପିତାମହ, ପ୍ରପିତାମହ ଆଦିଙ୍କ ଅମଳରୁ ଯେଉଁ ଧର୍ମ ପ୍ରଚଳିତ ହୋଇଆସୁଛି, ତାହା ଆପଣ ଉତ୍ତମ ରୂପେ ପାଳନ କରୁଅଛନ୍ତି ତ ? ସ୍ୱଧର୍ମ ପାଳନ କରିବାରେ ଆପଣଙ୍କୁ କୌଣସି କଠିନତା ପ୍ରତୀତ ହେଉନାହିଁ ତ ? ଟଙ୍କା ପଇସା ବ୍ରାହ୍ମଣର ପ୍ରକୃତ ଧନ ନୁହେଁ,ସନ୍ତୋଷ ହିଁ ତାହାର ପରମ ଧନ । ଯଦି ବ୍ରାହ୍ମଣ ଯେତିକି ମିଳିଲା ସେତିକରେ ସନ୍ତୁଷ୍ଟ ହୋଇ ନିଜ ଧର୍ମରୁ ପତିତ ନ ହୁଏ, ତାହା ହେଲେ ତଦ୍ଦ୍ୱାରା ତାହାର ସମସ୍ତ କାମନା ପୂର୍ଣ୍ଣ ହୋଇଯାଏ । ପ୍ରକୃତରେ ରକ୍ଷିତ ଧର୍ମ୍ମ ହିଁ ରକ୍ଷା କରୁଥିବା ଲୋକଙ୍କୁ ଧର୍ମ୍ମ ହିଁ ରକ୍ଷା କରେ । ସନ୍ତୋଷ ରହିବାରେ ହିଁ ସୁଖ ସର୍ବଦା ବିଦ୍ୟମାନ ରହେ । ମନରେ ଯଦି ସନ୍ତୋଷ, ତେବେ ତାହାର ସୁଖ ଲାଭ ଅନିବାର୍ଯ୍ୟ । ଯଦି ମନରେ ସନ୍ତୋଷ ନାହିଁ ତେବେ ଇନ୍ଦ୍ରପଦବୀ ଲାଭ କରିଥିଲେ ସୁଦ୍ଧା ଜୀବନ ଅଶାନ୍ତିରେ ସର୍ବଦା କଟିଯାଏ । ସୁଖଲାଭ ଆଶାରେ ସେ ଲୋକ ଲୋକାନ୍ତର ଭ୍ରମଣ କରିବାକୁ ଲାଗେ । ସନ୍ତୋଷୀ ସର୍ବଦା ଶାନ୍ତ ଭାବରେ ରହି ସନ୍ତାପରହିତ ତଥା ସୁଖୀ ହୁଏ । ଯେଉଁ ବ୍ୟକ୍ତି ଆତ୍ମସନ୍ତୋଷ ଲାଭ କରେ, ସାଧୁସ୍ୱଭାବ ବିଶିଷ୍ଟ, ପ୍ରାଣୀଗଣଙ୍କର ପରମ ବନ୍ଧୁ, ଅହଙ୍କାର ହୀନ ଓ ଶାନ୍ତ ସ୍ୱଭାବ ବିଶିଷ୍ଟ, ସେହି ବ୍ରାହ୍ମଣଙ୍କୁ ମୁଁ ଥରକର ସହିତ ନତଶିର ହୋଇ ପ୍ରଣାମ କରେ । (୧)

ବ୍ରାହ୍ମଣ କହିଲେ—"ପ୍ରଭୋ ! ଆପଣ ଏପରି ନ କହିବେ ଅବା କାହିଁକି ? ଆପଣ ସ୍ୱୟଂ ତ ବ୍ରାହ୍ମଣ୍ୟଦେବ । ସ୍ୱୟଂ ଜଗତ୍ପୂଜ୍ୟ ହୋଇ ମଧ୍ୟ ଆପଣ ବ୍ରାହ୍ମଣଙ୍କୁ ଏତେ ସମ୍ମାନ ଦେଉଅଛନ୍ତି, ଏହା ତ ଆପଣଙ୍କର ମହତ ପଣିଆ । ଆପଣଙ୍କର ଭକ୍ତ ମହାରାଜ ଭୀଷ୍ମକଙ୍କ ରାଜ୍ୟରେ ରହି ଆମେ ଆମ ଶକ୍ତି ଅନୁସାରେ ଧର୍ମ୍ମ ପାଳନ କରୁଅଛୁ ।"

ଏହା ଶୁଣି ଭଗବାନ୍ କହିଲେ—"ହେଲା ତେବେ ବ୍ରହ୍ମନ୍ ! ଆଚ୍ଛା, ଆପଣ କହି ପାରିବେ କି, ଯାହାଙ୍କ ରାଜ୍ୟରେ ଆପଣ ନିବାସ କରୁଛନ୍ତି, ସେହି ରାଜା ସପରିବାର

---

(୧) ଅଖିଳ କାମ୍ୟଫଳ ଦେଇ । ସ୍ୱଧର୍ମେ ବିପ୍ର ଯେ ଜୀଅଇ ॥
ବହୁତ ଥାଇ ଯାର ଧନ । ହେଲା କରଇ ନିଜ କର୍ମ ॥
ନିରତେ ଚିତ୍ତ ଅସନ୍ତୋଷ । ଉଭୟଲୋକେ ନାହିଁ ଯଶ ॥
ଦରିଦ୍ର ପଣେ ଦୁଃଖ ସହି । ନିଜ ଧର୍ମକୁ ନ ଛାଡ଼ଇ ॥
ସେ ବିପ୍ର ହୋଇ ମୋର ସଙ୍ଗ । ତରଇ ସଂସାର ତରଙ୍ଗ ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୫୬)

କୁଶଳରେ ଅଛନ୍ତି ତ ? ରାଜାଙ୍କ ତରଫରୁ ଆପଣଙ୍କୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ତ ପଡ଼ୁନାହିଁ ? ଦେଖନ୍ତୁ, ବିପ୍ରଦେବ ! ଯେଉଁ ରାଜାଙ୍କ ରାଜ୍ୟରେ ପ୍ରଜାମାନଙ୍କୁ ଉତ୍ତମ ରୂପେ ପାଳନ କରାଯାଏ, ଯେଉଁ ରାଜାଙ୍କର ଶାସନରେ ପ୍ରଜାଗଣ ସନ୍ତୁଷ୍ଟ ରହିଥାନ୍ତି, ସେହି ରାଜା ମୋର ଅତ୍ୟନ୍ତ ପ୍ରିୟ ଅଟନ୍ତି ।"

ବ୍ରାହ୍ମଣ କହିଲେ—"ପ୍ରଭୋ ! ଆପଣଙ୍କର ଭକ୍ତ ଆପଣଙ୍କୁ ସର୍ବଦା ଦର୍ଶନ କରେ ଓ ପ୍ରଜାଙ୍କୁ ପୁତ୍ରବତ୍ ପାଳନ କରେ । ବିଦର୍ଭ ନରେଶ ତ ଆପଣଙ୍କର ଅନନ୍ୟ ଭକ୍ତ ତାଙ୍କ ରାଜ୍ୟରେ ପ୍ରଜାଗଣ, ସାଧୁ, ସନ୍ଥ ଓ ବ୍ରାହ୍ମଣମାନେ କାହିଁକି ଅସୁବିଧାଭୋଗ କରିବେ ?"

ଭଗବାନ କହିଲେ—"ଅସ୍ତୁ, ଏବେ ଆପଣ ଏଠାକୁ ଆସିବାର ମୁଖ୍ୟ କାରଣ କୁହନ୍ତୁ । କେଉଁ କାରଣରୁ ଆପଣ ମୋ ପ୍ରତି କୃପା କଲେ ?"

ବ୍ରାହ୍ମଣ କହିଲେ—"ମୁଁ କେବଳ ଆପଣଙ୍କ ଦର୍ଶନ ପାଇଁ ଏମିତି ଚାଲିଆସିଲି ଭଗବାନ୍ ! "

ଭଗବାନ୍ କହିଲେ—"ଆପଣ ପ୍ରକୃତ କଥା ଲୁଚାଉଛନ୍ତି କାହିଁକି ମହାରାଜ ! ସତ କଥାଟି ମୋ ଆଗରେ ପ୍ରକାଶ କରନ୍ତୁ । ଆପଣ କେବଳ ମୋ ଦର୍ଶନ ପାଇଁ ଏତେବଡ଼ ସମୁଦ୍ର ଡିଆଁଇ ପାରହୋଇ ଆସି ନାହାନ୍ତି । କିଛି ନା କିଛି କାର୍ଯ୍ୟରେ ଅବଶ୍ୟ ଆସିଛନ୍ତି । ଯେଉଁ କାର୍ଯ୍ୟ ପାଇଁ ଆସିଛନ୍ତି, ତାହା ବିନା ସଙ୍କୋଚରେ ପ୍ରକାଶ କରନ୍ତୁ । ଯଦି ଏହା କୌଣସି ଗୋପନୀୟ କଥା ହୋଇଥାଏ, ତାହାହେଲେ ତାହା ଖୋଲି କହି ଦିଅନ୍ତୁ; ଏଠାରେ ଅନ୍ୟ କେହି ନାହାନ୍ତି । ଆପଣ ଓ ମୁଁ ଦୁହେଁ କେବଳ ଏଠାରେ ଅଛେ । ଆପଣ ଆଜ୍ଞା ଦିଅନ୍ତୁ, ମୁଁ ଆପଣଙ୍କର ଯେ କୌଣସି ସେବା କରିବାକୁ ପ୍ରସ୍ତୁତ ଅଛି ।"

ଏହା ଶୁଣି ବ୍ରାହ୍ମଣ କହିଲେ—"ଭଗବାନ୍ ! ଏହା ଯଥାର୍ଥ କଥା ଯେ, ମୁଁ କୁଣ୍ଡିନପୁର ନରେଶ ମହାରାଜ ଭୀଷ୍ମକଙ୍କର କନ୍ୟା ରୁକ୍ମିଣୀଙ୍କର ଆଦେଶରେ ଆପଣଙ୍କ ସେବାପାଇଁ ଏଠାକୁ ଆସିଅଛି । ସେ ନିଜର ମନପ୍ରାଣ ସବୁକିଛି ଆପଣଙ୍କ ଶ୍ରୀଚରଣରେ ଅର୍ପଣ କରି ଦେଇଛନ୍ତି । ରାଜାଙ୍କର ଇଚ୍ଛା ଯେ, ଆପଣଙ୍କ ସହିତ ରୁକ୍ମିଣୀଙ୍କର ବିବାହ ହେବା ଉଚିତ୍, କିନ୍ତୁ ରାଜାଙ୍କର ଜ୍ୟେଷ୍ଠ ପୁତ୍ର ରୁକ୍ମୀ ଅତ୍ୟନ୍ତ ଖଳ ପ୍ରକୃତିର ହୋଇ-ଥିବାରୁ ସେ ଆପଣଙ୍କ ସହିତ ଦ୍ୱେଷ କରୁଅଛି । ସେ ଚାହୁଁଛି, ଚେଦିରାଜ ଶିଶୁପାଳ ସହିତ ନିଜ ଭଉଣୀର ବିବାହ ହେଉ । ସେ ବଡ଼ପୁଅ ହୋଇଥିବାରୁ ରାଜା ରାଣୀ ତା କାର୍ଯ୍ୟରେ ହସ୍ତକ୍ଷେପ କରିବା ଉଚିତ୍ ମନେ କରୁ ନାହାନ୍ତି । କିନ୍ତୁ ରାଜକୁମାରୀ ଆପଣଙ୍କ

ବ୍ୟତୀତ ଅନ୍ୟ କାହାରିକୁ ବିବାହ କରିବାକୁ ଚାହୁଁ ନାହାନ୍ତି । ତେଣୁ ସେ ମୋତେ ଆପଣଙ୍କ ପାଖକୁ ପଠାଇଛନ୍ତି ।”

ଭଗବାନ୍ କହିଲେ—“ଖାଲି ପଠାଇଛନ୍ତି ନା କୌଣସି ଚିଠି ପତ୍ର ଦେଇ ପଠାଇଛନ୍ତି ? ”

ବ୍ରାହ୍ମଣ କହିଲେ—“ହଁ, ଭଗବାନ୍ ! ସେ ନିଜ ହସ୍ତଲିଖିତ କୁଙ୍କୁମ ଚର୍ଚ୍ଚିତ ପତ୍ରଟି ଆପଣଙ୍କୁ ଦେବା ପାଇଁ ପଠାଇଛନ୍ତି । ନିଅନ୍ତୁ, ତାହା ଆପଣ ପାଠ କରନ୍ତୁ । ”

ଭଗବାନ୍ ଚନ୍ଦ୍ରାକଲେ—“ପ୍ରସ୍ତାବ ପତ୍ର ଓ ଲଗ୍ନପତ୍ର ଇତ୍ୟାଦି ବ୍ରାହ୍ମଣ ହିଁ ଖୋଲନ୍ତି ଓ ପଢ଼ି ଶୁଣାନ୍ତି । ବର ନିଜର ବିବାହ ପ୍ରସ୍ତାବ ପତ୍ର କିଣ କେବେ ପାଠ କରନ୍ତି ? ” ଏହା ଚନ୍ଦ୍ରାକରି ଭଗବାନ୍ କହିଲେ—“ଆଚ୍ଛା ଠିକ୍ ଅଛି, ଆପଣ ନିଜେ ଏହି ପତ୍ର ପଢ଼ି ମୋତେ ଶୁଣାନ୍ତୁ ଓ ଏହାର ବ୍ୟାଖ୍ୟା କରନ୍ତୁ, ମୁଁ ଯେପରି ସହଜରେ ତାହା ବୁଝିପାରେ । ଆଉ ଡେରି କରନ୍ତୁ ନାହିଁ । ପ୍ରେମ ବିଷୟରେ ବିସ୍ତାରପୂର୍ବକ ଶୁଣିବା ପାଇଁ ବାରମ୍ବାର ଇଚ୍ଛା ହୁଏ ଓ ଏଥିରେ ସୁଖ ମିଳେ ।”

ସୂତ କହୁଛନ୍ତି—“ମୁନିଗଣ ! ଭଗବାନ୍ଙ୍କର ଆଜ୍ଞାପାଇ ବ୍ରାହ୍ମଣ ପତ୍ରଟିକୁ ଖୋଲି ଗମ୍ଭୀରଭାପୂର୍ବକ ପଢ଼ିବାକୁ ଲାଗିଲେ । ବ୍ରାହ୍ମଣ ଦେବତା ଏବେ ଯେପରି ଭାବରେ ରୁକ୍ମଣୀଙ୍କର ପତ୍ର ବିସ୍ତାରିତ ଭାବରେ ପଢ଼ି ଶୁଣାଇଲେ, ତାହା ମୁଁ ବର୍ଣ୍ଣନା କରୁଛି, ଆପଣମାନେ ସମାହିତ ଚିତ୍ତରେ ତାହା ଶ୍ରବଣ କରନ୍ତୁ ।”

## ଛପ୍ପୟ

କରି ପୂଜା ପକବାନ ପ୍ରେମ ତେଂ ବିବିଧ ଖବାୟେ ।
ପୁନି ଶୈୟା ଅତି ସୁଖଦ ବିଛାଇ ବିପ୍ର ସୁବାୟେ ॥
ଲଗେ ପଲୋଟନ ଚରନ କୁଶଲ ପୂଛତ ପ୍ରଭୁ ପୁନି ପୁନି ।
ବୈଦର୍ଭୀ କୀ କଥା ଭୟେ ପ୍ରମୁଦିତ ଯଦୁବର ସୁନି ॥
ପୀରୀ ପାତୀ ନିରଖିକେଂ, ଅତି ପ୍ରସନ୍ନ ମନମହଁ ଭୟେ ।
ବୃଦ୍ଧ ବିପ୍ର ବାଁଚନ ଲଗେ, ପ୍ରେମ ମଗ୍ନ ହରି ହ୍ୱୈ ଗୟେ ॥

—※—

# ଶ୍ରୀ ରୁକ୍ମିଣୀଙ୍କର ପ୍ରେମ ପତ୍ର

ଶ୍ରୁତ୍ୱା ଗୁଣାନ୍ ଭୁବନସୁନ୍ଦର ଶୃଣ୍ୱତାଂ ତେ
ନିର୍ବିଶ୍ୟ କର୍ଣ୍ଣବିବରୈର୍ହରତୋଽଙ୍ଗତାପମ୍ ।
ରୂପଂ ଦୃଶାଂ ଦୃଶିମତାମଖିଳାର୍ଥଲାଭମ୍
ତ୍ୱୟ୍ୟଚ୍ୟୁତାବିଶତି ଚିତ୍ତମପତ୍ରପଂ ମେ ॥ ※

(ଶ୍ରୀ : ଭା : ୧୦ମ ସ୍କନ୍ଧ ୫୨ ଅ: ୩୭ ଶ୍ଳୋକ)

## ଛପ୍ପୟ

ଲେଖେ ରୁକ୍ମିଣୀ—ଦୟିତ ! ଭୟେ। ମମ ମନ ମତବାରେ ।
ସୁନି ଗୁନ ଅନୁପମ ରୂପ ଲଖେଂ। ହିୟ ଚିତ୍ତ ଭିହାରେ ॥
ହେ ହରି ! ଅଶରନ ଶରନ ଆଇ ଦାସୀ ଅପନାଓ ।
ଖଲ ଶୃଗାଲ ଶିଶୁପାଲ ହରେ ନରସିଂହ ଛୁଡ଼ାଓ ॥
ଯଦି ଆବେଂ ନହିଂ ଆପ ତୋ, ବିଷଖାଉଁ ମରି ଜାଉଁଗୀ ।
ତୁମ ବିନୁ ସୁହେ ମଦନହୂ, ଆବେ ନହିଁ ଅପନାଉଁଗୀ ॥

---

※ ହେ କୃଷ୍ଣ ଭୁବନ ସୁନ୍ଦର । ଶୁଣିଲି ଗୁଣକର୍ମ ତୋର ॥
ତୋହର ଗୁଣ-କର୍ମ-ଯଶ । ଯାହାର ଶ୍ରବଣେ ପ୍ରବେଶ ॥
ହରେ ଅଶେଷ ଜନ୍ମ ପାପ । ଆଧ୍ୟାତ୍ମ ଆଦି ତ୍ରିତାପ ॥
ସେ ରୂପ କର୍ଣ୍ଣପଥେ ଶୁଣି । ମୋହର ଚିତ୍ତ ତେଜପାଣି ॥
ଲଜ ତେଜିଛି ତୋ ଶରଣେ । ପଶିଲି ଅଭୟ-ଶରଣେ ॥
ଏବେ ବରିଲି ତୋତେ ମୁହିଁ । ମନ ବଚନ ତନୁ ଦେଇ ॥
ତୋହର ଅର୍ଥେ ଏ ଶରୀର । ବରିବ ମୋତେ ଯାଦବବର ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦. ଅ. ୫୬)

ପ୍ରେମ ବିଷୟ ମୁଖରେ ବର୍ଣ୍ଣନା କରି ହୁଏ ନାହିଁ । ତାହା ସମ୍ମୁଖରେ କହିବାକୁ ସଙ୍କୋଚ ବି ବୋଧ ହୁଏ । ତାହା ନେତ୍ର ଦ୍ୱାରା କିମ୍ବା ଅନ୍ୟ ସଂକେତ ଦ୍ୱାରା ପ୍ରକାଶ କରାଯାଏ କିମ୍ବା ଲିଖିତ ଆକାରରେ ବ୍ୟକ୍ତ କରାଯାଏ । ଲେଖିବା ସମୟରେ ପ୍ରିୟତମଙ୍କର ମନୋମୟୀ ମୂର୍ତ୍ତି ନେତ୍ର ସମ୍ମୁଖରେ ବିରାଜମାନ କରେ, ଭାବମୟୀ ମୂର୍ତ୍ତି ସହିତ ବାର୍ତ୍ତାଲାପ କରିବାରେ ସଂକୋଚ ନ ଥାଏ, ତେଣୁ ଆମେ ଲେଖନୀ ଦ୍ୱାରା ଲେଖି ନିଜ ଭାବକୁ ନିଃସଂକୋଚରେ ବ୍ୟକ୍ତ କରିଥାଉଁ । ତାହା ଯେତେବେଳେ ପ୍ରିୟତମ ଶୁଣନ୍ତି, ସେତେବେଳେ ସେ ପ୍ରେମରେ ନିମଗ୍ନ ହୋଇ ଯାଆନ୍ତି । ଲେଖା ନିଜ ହୃଦୟର ଚିତ୍ର ସ୍ୱରୂପ । ତାହା ଖୋଲି କାହାରିକୁ ଦେଖାଇ ହୁଏ ନାହିଁ । ଲେଖା ମାଧ୍ୟମରେ ତାହାର ଛାୟା ପ୍ରତିଫଳିତ ହୁଏ । ସେହି ଛାୟାକୁ ଦେଖିବାଦ୍ୱାରା ହିଁ ହୃଦୟର ଦର୍ଶନ ହୋଇଥାଏ ।

ସୂତ କହୁଛନ୍ତି—"ମୁନିଗଣ ! ଯେତେବେଳେ ଭଗବାନ୍ ବାସୁଦେବ କୁଣ୍ଡିନପୁରର ବୃଦ୍ଧ ବ୍ରାହ୍ମଣଙ୍କୁ ରୁକ୍ମିଣୀଙ୍କର ପତ୍ର ପଢ଼ି ଶୁଣାଇବାକୁ ପ୍ରାର୍ଥନା କଲେ, ସେତେବେଳେ ସେହି ବିପ୍ରବର ମୃଦୁଳ ଚକିଆକୁ ଅଉଜି ବସି କହିବାକୁ ଲାଗିଲେ— "ଭଗବାନ୍ ! ମୁଁ ବ୍ୟାଖ୍ୟା ସହିତ ଏହି ପତ୍ର ପଢ଼ି ଶୁଣାଉଛି । ମୁଁ ସମ୍ପୂର୍ଣ୍ଣ ପତ୍ର ପଢ଼ି ଶୁଣାଇ ନ ସାରିବା ପର୍ଯ୍ୟନ୍ତ ଆପଣ ମଝିରେ କିଛି ପଚାରିବେ ନାହିଁ ।"

ଭଗବାନ୍ କହିଲେ—"ଅଚ୍ଛା, ଠିକ୍ ଅଛି, ଆପଣ ପଢ଼ି ଶୁଣାନ୍ତୁ, ମୁଁ ଆପଣଙ୍କ ରାଜକୁମାରୀଙ୍କ ମନକୁ ଧ୍ୟାନ ଦେଇ ଶ୍ରବଣ କରିବି ।"

ଏହା ଶୁଣି ବୃଦ୍ଧ ବ୍ରାହ୍ମଣ ସେହି ପ୍ରେମ ପତ୍ରକୁ ଖୋଲି ସାବଧାନତାର ସହିତ ଟିପ୍ପଣୀ କରି ପଢ଼ି ଶୁଣାଇବାକୁ ଲାଗିଲେ ।

ବ୍ରାହ୍ମଣ କହିଲେ—"ପ୍ରଭୋ ! ରାଜକୁମାରୀ ରୁକ୍ମିଣୀ ଆପଣଙ୍କୁ ସମ୍ବୋଧନ କରି ଲେଖିଛନ୍ତି—"ହେ ଅଚ୍ୟୁତ ! ଆପଣ ସମସ୍ତ ସଦ୍‌ଗୁଣର ପରିପୂର୍ଣ୍ଣ ମୂର୍ତ୍ତି । ସଂସାରରେ ଯେତେ ପ୍ରକାରର ସଦ୍‌ଗୁଣ ରହିଛି, ସେ ସମସ୍ତ ଆପଣଙ୍କଠାରେ ପୂର୍ଣ୍ଣରୂପେ ବିଦ୍ୟମାନ୍ । ଆପଣଙ୍କର ଏହି ଗୁଣରେ ଏପରି ଆକର୍ଷଣ ଯେ, ତାହା ଶ୍ରବଣକାରୀଙ୍କ କର୍ଣ୍ଣ କୁହରରେ ହୃଦୟ ମଧ୍ୟକୁ ସହଜରେ ପ୍ରବେଶ କରିଯାଏ । ତାହା ହୃଦୟ ସ୍ପର୍ଶ କଲା ମାତ୍ରେ ସୂର୍ଯ୍ୟ ଉଦିତ ହେବା ସମୟରେ ଅନ୍ଧକାର ନାଶ ହୋଇଯିବା ଭଳି ଆପଣଙ୍କ ଗୁଣ ସବୁ ପ୍ରଥମ ଶାରୀରିକ ଓ ମାନସିକ ସନ୍ତାପକୁ ଶାନ୍ତକରେ । ହୃଦୟରେ ଥିବା ସଂସାର ପ୍ରତି ଅମଙ୍ଗଳକାରୀ ନଷ୍ଟ ହୋଇଯାଏ ଓ ଚିତ୍ତ ସର୍ବଦା ଆପଣଙ୍କ ଗୁଣ ଶ୍ରବଣ କରିବା ପାଇଁ ବ୍ୟଗ୍ର ହୋଇଉଠେ । ଯେଉଁ ଭାଗ୍ୟବାନ୍ ଆପଣଙ୍କର ତ୍ରିଭୁବନ ସୁନ୍ଦର ସ୍ୱରୂପକୁ ଦର୍ଶନ କରନ୍ତି, ତାଙ୍କ ନେତ୍ର ସଫଳ ହୋଇଯାଏ ।

ମୁଁ ଏ ପର୍ଯ୍ୟନ୍ତ କେବଳ ଆପଣଙ୍କ ଗୁଣ ଶ୍ରବଣ ହିଁ କରିଛି । ନେତ୍ରରେ ଦେବ ଦୁର୍ଲ୍ଲଭ ଦର୍ଶନର ସୁଯୋଗ ପାଇ ନାହିଁ । ଗୁଣ ଶ୍ରବଣମାତ୍ରେ ମୋର ଚିତ୍ତ ଆପଣଙ୍କ ଅଡ଼କୁ ଆକୃଷ୍ଟ ହୋଇଯାଇଛି ଓ ମୋର ଦୃଢ଼ ଧାରଣା ହୋଇଛି ଯେ ତ୍ରିଭୁବନରେ ଆପଣଙ୍କଠାରୁ ଅଧିକ ସୁନ୍ଦର ଆଉ କେହି ନାହିଁ ।

''ଆପଣ କହି ପାରନ୍ତି' ତ୍ରିଭୁବନରେ ତ ଜଣକୁ ବଳି ଅନ୍ୟ ଜଣେ ସୁନ୍ଦର ପୁରୁଷ ଅଛନ୍ତି ; କିନ୍ତୁ ଆପଣଙ୍କର ମନୋମୟୀ ମୂର୍ତ୍ତି ମୋ ମନମଧ୍ୟରେ ସମ୍ପୂର୍ଣ୍ଣରୂପେ ସ୍ଥାନ ଅଧିକାର କରିଅଛି । ତାହା କୌଣସି ପ୍ରକାରେ ପ୍ରସ୍ଥାନ କରି ପାରୁ ନାହିଁ । ଯାହାଙ୍କ ଚିତ୍ତକୁ କୌଣସି ବସ୍ତୁ ପୂର୍ଣ୍ଣ ରୂପେ ନିଜ ଆଡ଼କୁ ଆକର୍ଷିତ କରିନିଏ ତାଙ୍କ ପାଇଁ ଏହାଠାରୁ ବଳି ସୁନ୍ଦର ବସ୍ତୁ ଏ ସଂସାରରେ ଆଉ କିଛି ହୋଇ ନ ପାରେ । ଆପଣ କହିପାରନ୍ତି— 'ତୁ କୁଳବତୀ ଯୁବତୀ, ରାଜକୁମାରୀ, ଉତ୍ତମ କୁଳରେ ତୋର ଜନ୍ମ । କୁମାରୀ କନ୍ୟା କୌଣସି ଅପରିଚିତ ପୁରୁଷଙ୍କୁ ଏପରି କଥା କହିବା ଅତ୍ୟନ୍ତ ଲଜ୍ଜାର ବିଷୟ ।' ହେ ଅଚ୍ୟୁତ ! ମୁଁ ଏ କଥା ଭଲ ଭାବେ ଜାଣେ, କିନ୍ତୁ ଉପାୟ କ'ଣ ? ଏଥିରେ ମୋର କୌଣସି ଦୋଷ ନାହିଁ । ଯଦି ଦୋଷ ଥାଏ, ତେବେ ତାହା ଆପଣଙ୍କ ରୂପ ଓ ଗୁଣର ଦୋଷ । ତାହା ମୋର ଅନ୍ତଃକରଣରୁ ଲଜ୍ଜାକୁ ଦୂରକୁ ଫିଙ୍ଗି ଦେଇଛି । ମୋର ଚିତ୍ତ ଲଜ୍ଜାହୀନ ହୋଇ ପଡ଼ିଛି । ଆପଣଙ୍କ ନିକଟରେ ଏହା ସ୍ୱୀକାର କରିବାରେ ମୋତେ ଟିକିଏ ହେଲେ ଲଜ ଲାଗୁନାହିଁ । ମୋର ମନ ସବୁଆଡୁ ଭାବରେ ଆପଣଙ୍କ ପାଇଁ ବ୍ୟାକୁଳ । ତାହା ଶ୍ୟାମ ରଙ୍ଗରେ ରଙ୍ଗାୟିତ । ତା ଦେହରେ ଏପରି ଗାଢ଼ ରଙ୍ଗ ମିଶି ଯାଇଛି ଯେ, ଯେତେ ପ୍ରଯତ୍ନ କଲେ ମଧ୍ୟ ତାହା ଛାଡ଼ୁ ନାହିଁ । ଆପଣଙ୍କ ମନମୋହିନୀ ମୂର୍ତ୍ତି ଅହର୍ନିଶ ମୋ ମନ ମଧ୍ୟରେ ବିଜଡ଼ିତ ହୋଇଯାଇଛି । ଆପଣଙ୍କ ରୂପଜାଲରେ ମୋ ମନମୀନ ପଡ଼ିଯାଇଛି ।

''ଆପଣ କହିପାରନ୍ତି—'ତୁମେ ମୋତେ କାହିଁକି ଚାହୁଁଛ ?' ହେ ମୁକୁନ୍ଦ ! ତାହାର ଉତ୍ତର ମୁଁ ଦେଉଛି ଶୁଣନ୍ତୁ । କୁଳବତୀ ମହିଳାଗଣ ଯେତେବେଳେ ବାଲ, ପୌଗଣ୍ଡ ଓ କୈଶୋରାବସ୍ଥାକୁ ଅତିକ୍ରମ କରି ଯୁବାବସ୍ଥାରେ ପଦାର୍ପଣ କରନ୍ତି, ସେତେବେଳେ ସେମାନେ ନିଜ ନିଜର ଭାବୀ ପତିଙ୍କର ଏକ ମନୋମୟୀ ମୂର୍ତ୍ତି ପ୍ରସ୍ତୁତ କରନ୍ତି । ସେମାନେ ଚାହାନ୍ତି, 'ମୋର ପତି କୁଳୀନ ହୋଇଥିବା ଆବଶ୍ୟକ, ସୁଶୀଳ ଯୁବକ ହୋଇଥିବା ଆବଶ୍ୟକ ଓ ବିଦ୍ୱାନ ହୋଇଥିବା ଆବଶ୍ୟକ । ସେ ଧନଧାନ୍ୟରେ ସମ୍ପନ୍ନ ହୋଇଥିବେ ଓ ମନ ହରଣକାରୀ ହୋଇଥିବେ ।' ତେଣୁ ମୋର ବିଶ୍ୱାସ ଯେ ଆପଣ କୁଳ, ଶୀଳ, ରୂପ, ବିଦ୍ୟା, ସଦାଗୁଣ ଓ ଧନ ଧର୍ମାଦିରେ ଅତୁଳ୍ୟ ଅଟନ୍ତି । ଅର୍ଥାତ୍. ଆପଣଙ୍କ ସମ ସଂସାରରେ ଅନ୍ୟ କେହି ନାହିଁ । ଆପଣ ହିଁ ମୋ ମନକୁ ହରଣ କରିବାକୁ କ୍ଷମ । ଆପଣ ପ୍ରାଣୀଗଣଙ୍କୁ ନିଜ ଆଡ଼କୁ ଶୀଘ୍ର ଆକର୍ଷିତ କରି ଥାଆନ୍ତି । ସେହି କାରଣରୁ ଆପଣଙ୍କ ନାମ ''କୃଷ୍ଣ'' । ଏଥିର କ୍ଷେତ୍ରରେ ବିବାହ ସମସ୍ତ ଉପସ୍ଥିତ

ହୋଇଥିବା ବେଳେ ଏପରି କେଉଁ କୁଳବତୀ, ଗୁଣବତୀ, ରୂପବତୀ କୁମାରୀ ଅଛି ଯେ କି ଆପଣଙ୍କୁ ପତିରୂପେ ବରଣ କରିବାକୁ ମନ ନ ବଳାଇ ରହି ପାରିବ, ତାହା ଆପଣ ହିଁ ବିଚାର କରନ୍ତୁ । ଯଦି ଏହା ଠିକ୍ ତାହାହେଲେ ବିବାହ ସମୟ ଉପସ୍ଥିତ ହୋଇଥିବା ବେଳେ ମୁଁ ଆପଣଙ୍କୁ ପତିରୂପେ ବରଣ କରିବା ଅନ୍ୟାୟ କିପରି ହେବ ? ହେ ପରମ ପ୍ରେମାସ୍ପଦ ! ଏଥିପାଇଁ ମୁଁ ସ୍ପଷ୍ଟ ରୂପେ ଜଣାଇ ଦେଉଛି, ମୁଁ ସର୍ବାନ୍ତଃକରଣରେ ଆପଣଙ୍କୁ ପତିରୂପେ ବରଣ କରିସାରିଛି । ମୁଁ ସମ୍ପୂର୍ଣ୍ଣରୂପେ ଆପଣଙ୍କୁ ଆତ୍ମସମର୍ପଣ କରିଅଛି । ଆପଣ ତ୍ରିଭୁବନପତି ଓ ମୁଁ ଜଣେ ଅକିଞ୍ଚନ ମନ୍ଦମତି ଅବଳା । ତଥାପି ମୁଁ ଅନନ୍ୟୋପାୟ, ଆପଣ ଏ ଶରଣାଗତ ଅବଳା ଆଡ଼େ କୃପାଦୃଷ୍ଟି ପକାନ୍ତୁ । ଆପଣଙ୍କର ଶରଣାଗତ ବତ୍ସଳ ନାମ ସାର୍ଥକ ହେଉ । ଆପଣ ତ ପ୍ରତିଜ୍ଞା କରିଛନ୍ତି ଯେ ଯେଉଁ ବ୍ୟକ୍ତି ସର୍ବାତ୍ମ ଭାବରେ ଆପଣଙ୍କ ଶରଣାଗତ ହୁଅନ୍ତି ଆପଣ ତାଙ୍କୁ ନିଜର କରି ନିଅନ୍ତି । ଯଦି ମୋର ଆତ୍ମସମର୍ପଣରେ କୌଣସି ତ୍ରୁଟି ବିଚ୍ୟୁତି ଥାଏ, ତେବେ ଆପଣ ତାହା ଦୂର କରି ମୋତେ ପତ୍ନୀରୂପେ ଗ୍ରହଣ କରନ୍ତୁ ।

"ଆପଣ କହିପାରନ୍ତି ଯେ—'ତୁ ଏତେ ବ୍ୟଗ୍ର ହେବା ଆବଶ୍ୟକ କଣ ? ତୁ ଯେତେବେଳେ ମୋତେ ଆତ୍ମସମର୍ପଣ କରି ଦେଇଛୁ, ଦିନେ ନା ଦିନେ ତ ମୁଁ ଯାଇ ଆପଣାର କରି ନେବି ।' ତେଣୁ ହେ କମଳନୟନ ! ଏ ପ୍ରକାର ଅବହେଳା କଲେ କାମ ଚଳିବ ନାହିଁ । ଆପଣ ଶୀଘ୍ର ପ୍ରସ୍ତୁତ ହୋଇ ଆସନ୍ତୁ, କାରଣ ମୋର ଘରଲୋକମାନେ ମୋତେ ଶିଶୁପାଳକୁ ପ୍ରଦାନ କରିବାକୁ ଚାହୁଁଛନ୍ତି । ଯେପରି ଅଗ୍ନିଙ୍କ ଭାଗକୁ ଶ୍ୱାନ, କାକ ଆଘ୍ରାଣ କରିଦେଲେ ତାହା ହବନ ଯୋଗ୍ୟ ହୁଏ ନାହିଁ, ଯେପରି ସିଂହର ଶିକାରକୁ ଯଦି ଶୃଗାଳ ମାରିଦିଏ, ତେବେ ସିଂହ ଆଉ ତାକୁ ସ୍ପର୍ଶ କରେ ନାହିଁ; ସେହିପରି ଏହି ଶୃଗାଳରୂପୀ ଶିଶୁପାଳ ମୋତେ ସ୍ପର୍ଶ କରିବାକୁ ଚାହୁଁଛି, ସେ ଯଦି ମୋତେ ସ୍ପର୍ଶ କରି ପକାଏ, ତାହା ହେଲେ ଏକେତ ମୁଁ ତା ଅଧୀନ ହେବି ନାହିଁ; ଦ୍ୱିତୀୟ ଆପଣଙ୍କ ଗ୍ରହଣ ଯୋଗ୍ୟ ବି ହେବି ନାହିଁ । ତେଣୁ ଯେ ପର୍ଯ୍ୟନ୍ତ ସେହି ଶୃଗାଳ ମୋତେ ସ୍ପର୍ଶ ନ କରିଛି, ସେତେଶୀଘ୍ର ଆସି ଆପଣ ସିଂହଭଳି ନିଜର ବୀରତ୍ୱ ଦେଖାଇ ଶୃଗାଳ ସମ୍ମୁଖରେ ଆପଣଙ୍କ ଭାଗ ଉତ୍ତୋଳନ କରି ନିଅନ୍ତୁ । ମୁଁ ଆପଣଙ୍କର ଓ ଚିରଦିନ ଆପଣଙ୍କର ହୋଇ ହିଁ ରହିବି । ଅନ୍ୟ କେହି ସ୍ୱପ୍ନରେ ସୁଦ୍ଧା ମୋତେ ସ୍ପର୍ଶ କରି ନ ପାରନ୍ତି ।

"ମୁଁ ସମସ୍ତ ଦେବଦେବୀ ଓ ଆପଣଙ୍କୁ ଜଣାଇ କହୁଛି ଯେ, ମୁଁ ଇହ ଜନ୍ମରେ ଅଥବା ପର କୌଣସି ଜନ୍ମ ଜନ୍ମାନ୍ତରରେ କିଛି ନା କିଛି ସୁକୃତ କର୍ମ କରିଛି । କୌଣସି କୂପ ଖନନ କରାଇଛି, ପୁଷ୍କରିଣୀ ଖୋଳାଇଛି, ବଗିଚା ଆଦି କରି ବୃକ୍ଷରୋପଣ କରାଇଛି, ଯାଗ ଯଜ୍ଞ ଆଦି ଶୁଭକର୍ମ କରାଇଛି, ଉପଯୁକ୍ତ ପାତ୍ରରେ ଧନ ଦାନ କରିଛି, କିଛି ନା କିଛି ଉପଯୁକ୍ତ ନିୟମ ପାଳନ କରିଛି, କିଛି ନା କିଛି ବ୍ରତ ଆଚରଣ କରିଛି, ଦେବତା,

ବ୍ରାହ୍ମଣ ଓ ଗୁରୁଙ୍କୁ ଶ୍ରଦ୍ଧା ସହକାରେ ବିଧିବିଧାନରେ ପୂଜନ କରିଛି । ଯଦି ମୁଁ ଆପଣଙ୍କୁ କୌଣସି ପ୍ରକାର ଆରାଧନା କରିଥିବି, ତାହାହେଲେ ଏ ସମସ୍ତର ଏକମାତ୍ର ଫଳ ମୋତେ ଏତିକି ମିଳୁ ଯେ, ଆପଣ ଆସି ମୋର ପାଣିଗ୍ରହଣ କରନ୍ତୁ । ଶିଶୁପାଳ ଆଦି ଅନ୍ୟ କୌଣସି ପୁରୁଷ ଯେପରି ମୋତେ ସ୍ପର୍ଶ ନ କରି ପାରନ୍ତି । ସବୁ ଦିଗରୁ ନିରାଶ ହୋଇ ମୁଁ ଆପଣଙ୍କ ଚରଣରେ ଶରଣ ପଶିଛି । ଏପରି ନିର୍ଲଜତା ପୂର୍ଣ୍ଣ ଦୁଃସାହସ କରିଛି । ମୋ ବିବାହ ପୂର୍ବରୁ ଆପଣ ଯେ କୌଣସି ପ୍ରକାରେ କୁଣ୍ଡିନପୁର ଆସି ହସ୍ତଗଣ୍ଠି ପଡ଼ିବା ପୂର୍ବରୁ ମୋତେ ଏଠାରୁ ନେଇ ଯାଆନ୍ତୁ । ମୋର ବିବାହ ସମୟ ଆଉ ଡେରି ନାହିଁ । ଏଠାରେ ସମସ୍ତ ଆୟୋଜନ ହୋଇ ସାରିଲାଣି । ତେଣୁ ଆପଣ ବିବାହ ପୂର୍ବରୁ ଆପଣଙ୍କ ଯାଦବ ସେନାପତିମାନଙ୍କ ସହିତ ଗୁପ୍ତରେ ବିଦର୍ଭର ରାଜଧାନୀ କୁଣ୍ଡିନପୁର ଠାରେ ଆସି ପହଞ୍ଚି ଶିଶୁପାଳ ଓ ତାର ସାଥୀ ଜରାସନ୍ଧ ଆଦିଙ୍କ ସୈନ୍ୟମାନଙ୍କୁ ପରାସ୍ତ କରି ବଳପୂର୍ବକ ମୋତେ ନେଇ ଯାଆନ୍ତୁ । କ୍ଷତ୍ରିୟଙ୍କ ନିମିତ୍ତ ରାକ୍ଷସ ବିଧିରେ କନ୍ୟା ଗ୍ରହଣ କରିବା ଉତ୍ତମ ବୋଲି କୁହାଯାଏ ।"

"ଆପଣ କହିପାରନ୍ତି—'ତୁମେ ତ ଅନ୍ତଃପୁରରେ ରହିଥିବ, ମୁଁ ତୁମକୁ କିପରି ପାଇବି ?' ତେଣୁ ଏହାର ଉପାୟ ମଧ୍ୟ ମୁଁ ଆପଣଙ୍କୁ ବତାଇ ଦେଉଛି । ଆମ କୁଳର ପ୍ରଥା ଅଛି ଯେ, ଯେଉଁ କନ୍ୟାର ବିବାହ ହୁଏ, ତା ବିବାହର ଦିନକ ପୂର୍ବରୁ ନବବଧୂକୁ କୁଳଦେବୀଙ୍କର ପୂଜା କରିବା ପାଇଁ ନଗର ବାହାରେ ଥିବା ଦେବୀ ମନ୍ଦିରକୁ ଯିବାକୁ ପଡ଼େ । ଏହି ଦେବୀ ପୂଜନ ଯାତ୍ରା ଖୁବ୍ ଆଡ଼ମ୍ବର ସହକାରେ କରାଯାଏ । କନ୍ୟା ନିଜର ସଖୀ, ସଙ୍ଗାତ ଓ ବୟସ୍କା ସ୍ତ୍ରୀଲୋକମାନଙ୍କ ଗହଣରେ ନଗର ବାହାରେ ଥିବା ପାର୍ବତୀ ମନ୍ଦିରକୁ ଯାଇ ତାଙ୍କୁ ପୂଜା କରେ । ପିତାଙ୍କ ତରଫରୁ ନଗରଠାରୁ ମନ୍ଦିର ପର୍ଯ୍ୟନ୍ତ ସୈନ୍ୟ ମୁତୟନ ହେବାକୁ ସ୍ଥିର ହୋଇଛି । କୁମାରୀ କନ୍ୟା ପାଦରେ ଚାଲି ଚାଲି ମନ୍ଦିରକୁ ଯାଆନ୍ତି । ମୁଁ ଯେତେବେଳେ ଦେବୀପୂଜନ ଯାତ୍ରାରେ ଯିବି ଓ ପୂଜା ସାରି ଫେରିବି, ସେତେବେଳେ ଆପଣ ବଳପୂର୍ବକ ମୋତେ ରଥରେ ନେଇ ବସାଇ ଦେବେ ଓ ଶତ୍ରୁଙ୍କର ଗର୍ବ ଗଞ୍ଜନ କରି ମୋତେ ଦ୍ୱାରକା ନେଇଯିବେ । ଏପରି କରିବା ଦ୍ୱାରା ଆପଣଙ୍କ କାର୍ଯ୍ୟ ସଫଳ ହେବ ଓ ମୋର ପରିବାର ବର୍ଗ ମଧ୍ୟ ଆପଣଙ୍କୁ ଆଉ ଆକ୍ରମଣ କରି ପାରିବେ ନାହିଁ ।

"କେବଳ ମୁଁ ଆଶା କରୁନାହିଁ ବରଂ ମୋର ପୂର୍ଣ୍ଣ ବିଶ୍ୱାସ ଯେ, ଆପଣ ଏ ଦାସୀର ଏତିକି ବିନତି ଉପରେ ନିଶ୍ଚୟ ଧ୍ୟାନ ଦେବେ । ଏ ଅବଳାର ପ୍ରାର୍ଥନା ଶୁଣି କୃପା କରିବେ । ଦେଖନ୍ତୁ, ତ୍ରିଭୁବନପତି ଭଗବାନ୍ ଶଙ୍କର ମଧ୍ୟ ଆପଣଙ୍କ ନାମକୁ ନିରନ୍ତର ଜପ କରୁଅଛନ୍ତି । ବଡ଼ ବଡ଼ ମହତ୍ ପୁରୁଷଗଣ ମଧ୍ୟ ନିଜ ନିଜର ଅନ୍ତଃକରଣରୁ ଅଜ୍ଞାନାନ୍ଧକାର ଦୂର କରିବା ପାଇଁ ସର୍ବଦା ବ୍ୟଗ୍ର । ଆପଣ ଦେବାଧିଦେବ, ଏଣେ

ମହାନ ହୋଇ କ'ଣ ଏ ଅସହାୟା ଅବଳା ପ୍ରତି ପ୍ରସନ୍ନ ହେବେ ନାହିଁ ? ଆପଣଙ୍କ କୃପାରୂପକ ପ୍ରସାଦ କ'ଣ ମୋତେ ପ୍ରଦାନ କରିବେ ନାହିଁ ? ଆପଣ ବିଶ୍ୱାସ କରନ୍ତୁ, ଯଦି ଆପଣ ଯଥା ସମୟରେ ଏଠାରେ ପଦାର୍ପଣ ନ କରନ୍ତି, ତାହାହେଲେ ମୋତେ ଆଉ ଜୀବିତ ଦେଖିବାକୁ ପାଇବେ ନାହିଁ । ମୁଁ ବନକୁ ପଳାଇବି ଓ ଏହି ସଙ୍କଳ୍ପ କରୁଛି ଯେ, ପର ଜନ୍ମରେ ମୋର ପତି ଭଗବାନ୍ ବାସୁଦେବ ହିଁ ହେବେ । ନଖାଇ ନପିଇ ଏ ନଶ୍ୱର ଶରୀରକୁ ଶୁଖାଇ ଶୁଖାଇ ତ୍ୟାଗ କରିଦେବି । ଯଦି ପୁନର୍ଜନ୍ମ ହୁଏ, ତେବେ ପୁନଶ୍ଚ ଏହା ହିଁ କରିବି । ଯେ ପର୍ଯ୍ୟନ୍ତ ଆପଣ ମୋତେ ପତ୍ନୀରୂପେ ଗ୍ରହଣ ନ କରିଛନ୍ତି, ସେ ପର୍ଯ୍ୟନ୍ତ ମୁଁ ଏହିପରି କରୁଥିବି । ଏଥିପାଇଁ ମୋତେ ଶତ ଶତ ଜନ୍ମ ନେବାକୁ ପଡ଼ିଲେ ମଧ୍ୟ ମୁଁ ମୋ ପ୍ରତିଜ୍ଞାରୁ ତିଳେହେଲେ ବିଚ୍ୟୁତ ହେବିନାହିଁ ।

"ହେ କମଳନୟନ ! ମୁଁ ଆଉ ଅଧିକ କିଛି ଲେଖୁନାହିଁ, ମୁଁ ମୋ ମନ କଥା ଏଥିରେ ଖୋଲି ଲେଖିଲି । ମୋ କର୍ତ୍ତବ୍ୟ ଏବେ ଶେଷ ହୋଇଛି, ଆପଣ ଯାହା ଉଚିତ୍ ମନେ କରନ୍ତି, କରିବେ ।

। ଇତି ।

ଆପଣଙ୍କ ଚରଣ-କମଳର ଜନ୍ମଜନ୍ମାନ୍ତରର ଦାସୀ,
ରୁକ୍ମଣୀ ।"

ସୂତ କହୁଛନ୍ତି—"ମୁନିଗଣ ! ପତ୍ର ପାଠକରି ବ୍ରାହ୍ମଣ ଦେବ ନେତ୍ରରୁ ଅଶ୍ରୁ ପୋଛି, ନୀରବ ହୋଇଗଲେ ଓ ଭଗବାନ୍ ମଧ୍ୟ ନିଜର ପିତାମ୍ବରରେ ନିଜ ନେତ୍ରରୁ ଅଶ୍ରୁ ପୋଛିଲେ । ତାଙ୍କର କଣ୍ଠ ରୁଦ୍ଧ ହୋଇଯାଇଥିଲା ! ତେଣୁ ସେ ଆଉ କିଛି କହି ପାରିଲେ ନାହିଁ । କିଛି ସମୟ ପର୍ଯ୍ୟନ୍ତ ଉଭୟେ ମୌନ ହୋଇ ରହିଲେ ।"

## ଛପ୍ପୟ

କମଲ ନୟନ ! ସଖି ସେନ ତୁଇତ କୁଣ୍ଡନପୁର ଆଓ ।
ରିପୁ ସିରପୈ ଧରି ଚରନ ମୋହିଁ ମାଧବ । ଲେ ଜାଓ ।।
ଜାଉଁ ବ୍ୟାହତେ ପ୍ରଥମ ଦିବସ ଦେବୀ ପୂଜନ ହିତ ।
ଲୈକେଁ ଭଗେଁ ମୋହି ନହୀଁ କ୍ଷତ୍ରିୟ କୂଁ ଅନୁଚିତ ।।
ଦୀନବନ୍ଧୁ ଦୁଖ ହରନ ଯଦି, ଦୟା ନ ଦାସୀ ପୈ କରହିଁ ।
ତୌ ତବ ତକ ଜନମୂଁ ମରୂଁ, ଜବ ତକ ନହିଁ ଯଦୁବର ବରହିଁ ।।

—*—

# କୁଣ୍ଡିନପୁରରେ ଶ୍ରୀହରି

ଆରୁହ୍ୟ ସ୍ୟନ୍ଦନଂ ଶୌରିର୍ଦ୍ଵିଜମାରୋପ୍ୟ ତୂର୍ଣଗୈଃ ।
ଆନର୍ତ୍ତାଦେକରାତ୍ରେଣ ବିଦର୍ଭାନଗମଦ୍ଧୟୈଃ ॥ *

( ଶ୍ରୀ ଭା: ୧୦ ସ୍କ, ୫୩ ଅ, ୬ ଶ୍ଳୋକ )

## ଛପ୍ପୟ

ସୁନେଇ ପ୍ରିୟା କୋ ପତ୍ର ନୟନ ହରି କେ ଭରି ଆୟେ ।
ପ୍ରେମ ବିବଶ ହ୍ୱୈ ଗୟେ ବିପ୍ର କୂଁ ବଚନ ସୁନାୟେ ॥
ଦ୍ୱିଜବର ! ମୋକୂଁ ପ୍ରିୟା ରୁକ୍ମିଣୀ ଅତିଶୟ ଭାବୈ ।
କରି କରି ବାକୀ ୟାଦି ରୈନମହଁ ନୀଂଦ ନ ଆବୈ ॥
ଚଲେ ଚଲେଂ କୁଁଡିନପୁରୀ, ଅବ ଦ୍ୱୈ ଦିନ ହୀ ରହି ଗୟେ ।
ସଜି ରଥ ଦ୍ୱିଜ କୂଁ ସଙ୍ଗ ଲୈ, ବଧୂ ହରନ ହରି ଚଲି ଦୟେ ॥

ଭଗବାନଙ୍କର ଜନ୍ମମୃତ୍ୟୁ ନାହିଁ । ତାଙ୍କର କୌଣସି କର୍ତ୍ତବ୍ୟ ନାହିଁ କି ଅକର୍ତ୍ତବ୍ୟ ନାହିଁ । ତାଙ୍କର କୌଣସି ରୂପ କିମ୍ବା ନାମ ନାହିଁ । ତଥାପି ସେ ଭକ୍ତଙ୍କ ନିମିତ୍ତ ରୂପ ଧାରଣ କରି ସେମାନଙ୍କ ଇଚ୍ଛା ପୂର୍ଣ୍ଣ କରନ୍ତି । ଭକ୍ତଙ୍କ ଇଚ୍ଛା ହିଁ ତାଙ୍କ ଇଚ୍ଛା । ଭକ୍ତଙ୍କ ପାଇଁ ସେ ସବୁକିଛି କରିବା ପାଇଁ ଉଦ୍ୟତ ହୋଇଯାଆନ୍ତି । ଏଥିପାଇଁ ତାଙ୍କୁ

---

* ଅନନ୍ତେ ବିପ୍ର କର ଧରି । ରଥେ ବସିଲେ ନରହରି ॥
ଦାରୁକ ରଥ ବାହେ ବଳେ । ଶୂନ୍ୟେ ଗମିଲେ ରାତିକାଳେ ॥
କୁଣ୍ଡୀ ନଗରେ ଏକ ରାତେ । ମିଳିଲେ ଅଳପ ପ୍ରଭାତେ ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ, ୧୦, ଅ ୫୬.)

"ଭକ୍ତବାଞ୍ଛାକଳ୍ପତରୁ" କୁହାଯାଏ । ଭକ୍ତଙ୍କ ପ୍ରତି ଅନୁଗ୍ରହ କରିବା ନିମିତ୍ତ ସେ ସର୍ବଦା କାତର ହୁଅନ୍ତି । ସେ ସବୁକିଛି ସହ୍ୟ କରନ୍ତି, କିନ୍ତୁ ଅଧିକ ଦିନ ପର୍ଯ୍ୟନ୍ତ ଭକ୍ତଙ୍କୁ କଷ୍ଟ ହେବା ସହ୍ୟ କରିପାରନ୍ତି ନାହିଁ ।

ସୂତ କହୁଛନ୍ତି—"ମୁନିଗଣ ! ଯେତେବେଳେ ବୃଦ୍ଧ ବ୍ରାହ୍ମଣ ରୁକ୍ମିଣୀଙ୍କ ପତ୍ର ପଢ଼ି ଶୁଣାଇ ଦେଲେ, ସେତେବେଳେ ଭଗବାନ ତାହା ଶୁଣି କିଛି ସମୟ ମୌନ ରହିଲେ । ବ୍ରାହ୍ମଣ ମଧ୍ୟ ଚୁପ୍ ହୋଇଗଲେ । ରାଜମହଲ ଏକପ୍ରକାର ସ୍ତବ୍ଧ ହୋଇଗଲା । ସେହି ସ୍ତବ୍ଧତାକୁ ଭଙ୍ଗକରି କିଛି ସମୟ ପରେ ବିପ୍ରଦେବ କହିଲେ—"ପ୍ରଭୋ ! ମୁଁ ରାଜକୁମାରୀ ରୁକ୍ମିଣୀଙ୍କୁ କ'ଣ କହିବି, ତାହା ମୋତେ କୁହନ୍ତୁ । ମୋତେ ଅତ୍ୟନ୍ତ ବିଶ୍ୱାସ କରୁଥିବାରୁ ସେ ଏହି ଗୁପ୍ତ ସନ୍ଦେଶ ମୋ ଦ୍ୱାରା ଆପଣଙ୍କ ପାଖକୁ ପଠାଇଛନ୍ତି । ଏହା ଉପରେ ଆପଣଙ୍କ ଯାହା କର୍ତ୍ତବ୍ୟ ତାହା ଆପଣ ଅବଲମ୍ବନ କରନ୍ତୁ । ଡେରି କରିବା ଆଦୌ ଉଚିତ ନୁହେଁ । ରାଜକୁମାରୀଙ୍କ ଅବସ୍ଥା ଅତ୍ୟନ୍ତ ଦୟନୀୟ । ସେ ଜାଲରେ ପଡ଼ିଥିବା ମାଛଭଳି ଛଟପଟ ହେଉଛନ୍ତି । ଆପଣ ତାହା ଜାଣିପାରୁ ନ ଥିଲେ ମଧ୍ୟ ତାଙ୍କ ହୃଦୟରେ ଆପଣଙ୍କ ପ୍ରତି ଅତ୍ୟନ୍ତ ଅନୁରାଗ । ବିଳମ୍ବ ହେଲେ ଅନର୍ଥ ଘଟିବାର ଆଶଙ୍କା ରହିଛି । ଆପଣ ଜଣେ ଅପରିଚିତା ଭକ୍ତ ଓ ଅନୁରକ୍ତା ଅବଳାକୁ ଉଦ୍ଧାର କରନ୍ତୁ । ସେ ନିରନ୍ତର ଆପଣଙ୍କୁ ଚିନ୍ତା କରୁଅଛନ୍ତି ।"

ବ୍ରାହ୍ମଣଙ୍କ ମୁଖରୁ "ଅପରିଚିତା" ଶବ୍ଦ ଶୁଣି ଭଗବାନଙ୍କୁ ହସ ଲାଗିଲା । ସେ ହସି ହସି ପ୍ରେମପୂର୍ବକ ବ୍ରାହ୍ମଣଙ୍କ ହାତକୁ ଧରି ଅତ୍ୟନ୍ତ ମଧୁର ବାଣୀରେ କହିଲେ—"ବିପ୍ରଦେବ ! ମୋ ପାଇଁ ରୁକ୍ମିଣୀ ଅପରିଚିତା ନୁହନ୍ତି । ହେ ଦ୍ୱିଜର୍ଷଭ ! ପ୍ରେମ କଦାପି ଏକ ପକ୍ଷରୁ ହୁଏନାହିଁ । ଏହା କଦାପି ସମ୍ଭବ ନୁହେଁ ଯେ, ଯିଏ ମୋତେ ପ୍ରେମ କରେ, ତା ପ୍ରତି ମୋ ହୃଦୟ ଅନୁରାଗ ଶୂନ୍ୟ ହେବ । କୁକୁରଟିକୁ ଭଲ ପାଇଲେ ସେ ମଧ୍ୟ ଲାଙ୍ଗୁଡ଼ ହଲାଇ ଆସି ପାଦ ଚାଟିବାକୁ ଆରମ୍ଭ କରେ । ସିଂହ ମଧ୍ୟ ପ୍ରେମବଶତଃ ପଛେ ପଛେ ଚାଲିଥାଏ, ଅନ୍ୟମାନଙ୍କ କଥା ଆଉ କ'ଣ କହିବି ! ଯଦି ପାଷାଣକୁ ହୃଦୟରେ ପ୍ରେମ କରାଯାଏ, ତେବେ ତାହା ମଧ୍ୟ ତରଳିଯାଏ । ସଜୀବ ମନୁଷ୍ୟଙ୍କ କଥା ତ ସ୍ୱତନ୍ତ୍ର ! ତୁମ ରାଜକୁମାରୀ ଯେପରି ମୋ ପାଇଁ ବ୍ୟାକୁଳ ହେଉଛନ୍ତି, ମୁଁ ମଧ୍ୟ ତାଙ୍କପାଇଁ ସର୍ବଦା ବ୍ୟାକୁଳ ହେଉଅଛି । ଦିବସରେ ସର୍ବଦା ତାଙ୍କୁ ଚିନ୍ତା କରୁଛି, ରାତିରେ ମଧ୍ୟ ତାଙ୍କ ସ୍ମୃତିରେ ମୋତେ ନିଦ୍ରା ଆସୁନାହିଁ । କିଛିକ୍ଷଣ ଚକ୍ଷୁ ମୁଦ୍ରିତ ହୋଇ ଆସିବାମାତ୍ରେ ମୁଁ ତାଙ୍କୁ ହିଁ ସ୍ୱପ୍ନ ଦେଖୁଛି । କଡ଼ ଲେଉଟାଇ ଲେଉଟାଇ ରାତି ବିତାଇ ଦେଉଛି ।"

ବ୍ରାହ୍ମଣ କହିଲେ—"ତାହିଁକି ଅବା ନ ହେଉଥିବ, ଭଗବାନ୍ ! ପୂର୍ବଜନ୍ମ ସମ୍ବନ୍ଧରୁ ତ ପ୍ରେମ ହୋଇଥାଏ । ବୋଧହୁଏ ପୂର୍ବ ଜନ୍ମରେ ସେ ଆପଣଙ୍କର ପତ୍ନୀ ଥିଲେ ।

ତେଣୁ ଆପଣ ଓ ତାଙ୍କ ମଧ୍ୟରେ ଏତେ ସ୍ୱାଭାବିକ ସହଜ ଅନୁରାଗ । ମହାରାଜ ଭୀଷ୍ମକଙ୍କର ତ ଷୋଳଅଣା ଇଚ୍ଛା ଥିଲା ଯେ କୁମାରୀଙ୍କର ବିବାହ ଆପଣଙ୍କ ସହିତ ହେବ, କିନ୍ତୁ ବଡ଼ ରାଜକୁମାର ସେ ଆଶା ଭଣ୍ଡୁର କରିଦେଲେ ।"

ଭଗବାନ ହୃଦ୍‌ଗତାର ସହିତ କହିଲେ—"ବ୍ରାହ୍ମଣ ଦେବ ! ସେଥିରେ କିଛି ଯାଏ ଆସେ ନାହିଁ, ମୁଁ ସମସ୍ତ କଥା ଜାଣେ । ରୁକ୍ମୀ ଖଳ ସ୍ୱଭାବର ଲୋକ । ସେ ଦ୍ୱେଷବଶତଃ ମୋ ସହିତ ନିଜ ଭଉଣୀର ବିବାହ କରିବାକୁ ଉଚିତ ମନେକରୁ ନାହିଁ । ତେଣୁ ବିଘ୍ନ ସୃଷ୍ଟି କରୁଛି । କିନ୍ତୁ ସେ ଏ ବିବାହକୁ ଅଟକାଇ ପାରିବ ନାହିଁ । ଆପଣ ଦେଖିବେ, ମୁଁ କିପରି ମୋ ପ୍ରିୟାର ମନୋରଥ ପୂର୍ଣ୍ଣ କରିବି ? ଯେପରି ସ୍ତ୍ରୀଲୋକମାନେ ଦହି ଘୋଳାଇ ତହିଁରୁ ଲହୁଣି ବାହାର କରି ନିଅନ୍ତି, ଯେପରି ତେଲ ଘାଣିକୁ ପେଡ଼ି ତହିଁରୁ ତେଲ ବାହାର କରେ ଓ ଯେପରି ଯାଜ୍ଞିକ ବ୍ରାହ୍ମଣ ଅରଣିକୁ ମନ୍ଥି ତହିଁରୁ ଅଗ୍ନି ବାହାର କରେ, ସେହିପରି ଏହି ଦୁଷ୍ଟ ରାଜାମାନଙ୍କର ସେନାକୁ ମୁଁ ଦମନ କରି ମୋର ଏକମାତ୍ର ଅନୁରକ୍ତା, ଭକ୍ତ ଓ ଅନିନ୍ଦିତାଙ୍ଗୀ ରାଜକୁମାରୀଙ୍କୁ ନେଇ ଆସିବି । ବ୍ରାହ୍ମଣ ଦେବ ! ଆପଣ ଆଶୀର୍ବାଦ କରନ୍ତୁ, ମୁଁ ଯେପରି ନିଜ କାର୍ଯ୍ୟରେ ସଫଳ ହୁଏ ।"

ବ୍ରାହ୍ମଣ କହିଲେ—"ପ୍ରଭୋ ! ଆପଣ ସତ୍ୟସଂକଳ୍ପ ଅଟନ୍ତି, ସର୍ବ ସମର୍ଥ ଅଟନ୍ତି, ଆପଣଙ୍କ ପକ୍ଷେ କୌଣସି କଥା ଅସମ୍ଭବ ନୁହେଁ । ଆପଣଙ୍କ ସଂକଳ୍ପମାନେ ହିଁ ଅଗଣିତ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ପ୍ରଳୟ ହେଉଅଛି । କିନ୍ତୁ ହେ ଭଗବାନ୍ ! ଏବେ ଆଉ ଡେରି କରନ୍ତୁ ନାହିଁ । ପରଦିନ କନ୍ୟାର ବିବାହ ନକ୍ଷତ୍ର ସ୍ଥିରିଛି । କାଲି ଭିତରେ ଆପଣ ନ ପହଞ୍ଚି ପାରିଲେ ଆପଣ ଆଉ ରାଜକୁମାରୀଙ୍କୁ ଜୀବିତ ଦେଖିବାକୁ ପାଇବେ ନାହିଁ ।"

ଭଗବାନ୍ କହିଲେ—"ବିପ୍ରଦେବ ! ଆପଣ ଚିନ୍ତା କରନ୍ତୁ ନାହିଁ, କାଲି ପ୍ରାତଃ କାଳରେ ଆପଣ ସୂର୍ଯ୍ୟଦେବଙ୍କୁ କୁଣ୍ଡିନପୁରଠାରେ ଅର୍ଘ୍ୟ ପ୍ରଦାନ କରୁଥିବେ ।" ଏହା କହି ଭଗବାନ୍ ମଧୁସୂଦନ ସଙ୍ଗେ ସଙ୍ଗେ ସେବକଙ୍କୁ ଆଦେଶ ଦେଲେ, "ଯାଅ ଦାରୁକ ସାରଥୀକୁ ଡ଼ାକିଦିଅ ।" ଆଜ୍ଞା ପାଇବା ମାତ୍ରେ ଦାରୁକ ଧାଇଁଆସି ହାତଯୋଡ଼ି ଅଭିବାଦନ ପୂର୍ବକ ନମ୍ରତା ଭାବରେ କହିଲା—"ପ୍ରଭୋ ! ସେବକ ସମୁପସ୍ଥିତ, ଆଦେଶ କରନ୍ତୁ ।"

ଭଗବାନ୍ କହିଲେ—"ଦେଖ ଦାରୁକ ! ତୁମେ ଶୀଘ୍ର ରଥ ବାହାର କର, ଆଉ ବିଳମ୍ବ କରନାହିଁ ।"

ନତ ମସ୍ତକ ହୋଇ ପ୍ରଣାମ କରି ଦାରୁକ କହିଲା, "ମୁଁ ସଙ୍ଗେ ସଙ୍ଗେ ରଥ ନେଇ ଆସୁଛି ।"

ଏହା କହି ସେ ଅତିଶୀଘ୍ର ଅଶ୍ୱଶାଳାକୁ ଯାଇ ସେଠାରୁ ଭଗବାନଙ୍କର ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପ ଓ ବଳାହକ ନାମକ ଚାରି ଦିବ୍ୟ ଅଶ୍ୱଙ୍କୁ ଫିଟାଇ, ଅଭିଷେକ ସଜ କରାଇଲି ଓ ସୁବର୍ଣ୍ଣମଣ୍ଡିତ ଦିବ୍ୟ ରଥରେ ତାଙ୍କୁ ଯୋଚିଲି । ରଥକୁ ଉତ୍ତମ ରୂପେ ପରିଷ୍କାର କରି ତା ଉପରେ ବସ୍ତ୍ର ସଜାଇ ଉପରେ ବିଶାଳ ଗରୁଡ଼ ଧ୍ୱଜା ବାନ୍ଧି ଦେଲି । ଏହିପରି ରଥକୁ ସଜ୍ଜିତ କରି ସେ ଅଳ୍ପ ସମୟ ମଧ୍ୟରେ ସିଂହଦ୍ୱାର ସମ୍ମୁଖକୁ ନେଇ ଆସିଲି ଓ ହାତ ଯୋଡ଼ି ଭଗବାନଙ୍କୁ ତାହା ସୂଚନା ଦେଲି ।'' (୧)

ଭଗବାନ୍ ପୀତାମ୍ବର ପରିଧାନ କରି ନିଜର ଅସ୍ତ୍ର-ଶସ୍ତ୍ରରେ ସୁସଜ୍ଜିତ ହୋଇ ରଥକୁ ପ୍ରତୀକ୍ଷା କରିଥିଲେ । ଦାରୁକ କଥା ଶୁଣି ସେ ବ୍ରାହ୍ମଣଙ୍କୁ କହିଲେ -- ''ଚାଲନ୍ତୁ ମହାଶୟ, ଆଉ ବିଳମ୍ବ କରିବା ଉଚିତ ନୁହେଁ ।'' ଏହା ଶୁଣି ବ୍ରାହ୍ମଣ ନିଜର ପୁଡ଼ା ପୁଟୁଳି ଧରି ବାହାରି ପଡ଼ିଲେ ଓ ରଥ ନିକଟରେ ଯାଇ ପହଞ୍ଚିଲେ । ଭଗବାନ କହିଲେ -''ଏବେ ରଥ ଉପରେ ବିରାଜମାନ କରନ୍ତୁ ।''

ବ୍ରାହ୍ମଣ କହିଲେ ''ମହାରାଜ ! ପ୍ରଥମେ ଆପଣ ହିଁ ବିରାଜମାନ କରନ୍ତୁ ।''

ଭଗବାନ୍ କହିଲେ —''ବ୍ରହ୍ମନ୍ ! ଆପଣ କିପରି ନୀତି ବିରୁଦ୍ଧ କଥା କହୁଛନ୍ତି ? ପ୍ରଥମେ ବ୍ରାହ୍ମଣ ନ ବସିଲେ ମୁଁ କିପରି ବସିବି ? ଆପଣ ପ୍ରଥମେ ବିରାଜମାନ କରନ୍ତୁ ।'' ଭଗବାନଙ୍କ କଥା ମାନି ବ୍ରାହ୍ମଣ ରଥ ଉପରେ ଯାଇ ବସିଲେ, ପରେ ଭଗବାନ୍ ବସିଲେ । ଦାରୁକ ଅଶ୍ୱଙ୍କ ଲଗାମ ଟାଣି ଅଡ଼ାଇବା କ୍ଷଣି ଅଶ୍ୱ ପବନ ବେଗରେ ଦଉଡ଼ିବାକୁ ଆରମ୍ଭ କଲେ । ରଥ ଏତେ ବେଗରେ ଚାଲୁଥିଲା ଯେ, ଦେଖଣାହାରିମାନେ ମନେ କରୁଥିଲେ, ସତେ ଯେପରି ତାହା ଆକାଶରେ ଉଡ଼ୁଅଛି । ଏପରି ଦ୍ରୁତଗାମୀ ଅଶ୍ୱଙ୍କଦ୍ୱାରା ଟଣାଯାଉଥିବା ରଥରେ ବସି ଭଗବାନ୍ ରାତ୍ରିକ ମଧ୍ୟରେ କୁଶସ୍ଥଳୀ ଦ୍ୱାରକାପୁରୀରୁ ଯାଇ ଆନର୍ତ୍ତର ରାଜଧାନୀ କୁଣ୍ଡିନପୁରଠାରେ ପହଞ୍ଚିଗଲେ ।

ସୂତ କହୁଛନ୍ତି ''ମୁନିଗଣ ! ଏବେ ମୁଁ କୁଣ୍ଡିନପୁର ସମ୍ବନ୍ଧରେ କିଛି କହୁଛି, ଶୁଣନ୍ତୁ । ରାଜା ଭୀଷ୍ମକ ଶିଶୁପାଳ ସହିତ ରୁକ୍ମିଣୀଙ୍କର ବିବାହ ଚାହୁଁ ନଥିଲେ, ସେ ଭଗବାନ୍ ବାସୁଦେବଙ୍କ ସହିତ କନ୍ୟାକୁ ବିବାହ ଦେବାକୁ ହିଁ ଚାହୁଁଥିଲେ । କିନ୍ତୁ ଯେତେବେଳେ ପୁତ୍ରକୁ ଷୋଳ ବର୍ଷ ବୟସ ହୋଇଯାଇଛି, ସେତେବେଳେ ତା ସହିତ ମିତ୍ରବତ୍ ବ୍ୟବହାର କରିବା କର୍ତ୍ତବ୍ୟ ବୋଲି ମନେକଲେ । ସମର୍ଥ ଶ୍ରେଷ୍ଠ ପୁତ୍ରର ବିନା

---

(୧) ଶୁଣି ଦାରୁକ ଯାଇ ବେଗେ । ରଥ ସାଜିଲା ଅତି ବ୍ୟଗ୍ରେ ॥
ଶୈବ୍ୟ ସୁଗ୍ରୀବ ମେଘପୁଷ୍ପ । ଯୋଚିଲା ବଳାହକ ଅଶ୍ୱ ॥
ଗୋବିନ୍ଦ ନିକଟେ ମିଳିଲା । କର ଅଞ୍ଜଳି ଶିରେ ଦେଲା ॥
(ଭଗବତ : ଜଗନ୍ନାଥ ଦାସ : ସ୍କ ୧୦ମ : ୫୭ଅ)

ସମ୍ବନ୍ଧରେ ପିତା ନିଜ ଇଚ୍ଛାରେ କୌଣସି କାର୍ଯ୍ୟ କରିବା ଉଚିତ୍ ନୁହେଁ । ଯେଉଁଥିରେ, ଗୃହ କଳହ ନ ଉପୁଜିବ ଓ ପରିବାରରେ ବିରୋଧ ଉତ୍ପନ୍ନ ନ ହେବ, ସେଥିପାଇଁ ପୁତ୍ରସ୍ନେହରେ ବଶୀଭୂତ ହୋଇ ସେ ମଧ୍ୟ ରୁକ୍ମିଣୀଙ୍କର ବିବାହ ଶିଶୁପାଳ ସହିତ ହେବାପାଇଁ ସମ୍ମତ ହେଲେ । ନଗରରେ ମଧ୍ୟ ଖୁବ୍ ଜାକ୍‌ଜମକରେ ବିବାହୋତ୍ସବ ହେବାକୁ ସମସ୍ତ ପ୍ରକାର ପ୍ରସ୍ତୁତି ହୋଇଗଲା । ସମଗ୍ର ନଗରୀ ଅତି ସୁନ୍ଦର ଭାବରେ ସଜାସଜି ହେଲା । ସମସ୍ତ ବଡ଼ ବଡ଼ ରାଜପଥ, ଗଳି, ଚଉଛକ, ସଭାଗୃହ ଓ ଅନ୍ୟାନ୍ୟ ସାର୍ବଜନୀନ ସ୍ଥାନ ପରିଷ୍କାର ପରିଚ୍ଛନ୍ନ ହୋଇ ସୁନ୍ଦର ଭାବରେ ସାଜସଜା ହୋଇଗଲା । ସୁବାସିତ ଜଳ ଛିଞ୍ଚିଆଡ଼େ ସିଞ୍ଚନ କରାଗଲା ।ଚିତ୍ରିତ ଧ୍ୱଜା ତୋରଣ ଆଦିରେ ସଜାଗଲା । ନଗରୀର ମୁଖ୍ୟ ଦ୍ୱାର କଳାପୂର୍ଣ୍ଣ ଢ଼ଙ୍ଗରେ ଉତ୍ତମ କାରିଗରଙ୍କ ଦ୍ୱାରା ସଜାଗଲା । ପ୍ରତ୍ୟେକ ନଗର ବାସୀ ନିଜ ନିଜ ଘର ମଧ୍ୟ ସଜାଇଲେ । ଏପରି ପ୍ରତୀତ ହେଉଥିଲା ଯେ, ସତେ ଯେପରି ପ୍ରତ୍ୟେକଙ୍କ ଘରେ ଶୁଭ ବିବାହୋତ୍ସବ ହେଉଅଛି । ନଗରର ପ୍ରତ୍ୟେକ ନରନାରୀ ପୁଷ୍ପମାଳ୍ୟ, ସୁଗନ୍ଧିତ ଚନ୍ଦନ, ଅମୂଲ୍ୟ ହାର, ଦିବ୍ୟ ଆଭୂଷଣ ଓ ସୁନ୍ଦର ସୁନ୍ଦର ବହୁମୂଲ୍ୟ ବସ୍ତ୍ରରେ ସୁସଜ୍ଜିତ ହୋଇ ପ୍ରମୁଦିତ ହେଉ ଥାଆନ୍ତି । ଛୋଟ ପିଲାମାନେ ଆନନ୍ଦ ମନରେ ନୂତନ ନୂତନ ବସ୍ତ୍ର ପରିଧାନ କରି ବର ଦର୍ଶନ ଇଚ୍ଛାରେ ଅତ୍ୟନ୍ତ ଉତ୍କଣ୍ଠାର ସହିତ ଏଣେତେଣେ ଦଉଡ଼ାଦଉଡ଼ି କରୁଥାଆନ୍ତି । ନଗରର ସମସ୍ତ ଭବ୍ୟ ଭବନ ଧୂପ, ଅଗୁରୁ ଓ ଅନ୍ୟାନ୍ୟ ସୁଗନ୍ଧିତ ଦ୍ରବ୍ୟର ଧୂମରେ ସୁବାସିତ ଭରି ରହିଥାଏ । ବିଭିନ୍ନ ବାଦ୍ୟ ନାଦରେ ଚତୁର୍ଦ୍ଦିଗ ମୁଖରିତ ହେଉଥାଏ । ରାଜଧାନୀ ସାଜ ସଜା ହୋଇ ଶ୍ରୀସମ୍ପନ୍ନ ଓ ଅତ୍ୟନ୍ତ ଶୋଭନୀୟ ହୋଇଥାଏ ।

ବିବାହ ପୂର୍ବରୁ ଯେଉଁ ବୈଦିକ କର୍ମ କରାଯିବା ବିଧି, ତାହା ଭୀଷ୍ମକ ସମ୍ପାଦନ କରି ଦେବ ପୂଜନ ଓ ବ୍ରାହ୍ମଣ ଭୋଜନ ଆଦି କରାଇଥାଆନ୍ତି । ବିଶିଷ୍ଟ ବିଶିଷ୍ଟ ବେଦଜ୍ଞ ବ୍ରାହ୍ମଣ ସୁମଧୁର ସ୍ୱରରେ ବେଦମନ୍ତ୍ର ଉଚ୍ଚାରଣ କରୁ ଥାଆନ୍ତି । ବିବାହର ନିୟମାନୁସାରେ ମଙ୍ଗଳାଷ୍ଟକ ଆଦି ପାଠ କରୁଥାଆନ୍ତି ।

ରୁକ୍ମିଣୀଦେବୀଙ୍କୁ କେତେକ ଦିନ ପୂର୍ବରୁ ହଳଦୀ ତେଲ ଆଦି ଲଗାଇ ଦିଆଯାଉଥାଏ । ଶିଶୁପାଳ ନାମ ଶୁଣିବା ମାତ୍ରେ ସେ ଡରି ଯାଉଥାଆନ୍ତି । ତା କଥା ମନେ ପଡ଼ିଗଲେ ସେ ମୂର୍ଚ୍ଛିତା ହୋଇ ଯାଉଥାଆନ୍ତି । କାନ୍ଦି କାନ୍ଦି ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇ ଯାଇ ଥାଏ, ଏକାନ୍ତରେ ବସି ସେ ସର୍ବଦା କାନ୍ଦୁଥାଆନ୍ତି । ସେବିକାମାନେ ଶିଶୁପାଳଙ୍କ ଖବର କହି ଓ ଭାବୀ ପତିଙ୍କ ସମ୍ବନ୍ଧରେ ଅନେକ ପ୍ରକାର କଥା କହି ତାଙ୍କୁ ହସାଇବାକୁ ଚେଷ୍ଟା କରୁଥାଆନ୍ତି । କିନ୍ତୁ ସେମାନଙ୍କର ସମସ୍ତ ଚେଷ୍ଟା ନିଷ୍ଫଳ ହୋଇ ଯାଉଥାଏ । ରୁକ୍ମିଣୀ ଆଦୌ ହସୁ ନ ଥାନ୍ତି । ତାଙ୍କ ହୃଦୟ ସହଜରେ ଦୁଃଖରେ ଭରି ରହିଥାଏ କି ସେ ନିରନ୍ତର ଶ୍ୟାମସୁନ୍ଦରଙ୍କୁ ସ୍ମରଣ କରୁ ଥାଆନ୍ତି ।

ସେବକାଗଣ ଚିନ୍ତା କରୁଥାଆନ୍ତି, "ରାଜକୁମାରୀ ନିଜର ମାତା ପିତାଙ୍କର ଅତି ଅଲିଅଳୀ କନ୍ୟା ହୋଇଥିବାରୁ ତାଙ୍କୁ ଛାଡ଼ି ରହି ପାରିବେନାହିଁ ବୋଲି ମନ ଦୁଃଖ କରୁଛନ୍ତି" ।

ବିବାହର ପୂର୍ବଦିନ ରାଜକୁମାରୀଙ୍କୁ ଔଷଧୀୟ ତୈଳ ଆଦି ଲଗାଇ ବିଧିବଦ୍ଧ ସ୍ନାନ କରାଗଲା । ତାଙ୍କ ବାହୁରେ କଙ୍କଣ ପିନ୍ଧାଇ ଦିଆଗଲା । ଦାସୀଗଣ ଅତ୍ୟନ୍ତ ସୁନ୍ଦର ବହୁମୂଲ୍ୟ ରେଶମୀ ଶାଢ଼ୀ ତାଙ୍କୁ ପିନ୍ଧାଇଦେଲେ ଓ ରେଶମୀ ଓଢ଼ଣୀ ଶିରରେ ପକାଇଦେଲେ । ଚିତ୍ର ବିଚିତ୍ର ଆଭୂଷଣରେ ତାଙ୍କୁ ବିଭୂଷିତ କରାଗଲା । ତାଙ୍କୁ ଏହିପରି ବେଶ କରାଇ ମଣ୍ଡପ ଉପରକୁ ଅଣାଗଲା । ନବବଧୂ ବେଶରେ ସଜାହୋଇ ସେ ସାକ୍ଷାତ୍ ଲକ୍ଷ୍ମୀଙ୍କ ଅବତାର ଭଳି ଦେଖା ଯାଉଥିଲେ । ତାଙ୍କ ଶୋଭା ସେତେବେଳେ ଅବର୍ଣ୍ଣନୀୟ ଥିଲା; କିନ୍ତୁ ଚିନ୍ତାରେ ତାଙ୍କ ମୁଖକମଳ ମ୍ଳାନ ପଡ଼ିଯାଇଥିଲା । ବିଷାଦର ରେଖା ତାଙ୍କ ମୁଖରୁ ସ୍ପଷ୍ଟ ପ୍ରତୀୟମାନ ହେଉଥିଲା । ବ୍ରାହ୍ମଣଗଣ ରୁକ୍ମିଣୀଙ୍କୁ ବେଦମନ୍ତ୍ରରେ ଅଭିମନ୍ତ୍ରିତ କରି ଦିଗ୍‌ବନ୍ଧନାଦି କରୁଥିଲେ ଓ ମଙ୍ଗଳାଷ୍ଟକ ପାଠ କରୁଥିଲେ । ଗ୍ରହଶାନ୍ତି ପାଇଁ କେତେକ ଅଥର୍ବବେଦୀ ବ୍ରାହ୍ମଣ ହୋମ ଆଦି କରୁଥିଲେ । କନ୍ୟାର ଅଭ୍ୟୁଦୟ ନିମିତ୍ତ ଉଦାରମନା ମହାରାଜ ଭୀଷ୍ମକ ବ୍ରାହ୍ମଣମାନଙ୍କୁ ଯଥେଷ୍ଟ ସୁବର୍ଣ୍ଣ, ରଜତ, ବସ୍ତ୍ର ଓ ଗୁଡ଼ମିଶ୍ରିତ ତିଳମୋଦକ ଏବଂ ଅନେକ ଗାଭୀ ଦାନ କରୁଥିଲେ । ରାଜକନ୍ୟାଙ୍କ ବିବାହ ଉତ୍ସବ ଉପଲକ୍ଷେ ସାରା ରାଜ୍ୟରେ ଆନନ୍ଦୋଲ୍ଲାସ ଭରି ଯାଇଥିଲା ।

ଏହା ତ ଥିଲା କନ୍ୟାପକ୍ଷର ଘଟଣା । ସେହିପରି ବର ପକ୍ଷରେ ମଧ୍ୟ ବିବାହୋ- ତ୍ସବ ଅତି ଆଡ଼ମ୍ବର ସହକାରେ ପାଳନ କରାଯାଉଥିଲା । ଚେଦି ରାଜ୍ୟର ମହାରାଜ ଦମଘୋଷ ଜଣେ ବିଖ୍ୟାତ ନୃପତି ଥିଲେ । ସେଥିପାଇଁ ସେ ମଧ୍ୟ ନିଜ ପୁତ୍ର ଶିଶୁପାଳର ଅଭ୍ୟୁଦୟ ନିମିତ୍ତ ଦାନ, ପୁଣ୍ୟ, ପୂଜା, ହୋମ, ସ୍ୱସ୍ତ୍ୟୟନ, ମଙ୍ଗଳାଚରଣ ଓ ଅନ୍ୟାନ୍ୟ ମଙ୍ଗଳକୃତ୍ୟ କରାଇଥିଲେ । ସ୍ତ୍ରୀ ଲୋକମାନେ ବରକୁ ଅଶ୍ୱ ଉପରେ ଉପବେଶନ କରାଇ ବାଦ୍ୟ ଶଙ୍ଖ ପଟୁଆର ସହିତ ଯାଇ କୂପପୂଜନ ଆଦି କରାଇଥିଲେ । ଶିଶୁପାଳ ନିଜ ମାତାଙ୍କଠାରୁ ସ୍ତନ ପାନ କଲା ଓ କହିଲା—"ମା ! ମୁଁ ତୁମ ପାଇଁ ବଧୂ ଆଣିବି" । ତା ଭାଉଜମାନେ ତା ନେତ୍ରରେ କଜଳ ପିନ୍ଧାଇ ଦେଇ ବନ୍ଦାପନା କଲେ ଓ କହିଲେ—"ଭଲ ବୋହୂଟିଏ ନେଇ କରି ଆସିବ" । ଏହାପରେ ନଗର ପରିକ୍ରମା କରାଇ ସେନା ଗହଣରେ ଶିଶୁପାଳ ବିବାହ କରିବା ପାଇଁ କୁଣ୍ଡିନପୁର ଯାତ୍ରା କଲା । ବଡ଼ ବଡ଼ ମତୁଆଲା ହସ୍ତୀ, ଯାହାଙ୍କ ଗଣ୍ଡସ୍ଥଳରୁ କି ମଦ କ୍ଷରିତ ହେଉଥିଲା, ସଜୀବ ପାହାଡ଼ ଭଳି ସେମାନେ ଯାତ୍ରା କରୁଥିବା ବେଳେ ଦେଖା ଯାଉଥିଲେ । ତାଙ୍କ ବେକରେ ଝୁଲୁଥିବା ବଡ଼ ବଡ଼ ଘଣ୍ଟି ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ ହେଉଥିଲା । ଘୋଡ଼ା ସବାର- ମାନେ ଘୋଡ଼ାଙ୍କୁ ନଚାଇ ନଚାଇ ଚାଲୁଥିଲେ ଓ ବିଭିନ୍ନ କଳା ପ୍ରଦର୍ଶନ କରାଉଥିଲେ । ରଥ ଧୂଳିରେ ଆକାଶ ମଣ୍ଡିତ ହୋଇ ଚତୁର୍ଦ୍ଦିଗ ଧୂମ୍ରମୟ ଦେଖାଯାଉ ଥିଲା । ଅସ୍ତ୍ର

ଗନ୍ଧର୍ବଙ୍କ ସହସ୍ର ସହସ୍ର ସେନା ପାଦରେ ଚାଲି ଚାଲି ଯାତ୍ରା କରୁଥିଲେ । ପଦାତିକ ସୈନ୍ୟମାନଙ୍କ ମଝିରେ ଦୋଳାସଜ୍ଜିତ ପାଲିଙ୍କିରେ ବସି ଶିଶୁପାଳ ଆଗେ ଆଗେ ଯାଉଥିଲେ । ଯଥା ସମୟରେ ଚେଦି ରାଜ୍ୟର ମହାରାଜଙ୍କ ବରଯାତ୍ରୀ କୁଣ୍ଡିନପୁରର ଏକ ବଗିଚାରେ ଯାଇ ଅଟକିଲେ ।

ବିଦର୍ଭରାଜ ଭୀଷ୍ମକ ବରଯାତ୍ରୀଙ୍କ ଆଗମନ ସମାଚାର ଶୁଣି ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ସଙ୍ଗେ ସଙ୍ଗେ ମନ୍ତ୍ରୀ ଓ ହଜାର ହଜାର ସୈନ୍ୟସାମନ୍ତ ସଙ୍ଗରେ ନେଇ ବରକୁ ବାଟବରଣ କରି ଆଣିବାକୁ ଗଲେ । ସେଠାରେ ପହଞ୍ଚି ସେ ଯଥାବିଧି ବରର ବାଟବରଣ ଆଦି କରି ସ୍ୱାଗତ କଲେ । ସମସ୍ତେ ମିଳି ମିଶି ଖୁବ୍ ଜାକଜମକରେ ପଟୁଆର ସହିତ ବରକୁ ନଗରୀକୁ ନେଇ ଆସିଲେ । ବର ଆଗେ ଆଗେ କେତେକ ଲୋକ ଅଶ୍ୱ ଆରୋହଣ କରି ସୁବର୍ଣ୍ଣ ମୁଦ୍ରା ବାଟସାକ ବୁଣି ବୁଣି ଆସୁଥିଲେ । ଗରିବ ଲୋକମାନେ ସେହି ମୁଦ୍ରାକୁ ଆନନ୍ଦରେ ଗୋଟାଇ ନେଉଥିଲେ । ଦ୍ୱାର ଦେଶରେ ନୂଆ ଲୁଗା ପିନ୍ଧି ବାଳକ, ଯୁବକ ଓ ବୃଦ୍ଧମାନେ ଠିଆ ହୋଇଥିଲେ, ଭବନର ଛାତ ଉପରେ ରହି ସ୍ତ୍ରୀଲୋକମାନେ ବରଯାତ୍ରାର ଶୋଭା ନିରୀକ୍ଷଣ କରୁଥିଲେ । ଏତେବଡ଼ ବରଯାତ୍ରୀ ଦଳଙ୍କୁ ଦେଖି ସମସ୍ତେ ଅତ୍ୟନ୍ତ ବିସ୍ମୟ ହେଉଥିଲେ । ଗୁପ୍ତଚର ମାନେ ପ୍ରଥମେ ଯାଇ ଖବର ଦେଇ ସାରିଥିଲେ ଯେ, ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ହରଣ କରିନେବା ପାଇଁ ବିଚାର କରୁଛନ୍ତି । ତେଣୁ ଶିଶୁପାଳ ପକ୍ଷରେ ଶାଲ୍ୱ, ଜରାସନ୍ଧ, ଦନ୍ତବକ୍ର, ବିଦୂରଥ ଓ ପୌଣ୍ଡ୍ରକ ଆଦି ଯେତେ ଭଗବଦ୍‌ବିଦ୍ୱେଷୀ ରାଜାଥିଲେ, ସେମାନେ ସମସ୍ତେ ସୈନ୍ୟ ଏକତ୍ର କରି ଏହି ବରଯାତ୍ରୀଙ୍କ ଗହଣରେ ଚାଲିଥିଲେ । ଏମାନେ ଯାଦବମାନଙ୍କର ଅଭ୍ୟୁଦୟ ଚାହୁଁ ନ ଥିଲେ । ସେଥିପାଇଁ ଯଦି ଶିଶୁପାଳର ବିବାହରେ ଶ୍ରୀକୃଷ୍ଣ ଓ ବଳରାମ ଯାଦବ-ମାନଙ୍କୁ ସଙ୍ଗରେ ନେଇ ଆସି କନ୍ୟାର ଅପହରଣ କରିବାକୁ ଚେଷ୍ଟା କରନ୍ତି, ତାହାହେଲେ ସେମାନେ ସମସ୍ତେ ମିଳିତ ଭାବରେ ତାଙ୍କ ସହିତ ଯୁଦ୍ଧ କରି, ତାଙ୍କୁ ହରାଇ ଯେ କୌଣସି ଉପାୟରେ ଭୀଷ୍ମକଙ୍କ କନ୍ୟାକୁ ଶିଶୁପାଳ ସହିତ ବିବାହ କରାଇବେ । ଏଥିପାଇଁ ବରଯାତ୍ରୀଙ୍କ ମଧ୍ୟରେ ଅସଂଖ୍ୟ ସୈନ୍ୟ ଥିଲେ ।

ମହାରାଜ ଭୀଷ୍ମକ ପ୍ରଥମରୁ ବରଯାତ୍ରୀଙ୍କ ରହିବା ପାଇଁ ସୁବ୍ୟବସ୍ଥା କରିଥିଲେ । ସେମାନଙ୍କୁ ରହିବା ପାଇଁ ଘର ଦିଆଗଲା । ସୈନ୍ୟମାନେ ସମଗ୍ର ନଗରକୁ ଘେରି ଜଗି ରହିଲେ । ମହାରାଜଙ୍କ ତରଫରୁ ପ୍ରତ୍ୟେକଙ୍କୁ ଖୁବ୍ ଆଦର ସତ୍କାର କରାଗଲା । ଯିଏ ଯାହା ଚାହିଁଲେ, ତାଙ୍କୁ ସେହି ବସ୍ତୁ ତୁରନ୍ତ ଦିଆଗଲା ।

ଭଗବାନ ରଥରେ ଦ୍ୱାରକା ଛାଡ଼ିଥିଲେ । ବଳରାମଙ୍କୁ ଏ ବିଷୟ ସେ ଜଣାଇ ନ ଥିଲେ । ଉଧର ଦେଖି, ଦେଖି, ତାଙ୍କ କଥା ଶୁଣି ବଳରାମ ସନ୍ଦେହ କରିଥିଲେ ଯେ, କୃଷ୍ଣ ବୋଧହୁଏ କେଉଁଠାକୁ ଯାଉଛନ୍ତି । ସେ ସଙ୍ଗେ ସଙ୍ଗେ ଭଗବାନ କୃଷ୍ଣଙ୍କ

ମହଲକୁ ଆସି ସେଠାରେ ପଚରାଉଚରା କରିଥିଲେ ଓ ଜାଣିପାରିଥିଲେ ଯେ ଜଣେ ବୃଦ୍ଧ ବ୍ରାହ୍ମଣ କୁଣ୍ଡିନପୁରରୁ ଏକ ଗୁପ୍ତ ପତ୍ର ନେଇ ଆସିଥିଲେ । ତାହା ପଢ଼ି ତାଙ୍କୁ ସଙ୍ଗରେ ନେଇ ଭଗବାନ ଶ୍ରୀକୃଷ୍ଣ କେଉଁଠାକୁ ଯାତ୍ରା କରିଛନ୍ତି । ଏବେ ବଳରାମ ସମସ୍ତ କଥା ବୁଝି ପାରିଲେ । ଏ ବିଷୟରେ ତ ବହୁଦିନରୁ ଆଲୋଚନା ଚାଲିଥିଲା, ତେଣୁ ସେ ବୁଝିପାରିଲେ ଯେ, କୃଷ୍ଣ ବିବାହ କରିବା ଉଦ୍ଦେଶ୍ୟରେ ଯାଇଛନ୍ତି । ଲାଜରେ ସେ ତାଙ୍କୁ ଏହା ଜଣାଇ ନାହାନ୍ତି । ଏପରି ପରିସ୍ଥିତିରେ ସେ ଏକା ଯିବା ଉଚିତ ନଥିଲା । ଏହା ନ ହେଉ, ଦୁଷ୍ଟମାନେ ମିଳିତ ହୋଇ ଯେପରି ତାଙ୍କୁ ପ୍ରହାର ନକରନ୍ତୁ । କିନ୍ତୁ ଯେତେବେଳେ ସେ ବଡ଼ଭାଇ, ତାଙ୍କ ହୃଦୟ ସ୍ଥିର ହେଉଛି କେଉଁଠି ? ସେ ମଧ୍ୟ ପ୍ରଧାନ ପ୍ରଧାନ ସେନାପତିଙ୍କୁ ଓ ସୈନ୍ୟମାନଙ୍କୁ ନେଇ ସଙ୍ଗେ ସଙ୍ଗେ କୁଣ୍ଡିନପୁର ଯାତ୍ରା କଲେ । ଶ୍ରୀକୃଷ୍ଣ ସୂର୍ଯ୍ୟୋଦୟ ହେବାର ବହୁତ ପୂର୍ବରୁ କୁଣ୍ଡିନପୁରର ଏକ ଉଦ୍ୟାନରେ ପହଞ୍ଚି ସେଠାରେ ରହିଥିଲେ । ସୂର୍ଯ୍ୟ ଉଦୟ ହେବାକ୍ଷଣି ବଳରାମ ମଧ୍ୟ ସୈନ୍ୟମାନଙ୍କ ସହିତ କୁଣ୍ଡିନପୁରରେ ପହଞ୍ଚିଗଲେ । ଦୂରରୁ ସେ ଉଦ୍ୟାନ ମଧ୍ୟରେ ଗରୁଡ଼ଧ୍ୱଜାବିଶିଷ୍ଟ ରଥ ରହିଥିବାର ଦେଖି ପାରିଲେ । ସେ ସଙ୍ଗେ ସଙ୍ଗେ ସେହି ଉଦ୍ୟାନ ଅଭିମୁଖେ ଯାତ୍ରା କଲେ । ଭଗବାନ ଯେତେବେଳେ ରଥର ଘର୍ ଘର୍ ଶବ୍ଦ ଓ ହାତୀମାନଙ୍କର ଶବ୍ଦ ଶୁଣିବାକୁ ପାଇଲେ, ସେତେବେଳେ ସେ ସେହି ଦିଗକୁ ଚାହିଁଲେ । ଦୂରରୁ ସେ ତାଳଧ୍ୱଜରଥ ଦେଖି ଜାଣିପାରିଲେ ଯେ ବଳଦେବ ଆସୁଅଛନ୍ତି । ବଳରାମଙ୍କ ରଥକୁ ଦେଖି ଶ୍ରୀକୃଷ୍ଣ ବିସ୍ମୟାନ୍ୱିତ ହୋଇଗଲେ । ସେ ସଙ୍ଗେ ସଙ୍ଗେ ବସିବା ସ୍ଥାନରୁ ଉଠି ଆଗେଇ ଯାଇ ଦେଖିଲେ ଯେ ବଳରାମ ହସି ହସି ତାଙ୍କ ଆଡ଼କୁ ଆସୁଛନ୍ତି । ଶ୍ରୀକୃଷ୍ଣ ନଇଁପଡ଼ି ତାଙ୍କ ପାଦ ସ୍ପର୍ଶ କରିବାକ୍ଷଣି ବଳରାମ ତାଙ୍କୁ ପ୍ରେମାଲିଙ୍ଗନ ପୂର୍ବକ ହସି ହସି କହିଲେ —"ଆରେ ଭାଇ ! ତୋର ତ ବିବାହ କରିବାର କଥା, ମୋତେ ପୂର୍ବରୁ ଜଣାଇଥିଲେ ମୁଁ କଣ ମନା କରି ଥାଆନ୍ତି ? ମୋତେ ଅବଶ୍ୟ ଦୁଇ ଚାରିପଟ କଟେଇ ଅଧିକ ମିଳି ଥାଆନ୍ତା, କିନ୍ତୁ ତୁ ଚୋରଙ୍କ ଭଳି ଏପରି ଏକା ଏକା ଚୁପ୍ ଚାପ୍ ବିବାହ ପାଇଁ ଏଠାକୁ ପଳାଇ ଆସିବା କଣ ତୋ ପକ୍ଷେ ଉଚିତ୍ ହୋଇଛି ?"

ଭଗବାନ ଶ୍ରୀକୃଷ୍ଣ ଅତି ଗମ୍ଭୀରତା ପୂର୍ବକ କହିଲେ—"କାହାର ବିବାହ ? କି ପ୍ରକାର ବିବାହ ? ମୁଁ ତ ଏମିତି ଏକ ଖେଳ ତାମସା ଦେଖିବା ପାଇଁ ଏଠାକୁ ଧାଇଁ ଆସିଛି ।"

ବଳରାମ ହସି ହସି କହିଲେ—"ହଉ ଗୁଡ଼ ଯେ କଥା । ଆଉ ବେଶି କିଛି କହିବା ଦରକାର ନାହିଁ । ଧାଈ-ନିକଟରେ ପେଟ ଲୁଚାଇବା କ'ଣ ସମ୍ଭବ ? ଆଜି ଆମେ ଏ ସବୁ ଦୁଷ୍ଟଙ୍କୁ ସେମାନଙ୍କ ଦୁଷ୍ଟପଣିଆ ପାଇଁ ଉପଯୁକ୍ତ ଫଳ ଚଖାଇବା ଓ

ଭୀଷ୍ମକଙ୍କର କନ୍ୟାକୁ ବଳପୂର୍ବକ ଏଠାରୁ ଆମେ ନେଇଯିବା । ଯିଏ ଆମର ଏ କାର୍ଯ୍ୟରେ ବିଘ୍ନ ଘଟାଇବ, ଆମେ ତାକୁ ଯମପୁରକୁ ପଠାଇ ଦେବା ।"

ଏହା ଶୁଣି ଶ୍ରୀକୃଷ୍ଣ ଅତି ପ୍ରସନ୍ନ ହେଲେ । ସେ ସଙ୍ଗେ ସଙ୍ଗେ ସେଠାରେ ସେନା ଛାଉଣି ପକାଇଲେ । ଏହା ଦେଖି ସେହି ବୃଦ୍ଧ ବ୍ରାହ୍ମଣ କହିଲେ—"ମହାରାଜ ! ରାଜକୁମାରୀ ରୁକ୍ମିଣୀ ଅତି ଛଟପଟ ହେଉଥିବେ, ଯଦି ଆଦେଶ କରନ୍ତି, ତେବେ ମୁଁ ଏହି ଶୁଭ ଖବର ତାଙ୍କୁ ଯାଇ ଶୁଣାଇ ଦିଅନ୍ତି ।"

ଭଗବାନ୍ କହିଲେ—"ହଁ ଆପଣ ଯାଇ ରାଜକୁମାରୀଙ୍କୁ ଏହା ଶୀଘ୍ର ଜଣାଇ ଦିଅନ୍ତୁ, ସେ ଯେପରି କୌଣସି ଚିନ୍ତା ନ କରନ୍ତି । ଆଜି ସେ ଯେତେବେଳେ ଦେବୀ ପୂଜା କରିବାକୁ ଯିବେ, ସେତେବେଳେ ମୁଁ ତାଙ୍କୁ ଅପହରଣ କରିନେବି ।"

ସୂତ କହିଲେ—"ମୁନିଗଣ ! ଏକଥା ଶୁଣି ବ୍ରାହ୍ମଣ କୁଣ୍ଡିନପୁରର ଅନ୍ତଃପୁରକୁ ଗଲେ । ରୁକ୍ମିଣୀ ଏ ପର୍ଯ୍ୟନ୍ତ ଭଗବାନ ଶ୍ରୀକୃଷ୍ଣଙ୍କ ଆଗମନ ବାର୍ତ୍ତା ସେଠାରେ ନ ପାଇ ଥିବାରୁ ଯେପରି ବ୍ୟଥିତ ପ୍ରାଣରେ ଅବସ୍ଥାନ କରୁଥିଲେ ଓ ପ୍ରତି ମୁହୂର୍ତ୍ତକୁ ପ୍ରତୀକ୍ଷା କରି ବ୍ୟତିବ୍ୟସ୍ତ ହେଉଥିଲେ, ତାହା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ ଆପଣମାନଙ୍କୁ କହିବି ।"

## ଛପ୍ପୟ

ହରି କୁଣ୍ଡିନପୁର ପହୁଁଚି ରହେ ପୁରକୀଂ ଅମରାଇ ।
ଇତ ଅତ ବିଶଦ ବରାତ ଚେଦିରାଜାକୀ ଆଇ ॥
ଜନମାଟସୋ ନୃପ ଦିଯୋ ବରାତୀ ଅତି ହରଷାୟେ ।
ଉତ ବଲ ସୁନି ହରି ଗମନ ସୈନ୍ୟ ସଜି ତିନ ଢିଁଗ ଆୟେ ॥
ସକୁଚାୟେ ହରି ବଲ ହଁସେ, କଛୁ ମୀଠୀ ଚୁଟକୀ ଲଈ ।
କହନ ବୃତ୍ତ ନଁହ ବିପ୍ରକୁଁ, ହରି ତୁପକେ ଆୟସୁ ଦଈ ॥

—*—

# ରୁକ୍ମିଣୀଙ୍କର ନିରାଶାରେ ଆଶା

ଅଥ କୃଷ୍ଣ ବିନିର୍ଦ୍ଦିଷ୍ଟଃ ସ ଏବ ଦ୍ୱିଜସତ୍ତମଃ ।
ଅନ୍ତଃପୁରଚରୀଂ ଦେବୀଂ ରାଜପୁତ୍ରୀଂ ଦଦର୍ଶ ହ ॥ ❋

( ଶ୍ରୀ ଭା: ୧୦ମ ସ୍କନ୍ଧ ୫୩ ଅ. ୨୮ ଶ୍ଳୋକ )

## ଛପ୍ପୟ

ହରି ଆଜ୍ଞାସୁ ସିର ଧାରି ଗୟେ ଦ୍ୱିଜ ଅନ୍ତଃପୁରମହଁ ।
ଦ୍ୱିଜ ମୁଖ ବିକସିତ ନିରଖି ଭୟୋ ସୁଖ କନ୍ୟା ଉରମହଁ ॥
କହେଯା ସକଲ ସମ୍ବାଦ କୁମାରୀ ସୁନି ହରଷାଈ ।
ଦ୍ୱିଜକୀ ରିନିୟା ବନୀ ଅଶ୍ରୁମାଲ ପହିନାଈ ॥
ସୁନେଯା ଆଗମନ କୃଷ୍ଣ ବଲ, ନୃପ ସୁନି ବିସ୍ମିତ ଭୟୋ ।
ଅତିଥି ସମୁଝି ଭୀଷ୍ମକ ନୃପତି, ସାଦର ନିଜ ଗୃହ ଲୈ ଗୟୋ ॥

ଆମେ ଯେବେ କୌଣସି ଶୁଭସମ୍ବାଦ ପାଇବାପାଇଁ ଅତି ଆଗ୍ରହର ସହିତ ପ୍ରତୀକ୍ଷା କରିଥାଉଁ, ତାହା ହେଲେ ପରେ ମୁହୂର୍ତ୍ତି, ପଳ ପଳ କ୍ଷଣ ମିନିଟ୍ ଗଣି ଗଣି ଅତି ବ୍ୟଗ୍ର ହୋଇ ପଡ଼ିଥାଉଁ । ଯେବେ କେହି ଆସି ଆମ ଆକାଙ୍କ୍ଷା ଅନୁସାରେ ସେହି ଶୁଭ ସମାଚାର ଆମକୁ ଶୁଣାଇଦିଏ, ତାହା ହେଲେ ତାଙ୍କୁ ଆମର ସର୍ବସ୍ୱ ସମର୍ପଣ କରି ଦେବାପାଇଁ ଇଚ୍ଛା ହୁଏ । ସେତେବେଳେ ଆମ ମନରେ ଯେଉଁ ପ୍ରସନ୍ନତା ଜାତ ହୁଏ, ତାହା

❋ ନ ଦେଖି ଦ୍ୱିଜ ଅଗମନ । କାତର କମ୍ପଇ ଶରୀର ॥
କାନ୍ଦନ୍ତି ଦଇବ ସୁମରି । ଧରଣୀଗତେ ଶିର ଢାଳି ॥
ସହସା ଦେଖି ଦ୍ୱିଜବର । ଚଞ୍ଚଳ ଚିତ୍ତ କଲା ସ୍ଥିର ॥
ବ୍ରାହ୍ମଣ ହରଷ ବଦନ । ଦେଖି ରୁକ୍ମିଣୀ ତୋଷମନ ॥

ଭାଗବତ : ଜଗନ୍ନାଥ ଦାସ : ସ୍କ. ୧୦ମ : ଅ. ୫୭ ।

ବର୍ଣ୍ଣନାତୀତ । ତାହା କଥାରେ ପ୍ରକାଶ କରି ହୁଏ ନାହିଁ । ତାହା ନିଜ ନିଜର ଅନୁଭବର ବିଷୟ । ପ୍ରିୟଲୋକ ସହିତ ମିଳିତ ହେବାର ସୁସମ୍ବାଦଠାରୁ ବଳି ଏ ସଂସାରରେ ଅନ୍ୟ କୌଣସି ସମ୍ବାଦ ଆଦୌ ନାହିଁ । ଯେଉଁ ଆଖି ପ୍ରିୟତମଙ୍କୁ ଦର୍ଶନ କରିଛି, ସେ ଆଖି ଧନ୍ୟ । ଯେଉଁ ମୁହୂର୍ତ୍ତିରେ ପ୍ରିୟତମଙ୍କର ଶୁଭାଗମନ ସମ୍ବାଦ ଶୁଣିବାକୁ ମିଳେ, ସେହି ମୁହୂର୍ତ୍ତି ଧନ୍ୟ । ଯେଉଁ କର୍ଣ୍ଣ ପ୍ରିୟତମଙ୍କର ଆଗମନ ବାର୍ତ୍ତା ଶୁଣେ, ସେହି କର୍ଣ୍ଣ ବାସ୍ତବ କର୍ଣ୍ଣ । ଯେଉଁ ବ୍ୟକ୍ତି ପ୍ରିୟତମଙ୍କ ଆଗମନର ଶୁଭ ସୂଚନା ଦିଏ, ସେହି ବ୍ୟକ୍ତି ଅତ୍ୟନ୍ତ ପ୍ରିୟ ବ୍ୟକ୍ତି, ହିତୈଷୀ, ଶୁଭଚିନ୍ତକ ଓ ଆତ୍ମୀୟ ଅଟେ । ଏପରି ବ୍ୟକ୍ତିର ଋଣ କେବେହେଲେ ସୁଝି ହୁଏ ନାହିଁ । ତାହାର ପ୍ରତ୍ୟୁପକାର କରି ହୁଏ ନାହିଁ । ତାଙ୍କ ସମ୍ମୁଖରେ ସର୍ବଦା ଆଖି ନଇଁଯାଏ ।

ସୂତ କହିଲେ—"ମୁନିଗଣ ! ରୁକ୍ମିଣୀ ଦେବୀ ବ୍ରାହ୍ମଣଙ୍କୁ ଦ୍ୱାରକା ପଠାଇ ସେହିଦିନଠାରୁ ତାଙ୍କ ପ୍ରତ୍ୟାଗମନକୁ ପ୍ରତୀକ୍ଷା କରିଥିଲେ । ଯଦିଓ ତାଙ୍କୁ ଜଣାଥିଲା ଯେ କୁଣ୍ଡିନପୁରଠାରୁ ଦ୍ୱାରକାପୁରୀ ଅନେକ ଦୂର; ବ୍ରାହ୍ମଣ ବୃଦ୍ଧ, ପାଦରେ ଚାଲି ଚାଲି ଏତେ ବାଟ ତାଙ୍କୁ ଯିବାକୁ ହେବ ଓ ଯିବା ଆସିବାରେ ନିଶ୍ଚୟ ବିଳମ୍ବ ଘଟିବ, କିନ୍ତୁ ପ୍ରେମ ନିକଟରେ ଏ ସବୁ ବିଚାର ଅତି ନଗଣ୍ୟ । ଆଶା ସମ୍ଭବ ଅସମ୍ଭବର ବିଚାର କରେ ନାହିଁ । ଅର୍ଥୀ ଦୋଷକୁ କେବେହେଲେ ଦେଖେ ନାହିଁ । ରୁକ୍ମିଣୀ ଦେବୀଙ୍କ ପାଇଁ ପ୍ରତି ମୁହୂର୍ତ୍ତି ଅତ୍ୟନ୍ତ ଦୁର୍ବିସହ ବୋଧ ହେଉଥିଲା । ଯେତେବେଳେ ଶିଶୁପାଳର ବରଯାତ୍ରୀଦଳ ଆସିଗଲେ ଓ ବିବାହ ପୂର୍ବର ସମସ୍ତ ମଙ୍ଗଳକୃତ୍ୟ ଆରମ୍ଭ ହୋଇଗଲା, ସେତେବେଳେ ସେ ଅତ୍ୟନ୍ତ ନିରାଶ ହୋଇପଡ଼ିଥିଲେ । ଏବେ ବିବାହ ମାତ୍ର ଏକ ଦିନ ବାକି । ଆସନ୍ତା କାଲି ବିବାହ ଲଗ୍ନ । ଶ୍ୟାମସୁନ୍ଦର ଆଜି ଆସି ଏଠାରେ ପହଞ୍ଚିବା ଉଚିତ୍ ଥିଲା । ଆଜି ମୁଁ ତ ଦେବୀ ପୂଜା କରିବା ପାଇଁ ମନ୍ଦିରକୁ ଯିବି । ସେ ବୃଦ୍ଧ ବ୍ରାହ୍ମଣ ତ କାହିଁ ଏ ପର୍ଯ୍ୟନ୍ତ ଫେରୁ ନାହାନ୍ତି । ସେ କଣ ଆଉ ବାଟରେ କେଉଁଠି ଅଟକି ଗଲେ ନା କଣ ? କିମ୍ବା ବୃଦ୍ଧାବସ୍ଥା ଯୋଗୁଁ ଏ ପର୍ଯ୍ୟନ୍ତ ଦ୍ୱାରକାରେ ପହଞ୍ଚି ପାରି ନାହାନ୍ତି ? ଯଦି ଶ୍ୟାମସୁନ୍ଦର ମୋ ବିପତ୍ତି ବିଷୟ ଶୁଣିଥିବେ, ତାହା ହେଲେ ନିଶ୍ଚୟ ଆସି ପହଞ୍ଚିବେ । ହାୟ ! ଏବେ ମୁଁ ଯିବି କୁଆଡ଼େ ? କରିବି କଣ ? କାହାକୁ ଅବା ମୋ ଦୁଃଖ ଜଣାଇବି ? ମୁଁ ବଡ଼ ହତଭାଗିନୀ, ପୂର୍ବଜନ୍ମରେ ବୋଧହୁଏ ମୁଁ କୌଣସି ପ୍ରେମିକ ପ୍ରେମିକାଙ୍କ ମିଳନରେ ବାଧା ସୃଷ୍ଟି କରିଥିଲି, ହେଥିପାଇଁ ମୁଁ ମୋର ପ୍ରାଣଧନ ପ୍ରିୟତମଙ୍କ ସହିତ ସାକ୍ଷାତ୍ କରିପାରୁନାହିଁ । ତା ନ ହୋଇଥିଲେ ବ୍ରାହ୍ମଣ ପହଞ୍ଚି ପାରି ନଥିଲେ ମଧ୍ୟ ସେହି ସର୍ବଜ୍ଞ କଣ ମୋ ବିପତ୍ତି ଜାଣି ସ୍ୱତଃ ଆସି ପହଞ୍ଚି ପାରି ନଥାନ୍ତେ ? ସେହି କମଳନୟନ ଭଗବାନ୍ ବାସୁଦେବ କାହିଁକି ତ ଏ ପର୍ଯ୍ୟନ୍ତ ଆସିଲେ ନାହିଁ ? ଏହି କାରଣରୁ ମୋ ମନରେ ନାନା ପ୍ରକାର ସନ୍ଦେହ ଜାତ ହେଉଛି । ସମ୍ଭବତଃ ସେ ମୋତେ ନିର୍ଲଜ୍ଜା ଭାବି କିମ୍ବା ମୋଠାରେ ଅନ୍ୟ

କୌଣସି ଦୋଷ ଥିବାର ଜାଣି ଅସୁ ନାହାନ୍ତି । ମୋତେ ସେ ଅଯୋଗ୍ୟ ମନେକରି ନିଜର କରିନେବାକୁ ଗୃହୁ ନାହାନ୍ତି । ତା ନ ହୋଇଥିଲେ ତ ସେ ମୋ ପାଣିଗ୍ରହଣ କରିବାପାଇଁ ଆସି ଯାଆନ୍ତେଣି । ହାୟ ! ମୁଁ ଶ୍ୟାମସୁନ୍ଦରଙ୍କୁ ପାଇବାପାଇଁ ଶିବଙ୍କୁ କେତେ ଆରାଧନା ନ କରିଛି ! ଭଗବତୀ ପାର୍ବତୀଙ୍କୁ ପ୍ରେମ ସହକାରେ ପ୍ରତିଦିନ କେତେ ପୂଜା ନ କରିଛି ! କିନ୍ତୁ ମୋ ପ୍ରିୟତମଙ୍କୁ ମୁଁ ପାଇପାରୁ ନାହିଁ । ଗିରିରାଜକୁମାରୀ ସତୀ ଗୌରୀମାତା ମୋ ପ୍ରତି ପ୍ରସନ୍ନ ହେଉ ନାହାନ୍ତି । ମୋତେ ଜଣାପଡୁଛି, ବିଧାତା ମୋ ପ୍ରତି ବାମ ହୋଇଛନ୍ତି । ପୂର୍ବଜନ୍ମର ପାପ କାରଣରୁ ପ୍ରଭୁପ୍ରାପ୍ତିରେ ଅନ୍ତରାୟ ସୃଷ୍ଟି ହେଉଛି । ହାୟ ! ମୋତେ ଶିଶୁପାଳ ହାତରେ ସମର୍ପଣ କରାଯିବ ? ସତେ କ'ଣ ସିଂହର ଭାଗକୁ ଶୃଗାଳ ନେଇଯିବ ? ସତେ କ'ଣ ଯଜ୍ଞର ହବିଷାନ୍ନକୁ ଗର୍ଦ୍ଦଭ ଖାଇଯିବ ? ସତେ କ'ଣ ମୋର ଆଶା ନିରାଶରେ ପରିଣତ ହେବ ? ସତେ କ'ଣ ଭଗବାନଙ୍କର ଶରଣାଗତବତ୍ସଳ ନାମ ବ୍ୟର୍ଥ ହୋଇଯିବ ? ସତେ କ'ଣ ଜଗଦୁଦ୍ଧାରକ ଶ୍ୟାମସୁନ୍ଦର ମୋତେ ଉଦ୍ଧାର କରିବେ ନାହିଁ ? ଭବଭୟହାରୀ ଭଗବାନ କ'ଣ ମୋର ଭୟ ଦୂର କରିବେ ନାହିଁ ? ସତେ କ'ଣ ପତିତପାବନ ପ୍ରଭୁ ମୋ ପରି ପତିତାର ବିନତି ପ୍ରତି ଧ୍ୟାନ ଦେବେ ନାହିଁ ? ସତେ କଣ ଭକ୍ତବାଞ୍ଛା-କଳ୍ପତରୁ କୃଷ୍ଣ ମୋର ଇଚ୍ଛା ପୂର୍ଣ୍ଣ କରିବେ ନାହିଁ ? ସତେ କଣ ପ୍ରପନ୍ନ ପାରିଜାତ ପରମେଶ୍ୱର ମୋପରି ଶରଣାଗତକୁ ଶରଣ ଦେବେ ନାହିଁ ?"

ସୂତ କହିଲେ—"ମୁନିଗଣ ! ସେହି ବିଶ୍ୱବନ୍ଦିତା ସର୍ବଗୁଣସମ୍ପନ୍ନା ରାଜ-କୁମାରୀଙ୍କର ଚିତ୍ତକୁ ଶ୍ୟାମସୁନ୍ଦର ହରଣ କରି ନେଇଥିଲେ । ସେ ଶ୍ୟାମସୁନ୍ଦରଙ୍କ ବ୍ୟତୀତ ଅନ୍ୟକୌଣସି ବରକୁ ବରଣ କରିବାକୁ ଗୃହୁ ନ ଥିଲେ । ସେଥିପାଇଁ ଭଗବାନ ବାସୁଦେବଙ୍କ ଯଥା ସମୟରେ ଉପସ୍ଥିତ ହେବାର ଦେଖି ତାଙ୍କର ହୃଦୟ ଆନନ୍ଦରେ ଭରିଗଲା । ତାଙ୍କ ନୟନ ଅଶ୍ରୁପୂର୍ଣ୍ଣ ହୋଇଗଲା । ଯେ ନିଜ ଅବଗୁଣ୍ଠନରେ ମୁଖକୁ ଲୁଚାଇ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲେ । ତାଙ୍କ ସର୍ବାଙ୍ଗରୁ ସ୍ୱେଦ ନିର୍ଗତ ହେବାକୁ ଲାଗିଲା ଓ ସେ ବାଲୁଅରେ ପଡ଼ି ସୂର୍ଯ୍ୟ କିରଣରେ ସନ୍ତପ୍ତ ହେଉଥିବା ମୀନ ସଦୃଶ୍ୟ ଛଟପଟ ହେଉଥିଲେ । ବାରମ୍ବାର ଦ୍ୱାରଦେଶକୁ ଗୃହୁଁଥିଲେ । ଅଗଣାରେ ଥିବା ବୃକ୍ଷରେ ବସିଥିବା କୁଆକୁ ଉଡ଼ାଇ ଦେଉଥିଲେ । ଶୋକସନ୍ତପ୍ତ ହୋଇ ବାରମ୍ବାର ଉଠି ଥିଲେ ଓ ମୂର୍ଚ୍ଛିତା ହୋଇ ଯାଉଥିଲେ । ଏହିପରି ସେ ଅର୍ଦ୍ଧମୂର୍ଚ୍ଛିତାବସ୍ଥାରେ ଶ୍ୟାମସୁନ୍ଦରଙ୍କ ଆଗମନ ସମାଗ୍ଭର ପ୍ରତୀକ୍ଷାରେ ବ୍ୟାକୁଳ ହେଉଥିଲେ । ସେହି ସମୟରେ ସେ ସମ୍ମୁଖରେ ସେହି ବୃଦ୍ଧ ବ୍ରାହ୍ମଣଙ୍କୁ ଦେଖିବାକୁ ପାଇଲେ ।

ବ୍ରାହ୍ମଣଙ୍କୁ ଦେଖି ସେ ହଠାତ୍ ଚମକି ପଡ଼ିଲେ । ଦୂରରୁ ହିଁ ସେ ବ୍ରାହ୍ମଣଙ୍କ ମୁଖ ଦେଖି ପାରିଥିଲେ । ସେହି ମୁଖ ଶାରଦୀୟ କମଳ ସଦୃଶ ପ୍ରଫୁଲ୍ଲିତ ଥିଲା । ତାଙ୍କ

ମୁଖମଣ୍ଡଳରୁ ପ୍ରସନ୍ନତା ପ୍ରକାଶ ପାଉଥିଲା । ତାଙ୍କ ଗୃହଚଳନରେ ଉତ୍ସୁକତା ଥିଲା, ନୟନରେ ସରଳତା ଥିଲା ଓ ଅଙ୍ଗପ୍ରତ୍ୟଙ୍ଗରେ ସ୍ଫୂର୍ତ୍ତି ଥିଲା । ସେହି ସମୟରେ ରାଜକୁମାରୀ ନିଜ ଅଙ୍ଗରେ ମଧ୍ୟ ଶୁଭଶକୁନ ଦେଖିଥିଲେ । ତାଙ୍କ ବାମ ଜଙ୍ଘ, ବାମ ଭୁଜ ଓ ବାମ ଚକ୍ଷୁ ସ୍ଫୁରିତ ହେଉଥିଲା । ଏହିସବୁ ଶୁଭସୂଚକ ଶକୁନ ଦେଖି ସେହି ଲକ୍ଷଣ ସମ୍ବନ୍ଧରେ ଜ୍ଞାନଥିବା ରାଜକୁମାରୀ ରୁକ୍ମିଣୀ ଜାଣି ପାରିଲେ ଯେ, ତାଙ୍କ କାର୍ଯ୍ୟ ସଫଳ ହୋଇଛି । ଯଦି ବ୍ରାହ୍ମଣଙ୍କ ନିଜ କାର୍ଯ୍ୟରେ ସଫଳତା ଲାଭ ହୋଇ ନ ଥାନ୍ତା, ତାହାହେଲେ ତାଙ୍କ ମୁଖ ଏତେ ପ୍ରସନ୍ନ କେବେହେଲେ ହୋଇ ନ ଥାନ୍ତା; କିମ୍ବା ସେ ମୃଦୁମନ୍ଦ ହସ ପ୍ରକାଶ କରି ଆସୁ ନ ଥାନ୍ତେ । ତାଙ୍କର ନିର୍ଭିକତା ଓ ସ୍ୱଚ୍ଛନ୍ଦ ଗତିରୁ ଏହା ନିଶ୍ଚିତ ଭାବେ ଜଣା ପଡ଼ୁଥିଲା ଯେ ଭଗବାନ ମୋର ପ୍ରାର୍ଥନା ଶୁଣିଛନ୍ତି । ତଥାପି ସେ ବ୍ରାହ୍ମଣଙ୍କ ଶ୍ରୀମୁଖରୁ କିଛି ଶୁଣିବାକୁ ଚାହୁଁଥିଲେ । ଏଥିପାଇଁ ସେ ସଙ୍ଗେ ସଙ୍ଗେ ପଚାରି ଥିଲେ—"କ'ଣ ଶ୍ୟାମସୁନ୍ଦର ଆସିଛନ୍ତି ?"

ବ୍ରାହ୍ମଣ ଏକା ନିଃଶ୍ୱାସକେ କହି ପକାଇଲେ--"ହଁ ଆସିଛନ୍ତି ।"

ଆହା ! ସେହି ସୁଖଦ ସମାଚାର ଶୁଣି ରାଜକୁମାରୀ କେତେ ଖୁସି ହୋଇ ନ ଥିବେ, ଏହା ନିଜର ଅନୁଭବର ବିଷୟ । ସେ ଅତି ଉତ୍ସାହର ସହିତ ପଚାରିଲେ— "କାହାନ୍ତି ?"

ବ୍ରାହ୍ମଣ କହିଲେ—"ନଗର ନିକଟସ୍ଥ ଆମ୍ର ଉଦ୍ୟାନରେ ସେ ରହିଛନ୍ତି ।"

ରୁକ୍ମିଣୀ ପଚାରିଲେ —"ହେ ପିତଃ ! ଆପଣଙ୍କୁ ବହୁତ କଷ୍ଟ ସହ୍ୟ କରିବାକୁ ପଡ଼ିଥିବ, ଆପଣ କେତେବେଳେ ସେଠାରେ ପହଞ୍ଚିଲେ ? ଶ୍ୟାମସୁନ୍ଦର ମୋ ପତ୍ର ପଢ଼ି ଅପ୍ରସନ୍ନ ତ ହୋଇ ନାହାନ୍ତି ?"

ବ୍ରାହ୍ମଣ କହିଲେ —"ମା ! ଭଗବାନଙ୍କୁ ଯେତେ ପ୍ରଶଂସା କରାଯାଏ, ସେତକ କଦାପି ଯଥେଷ୍ଟ ନୁହେଁ । ପଥ ମଧ୍ୟରେ ମୋତେ ଆଦୌ କଷ୍ଟ ହୋଇନାହିଁ । ମୁଁ କୁଣ୍ଡିନପୁର ଉଦ୍ୟାନ ମଧ୍ୟରେ ଅକସ୍ମାତ୍ ଶୋଇ ଯାଇଥିଲି । କିନ୍ତୁ ଉଠି ଦେଖେଁ ତ ଦ୍ୱାରକାର ଯଦୁନାଥଙ୍କ ଉଦ୍ୟାନରେ ପହଞ୍ଚି ସାରିଛି । ବ୍ରାହ୍ମଣ୍ୟଦେବ ଭଗବାନ ସେଠାରେ ମୋର ଖୁବ୍ ସ୍ୱାଗତ ସତ୍କାର କଲେ । ପତ୍ରଟିକୁ ମୋ ଦ୍ୱାରା ପଢ଼ାଇ ଶୁଣିଲେ । ପତ୍ର ଶୁଣୁ ଶୁଣୁ ସେ କାନ୍ଦି ପକାଇଲେ । ସବୁ କଥା ଶୁଣି ସାରିବା ପରେ ସେ ମୋତେ କହିଲେ—"ମୁଁ ସେହି ଖଳ ଶିଶୁପାଳ ଆଦିଙ୍କୁ ଜୟକରି ନିଶ୍ଚୟ ବଳପୂର୍ବକ ରାଜକୁମାରୀଙ୍କୁ ନେଇ ଆସିବି, ଆପଣ ମୋ କଥା ବିଶ୍ୱାସ କରନ୍ତୁ । ମୁଁ ମଧ୍ୟ ରାଜକୁମାରୀଙ୍କ କଥା ସର୍ବଦା ଚିନ୍ତା କରୁଛି । ରାତିରେ ନିଦ ହେଉନାହିଁ । ଏହା କହି ସେ ରଥରେ ବସି ଶୀଘ୍ର ବାହାରି ପଡ଼ିଲେ ଓ ସୂର୍ଯ୍ୟୋଦୟ ପୂର୍ବରୁ କୁଣ୍ଡିନପୁରରେ ଆସି ପହଞ୍ଚିଗଲେ ।

ତାଙ୍କ ପଛେ ପଛେ ସୂର୍ଯ୍ୟୋଦୟ ହେବାକ୍ଷଣି ତାଙ୍କ ଭାଇ ମଧ ସୈନ୍ୟ ସାମନ୍ତ ଧରି ଆସି ଏଠାରେ ପହଞ୍ଚି ତାଙ୍କ ସହିତ ମିଳିତ ହେଲେ । ଏବେ ରାମ ଓ ଶ୍ୟାମ ଉଭୟେ ସୈନ୍ୟସାମନ୍ତ ସହିତ ନଗର ବାହାରେ ଉଦ୍ୟାନରେ ଅବସ୍ଥାନ କରୁଛନ୍ତି । ସେ ଆଜି ତୁମକୁ ବିପଦରୁ ନିଷ୍ଚୟ ଉଦ୍ଧାର କରିବେ ।"

ଏହି ଶୁଭ ସମାଚାର ଶୁଣି ଭଗବତୀ ରୁକ୍ମଣୀ ଦେବୀଙ୍କର କଣ୍ଠ ରୁଦ୍ଧ ହୋଇଗଲା । ସେ ବ୍ରାହ୍ମଣଙ୍କ କୃତଜ୍ଞତା ତାଡ଼ନାରେ ଅତ୍ୟନ୍ତ ବିନମ୍ର ହୋଇଗଲେ । ତାଙ୍କର ଇଚ୍ଛା ହେଲା, ଏହି ଶୁଭ ସମାଚାର ଶୁଣିଥିବା ଉପଲକ୍ଷେ ବିପ୍ରଦେବଙ୍କୁ କିଛି ଉପହାର ପ୍ରଦାନ କରିବେ । କିନ୍ତୁ ବହୁତ ଚିନ୍ତା କରି ମଧ ତାଙ୍କୁ ଦେବା ଭଳି କୌଣସି ଉପହାର ତାଙ୍କର ଦୃଷ୍ଟିଗୋଚର ହେଲା ନାହିଁ । ରାଜକୁମାରୀ ବିବଶ ହୋଇ ବ୍ରାହ୍ମଣଙ୍କ ଚରଣରେ ନତମସ୍ତକ ହେଲେ । ଅର୍ଥାତ୍ ଲକ୍ଷ୍ମୀଙ୍କ ସାକ୍ଷାତ୍ ଅବତାର ରୁକ୍ମଣୀ ଦେବୀ କହିଲେ—"ମୁଁ ମୋର ସମସ୍ତ ବିଭୂତି ଆପଣଙ୍କୁ ଅର୍ପଣ କରୁଅଛି ।" ଏହାପରେ ସେହି ବ୍ରାହ୍ମଣ ଦେବଙ୍କୁ ସେ ପୂଜା କଲେ ଓ ତାଙ୍କୁ ବହୁତ ଧନ୍ୟବାଦ ଦେଇ ବିଦାୟ ଦେଲେ । ଏବେ ରାଜକୁମାରୀଙ୍କର ପ୍ରସନ୍ନତାର ସୀମା ନଥିଲା । ସେ ହସି ହସି ସମସ୍ତଙ୍କ ସହିତ ବାର୍ତ୍ତାଳାପ କରିବାକୁ ଲାଗିଲେ । ତାଙ୍କ ମୁଖକମଳରୁ ପ୍ରସନ୍ନତା ଝରି ପଡୁଥିଲା । ରାଜକୁମାରୀଙ୍କର ଏପରି ପରିବର୍ତ୍ତନ ଦେଖି ପ୍ରତ୍ୟେକେ ଆନ୍ତରିକ ପ୍ରସନ୍ନତା ଅନୁଭବ କଲେ ।

ଏଣେ ବିଦର୍ଭାଧିପ ମହାରାଜ ଭୀଷ୍ମକ ଯେତେବେଳେ ଶୁଣିଲେ ଯେ, ଯଦୁବଂଶ ବିଭୂଷଣ ଶ୍ରୀରାମକୃଷ୍ଣ ମୋ କନ୍ୟାର ବିବାହ ଉତ୍ସବ ଦେଖିବା ପାଇଁ ଆସି ପଦାର୍ପଣ କରିଛନ୍ତି, ସେ ସେତେବେଳେ ଅତ୍ୟନ୍ତ ପ୍ରସନ୍ନ ହେଲେ । ବିବାହ ଆଦି ମଙ୍ଗଳୋତ୍ସବ ସମୟରେ ଏପରି ଯୋଗ୍ୟ ଅତିଥି ବିନା ନିମନ୍ତ୍ରଣରେ ଯଦି ସ୍ୱତଃ ଆସି ଯାଆନ୍ତି, ତାହା ହେଲେ ଏହାଠାରୁ ବଳି ସୌଭାଗ୍ୟର ବିଷୟ ଆଉ କିଛି ହୋଇ ନପାରେ । ଏହିସବୁ କଥା ଚିନ୍ତା କରି ସେ ନିଜେ ମନ୍ତ୍ରୀ, ପୁରୋହିତ ଓ ଅନ୍ୟାନ୍ୟ ଲୋକବାକ ଇତ୍ୟାଦି ସଙ୍ଗରେ ନେଇ ସେହି ଉଦ୍ୟାନରେ ଯାଇ ପହଞ୍ଚିଲେ । ରାମ ଓ ଶ୍ୟାମ ମଧ ବୃଦ୍ଧ ବିଦର୍ଭାଧିପଙ୍କୁ ଆସୁଥିବାର ଦେଖି ତାଙ୍କୁ ଅତି ଆଦର ସତ୍କାର କଲେ । ଉଭୟଙ୍କ ପକ୍ଷରୁ କୁଶଳ ପ୍ରଶ୍ନ ଆଦି ସରିବା ପରେ ମହାରାଜ ଭୀଷ୍ମକ କହିଲେ—"ବାସୁଦେବ ! ଆପଣ ଏ ଦାସ ପ୍ରତି କୃପା କରି ଏ ଶୁଭକ୍ଷଣରେ ଦର୍ଶନ ଦେଇ କୃତାର୍ଥ କରିଛନ୍ତି । ଏବେ ନଗରୀକୁ ମୋ ସହିତ ବିଜେ କରି ଆପଣଙ୍କ ଚରଣ ଧୂଳିରେ ମୋ ଗୃହକୁ ପବିତ୍ର କରନ୍ତୁ ।"

ରାଜାଙ୍କ ଆଗ୍ରହ ଦେଖି ଦୁଇ ଭାଇ ସୈନ୍ୟମାନଙ୍କ ସହ କୁଣ୍ଡିନପୁର ରାଜ ନବରକୁ ଗଲେ । ଆଗେ ଆଗେ ଭେରୀ ତୂରୀ ଆଦି ବଜାଇ ବାଦ୍ୟକାରମାନେ

ହେଲେ । ନଗରବାସୀ ରାମକୃଷ୍ଣଙ୍କର ଜୟ ଧ୍ୱନିରେ ଗଗନ ପବନ ମୁଖରିତ କଲେ । ରାଜପ୍ରାସାଦ ସମ୍ମୁଖରେ ପହଞ୍ଚିବାକ୍ଷଣି ରାଜା ପୂଜାସାମଗ୍ରୀ ଦ୍ୱାରା ଦୁଇ ଭାଇଙ୍କର ପୂଜା କଲେ । ମଧୁପର୍କ ଅର୍ଘ ଅର୍ପଣ କରି ତାଙ୍କର ଯଥାଯୋଗ୍ୟ ସତ୍କାର କଲେ । ସମସ୍ତଙ୍କ ରହିବା ପାଇଁ ସୁବ୍ୟବସ୍ଥା କରିସାରି ରାଜା ଅନ୍ୟ ଅମନ୍ତ୍ରିତ ନୃପତିମାନଙ୍କୁ ଯଥୋଚିତ ସ୍ୱାଗତ କଲେ । ସେମାନଙ୍କୁ ମଧ୍ୟ ଯଥାଯୋଗ୍ୟ ବସ୍ତ୍ର ଉପହାର ଦେଇ ସେମାନଙ୍କ ରହିବାର ସୁବ୍ୟବସ୍ଥା କରିଦେଲେ । କାହାରି ସ୍ୱାଗତ ସତ୍କାରରେ କୌଣସି ପ୍ରକାର ତ୍ରୁଟି ରହିଲା ନାହିଁ ।

ବିବାହ ଉତ୍ସବରେ ଯୋଗଦେବା ପାଇଁ ଯେତେ ରାଜା ଓ ରାଜକୁମାର ଆସିଥିଲେ, ସେମାନଙ୍କ ମଧ୍ୟରେ ଶ୍ୟାମସୁନ୍ଦର ଅଧିକ ରୂପବାନ୍ ଥିଲେ । ତାଙ୍କ ସୌନ୍ଦର୍ଯ୍ୟର ପ୍ରଶଂସା ସର୍ବତ୍ର ପ୍ରସାରିତ ହୋଇ ଯାଇଥିଲା । ଶ୍ୟାମସୁନ୍ଦର ଭଗବାନ ବାସୁଦେବ କୁଣ୍ଡିନପୁର ଆସିଥିବା କଥା ଶୁଣି ଆବାଲବୃଦ୍ଧବନିତା ହଜାର ହଜାର ସଂଖ୍ୟାରେ ଆସି ତାଙ୍କୁ ଦର୍ଶନ କଲେ । ଯେଉଁ ବ୍ୟକ୍ତି ତାଙ୍କୁ ଦର୍ଶନ କଲା, ସେ ନିଜ ଜୀବନକୁ ଧନ୍ୟ ମନେକଲା । ଯେ ତାଙ୍କ ଅନବଦ୍ୟ ସୌନ୍ଦର୍ଯ୍ୟ ଦର୍ଶନ କଲା, ସେ ଧନ୍ୟ ହୋଇଗଲା । ପ୍ରତ୍ୟେକ ନରନାରୀ ଅତ୍ୟନ୍ତ ଉତ୍ସୁକତା ଓ ଉତ୍କଣ୍ଠାର ସହିତ ଭଗବାନ୍ ବାସୁଦେବଙ୍କ ମୁଖାରବିନ୍ଦ ମକରନ୍ଦ ନିଜ ନିଜର ନୟନାଞ୍ଜଳି ଦ୍ୱାରା ମନଇଚ୍ଛା ପାନକଲେ । ଯିଏ ତାଙ୍କୁ ଦର୍ଶନ କଲା, ସେ କହିଲା—"ଏହି ହିଁ ରାଜକୁମାରୀ ରୁକ୍ମିଣୀଙ୍କ ପାଇଁ ଉପଯୁକ୍ତ ବର ।" ସମସ୍ତଙ୍କ ମୁଖରେ ଭଗବାନ କୃଷ୍ଣଙ୍କର ଭୂୟସୀ ପ୍ରଶଂସା । ସମସ୍ତେ କହୁଥାଆନ୍ତି ଯଦି ଏହାଙ୍କ ସହିତ ରୁକ୍ମିଣୀଙ୍କର ବିବାହ ହୁଅନ୍ତା, ତାହା ହେଲେ ଆମେ ସେହି ବିବାହ ଦର୍ଶନ କରି ନେତ୍ର ପବିତ୍ର କରନ୍ତୁ । ବିଦର୍ଭ ନଗର ନିବାସୀ ଏହି ପ୍ରକାର କହି ନିର୍ମଳ ହୃଦୟରେ ହାତଯୋଡ଼ି ବିଧାତାଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ଯେ, "ଆମେ ସବୁ ପୂର୍ବ ଜନ୍ମରେ ଦାନ ପୁଣ୍ୟାଦି ଦ୍ୱାରା ଯେଉଁ ପୁଣ୍ୟ ଅର୍ଜନ କରିଅଛୁ, ତାହାର ଫଳ ସ୍ୱରୂପ ଆମ୍ଭମାନଙ୍କୁ ଏହି ବର ମିଳୁ ଯେ, ଆମ୍ଭେମାନେ ଯେପରି ଭଗବାନ୍ ବାସୁଦେବଙ୍କ ସହିତ ବିଦର୍ଭ ରାଜକୁମାରୀ ସୁକୁମାରୀ ରୁକ୍ମିଣୀଙ୍କ ବିବାହ ସ୍ୱ ସ୍ୱ ନେତ୍ରରେ ଦର୍ଶନ କରୁ ।" (୧)

---

(୧) କୃଷ୍ଣ ଆଗମ କଥା ଶୁଣି । ବିଦର୍ଭ ପୁରେ ଯେତେ ପ୍ରାଣୀ ॥
ସକଳେ ନିଜ ପୁର ଛାଡ଼ି । ଧାଇଁଲେ ରାଜପଥ ମାଡ଼ି ॥
କୃଷ୍ଣଙ୍କୁ ଦେଖି ନେନ ନେନେ । ଅଞ୍ଜଳି କରି ନେତ୍ର-ପାତେ ॥
ଗୋବିନ୍ଦ ମୁଖ-ପଦ୍ମ-ରସ । ପିବନ୍ତେ ନୋହେ ମନ ତୋଷ ॥
ଆନନ୍ଦେ ବୋଲନ୍ତି ଯୁବତୀ । ରୁକ୍ମିଣୀ ସଦୃଶ ଏ ପତି ॥
କନ୍ୟା ସଦୃଶ ଏହୁ ବର । ତୁଳନା ନାହିଁ ତିନିପୁର ॥
ପ୍ରସନ୍ନ ହୋନ୍ତୁ ଶାର୍ଙ୍ଗଧର । ରୁକ୍ମିଣୀ ଲଭୁ ଏହୁ ବର ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ, ୧୦ମ ଅ-୫୭)

ସୂତ କହିଲେ—"ମୁନିଗଣ ! ଭଗବାନଙ୍କ ସୌନ୍ଦର୍ଯ୍ୟର ମୋହିନୀ ଆକର୍ଷଣରେ ଏହି ପ୍ରକାର ସମସ୍ତେ ଆକର୍ଷିତ ହୋଇ ରାଜପଥ, ହାଟ, ବଜାର, ଘର ସବୁଠି ତାଙ୍କ ଅନୁପମ ରୂପ ଓ ଗୁଣର ପ୍ରଶଂସା କରିବାକୁ ଲାଗିଲେ । ଆଜି ଦେବୀ ପୂଜା ଅନୁଷ୍ଠିତ ହେବ । ରୁକ୍ମଣୀ ଯେପରି ଭାବରେ ଗୌରୀଙ୍କୁ ପୂଜା କରିବାକୁ ଯିବେ ଓ ଶ୍ୟାମସୁନ୍ଦର ସେଠାରେ ତାଙ୍କୁ ଅପହରଣ କରିବେ, ତାହା ପରବର୍ତ୍ତୀ ପ୍ରସଙ୍ଗରେ ମୁଁ କହିବି ।"

## ଛପ୍‌ପୟ

କରି ହରି ବଲ ଆତଥ୍ୟ ସକଲ ସୈନିକ ଠହରାୟେ ।
ଆୟେ ପୁର ଯଦୁଚନ୍ଦ୍ର ସୁନତ ନାରୀ ନର ଧାୟେ ॥
ହରି କୋ ଅନୁପମ ରୂପ ଲଖେଂ ପୁନି ପୁନି ନ ଅଘାବେଂ ।
କନ୍ୟା କେ ବର ଯୋଗ୍ୟ ଶ୍ୟାମ କୁଁ ସବ ହିଁ ବତାବେଂ ॥
ମଚୀ ଧୂମ ହରି ରୂପ କୀ, ହାଟ ବାଟ କୂଚେ ଗଲୀ ।
ତବହିଁ ରୁକ୍ମିନୀ ସଖିନି ସଁଗ, ଗୌରୀ ପୂଜନ ହିତ ଚଲୀ ॥



# ରୁକ୍ମଣୀଙ୍କ ଗୌରୀ ପୂଜା

**ନମସ୍ୟେ ତ୍ୱାମ୍ବିକେଽଭୀକ୍ଷ୍ଣ ସ୍ୱସନ୍ତାନଯୁତାଂ ଶିବାମ୍ ।**
**ଭୂୟାତ୍ ପତିର୍ମେ ଭଗବାନ୍ କୃଷ୍ଣସ୍ତଦନୁମୋଦତାମ୍ ॥ ***

(ଶ୍ରୀ ଭା : ୧୦ମ ସ୍କନ୍ଧ ୫୩ ଅ: ୪୬ ଶ୍ଳୋକ)

---

* ଶୁଣି ରୁକ୍ମଣୀ କର ଯୋଡ଼ି । କହେ ଅମ୍ବିକା ପାଦେ ପଡ଼ି ॥
ନମଇ ଅମ୍ବିକାର ପାଦେ । ସକଳ-ସୁଖ-ବରପ୍ରଦେ ॥
ପୁତ୍ର ଦୁହିତା ସୁଖ ଦେନ । ଈଶ୍ୱର ହୁଅ ବରଦାନ ॥
ମୋତେ ମାତ ତୋହର ପ୍ରସାଦେ । ବର ମାଗଇ ଅପ୍ରମାଦେ ॥
କୃଷ୍ଣ ମୋହର ବର ହେଉ । ତୋ ପାଦ ସେବ ଦିନ ଯାଉ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ସ୍କ, ଅ. ୫୬)

## ଛପ୍ପୟ

ଚୌଦଲ ମୁନି ବ୍ରତ ଧାରି ଚଳନ୍ତି ଶଙ୍କିତ ସକୁଳବନ୍ତ ।
ନୂପୁର କଙ୍କଣ କଡ଼େ ଛଡ଼େ ଚୂଡ଼ି ଝିନକାବନ୍ତ ॥
ଘର ଠେଂ ମନ୍ଦିର ତଲକ ବାଡ଼ ସମ ସୈନିକ ଲଗେ ।
ଶୂରବୀର ଲୈଶସ୍ତ୍ର ଚଲେଂ ବଛୁ ଯୀଛେ ଆଗେ ॥
ଗୌରୀ ମନ୍ଦିର ପହୁଁଚିକେଂ, ପ୍ରେମ ସହିତ ପୂଜନ କରେଂ୍ୟା ।
ଧୂପ ଦୀପ ଉପହାର ସବ, ଦେବୀ କେ ସନ୍ମୁଖ ଘରେ୍ୟା ॥

ଅନନ୍ୟ ଉପାସନାର ଅର୍ଥ ଏହା ନୁହେଁ ଯେ ଅନ୍ୟ କୌଣସି ଦେବଦେବୀଙ୍କୁ ନ ମାନିବା । ସମସ୍ତ ଦେବଦେବୀଙ୍କୁ ମାନିବା ଉଚିତ୍ । ସମସ୍ତଙ୍କୁ ପୂଜା କରିବା ଉଚିତ୍ । କିନ୍ତୁ ପ୍ରତ୍ୟେକଙ୍କୁ ଏହି ବର ମାଗିବା ଉଚିତ୍ ଯେ, ଇଷ୍ଟଙ୍କଠାରେ ଆମର ଅନୁରକ୍ତି ହେଉ । ଯେପରି କି ପତିବ୍ରତା ସ୍ତ୍ରୀ' ଲୋକର ଇଷ୍ଟ ହେଉଛନ୍ତି ପତି । କିନ୍ତୁ ସେ ଶାଶୁ ଶ୍ୱଶୁର, ଦେବର, ନେଡ଼ନ୍ଦୁର ଓ ଘରର ଅନ୍ୟ ସମସ୍ତ ଲୋକମାନଙ୍କର ସେବା କରନ୍ତି, ଆଦର କରନ୍ତି । ଏ ସମସ୍ତ ତାଙ୍କୁ କେବଳ ପତିଙ୍କ ଯୋଗୁଁ ହିଁ କରିବାକୁ ପଡ଼ିଥାଏ । କାରଣ ଏମାନେ ସମସ୍ତେ ତାଙ୍କ ପତିଙ୍କର ଆତ୍ମୀୟ ଲୋକ । ସେମାନଙ୍କର ସେବା ଯତ୍ନ କରିବା ତାଙ୍କର କର୍ତ୍ତବ୍ୟ ଓ ଧର୍ମ । ଯେତେବେଳେ ରୁକ୍ମିଣୀଙ୍କର ପତି ଏମାନଙ୍କର ସେବାଯତ୍ନ କରୁଛନ୍ତି, ସେ ନ କରିବେ ବା କିପରି ? ଏହାଦ୍ୱାରା ତାଙ୍କର ପତି ପରମେଶ୍ୱର ପ୍ରସନ୍ନ ହେବେ । ଏହିପରି ସମସ୍ତ ଦେବଦେବୀଙ୍କର ପୂଜା କରିବା ହିଁ ଇଷ୍ଟଙ୍କୁ ପୂଜା କରିବା । ଏ ସମସ୍ତ ଅନୁକୂଳ ହେଲେ ଇଷ୍ଟ ଦେବତା ମଧ୍ୟ ପ୍ରସନ୍ନ ହେବେ । ଯେଉଁ ବ୍ୟକ୍ତି ଶ୍ରଦ୍ଧାର ସହିତ ଇଷ୍ଟଙ୍କୁ ପୂଜା କରି ଅନ୍ୟ ଦେବତାଙ୍କୁ ହୀନଦୃଷ୍ଟିରେ ଉପେକ୍ଷା କରନ୍ତି, ସେ ଉତ୍ତମ ଭକ୍ତ ନୁହନ୍ତି, "ପ୍ରାକୃତ ଭକ୍ତ ।"

ସୂତ କହିଲେ - "ମୁନିଗଣ ! ଭଗବାନଙ୍କର ଆଗମନର ଶୁଭ ସମାଚାର ଶୁଣି ସୁକୁମାରୀ ରାଜକୁମାରୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ପ୍ରତି ମୁହୂର୍ତ୍ତରେ ଗମ୍ଭୀରରୁ ଗମ୍ଭୀରତର ହେବାକୁ ଲାଗିଲେ । ଏହି ସମୟରେ ମହାରାଣୀ ତାଙ୍କୁ କହିଲେ—'ମା ! ଦେଖ୍, ଏବେ ଗୌରୀ ପୂଜନର ସମୟ ହୋଇଗଲା । ମଙ୍ଗଳସ୍ନାନ କରି ନେ ଓ ଶୀଘ୍ର ବୃଦ୍ଧ ବ୍ରାହ୍ମଣଙ୍କ ସହିତ ଦେବୀ ପୂଜା କରିବାକୁ ବାହାରି ପଡ଼ ।"

ଏହା ଶୁଣି ସେବିକାଗଣ ସଙ୍ଗେ ସଙ୍ଗେ କୁମାରୀଙ୍କୁ ସ୍ନାନ କରାଇ ଦିବ୍ୟ ବସ୍ତ୍ରାଭୂଷଣରେ ବିଭୂଷିତ କଲେ ଓ ପୂଜାର ସମସ୍ତ ସମ୍ଭାର ଆଣି ଏକାଠି କରି ରଖିଲେ । ପୂଜାର ସମସ୍ତ ଉପକରଣ ବୃଦ୍ଧା ବ୍ରାହ୍ମଣୀମାନଙ୍କୁ ପଚାରି ସେମାନେ ଆଣି ଏକତ୍ରିତ କରିଥିଲେ । ଯେତେବେଳେ ସମସ୍ତ ଦ୍ରବ୍ୟ ଏକାଠି ହୋଇଗଲା, ସେତେବେଳେ

ସଖୀମାନେ ରାଜକୁମାରୀଙ୍କ ସହିତ ଅନ୍ତଃପୁରରେ ଆସି ମିଳିତ ହେଲେ ଓ ଦେବୀପୂଜା ଉଦ୍ଦେଶ୍ୟରେ ବାହାରି ପଡ଼ିଲେ । ବୃଦ୍ଧା ମାତା ଓ ସ୍ତ୍ରୀଲୋକମାନେ ଆଗେ ଆଗେ ମଙ୍ଗଳ ଗୀତ ଗାଇ ଗାଇ ଚାଲିଲେ । କୁମାରୀଙ୍କ ଚତୁଃପାର୍ଶ୍ୱରେ ତାଙ୍କ ବୟସର ସଖୀଗଣ ଘେରି ରହିଥିଲେ । ଯେପରି ତାରାଗଣଙ୍କ ମେଳରେ ରୋହିଣୀ ନକ୍ଷତ୍ର ଶୋଭାପାଏ, ରାଜକୁମାରୀ ସେହିପରି ଶୋଭା ପାଉଥିଲେ । ବିଦର୍ଭରାଜ କନ୍ୟାର ନିରାପଦ ପାଇଁ ବହୁତ ବ୍ୟବସ୍ଥା କରିଥିଲେ । ଅନ୍ତଃପୁରରୁ ଗୌରୀ ମନ୍ଦିର ପର୍ଯ୍ୟନ୍ତ ପଦାତିକ ସୈନ୍ୟମାନେ ଧାଡ଼ି ଧରି ଦୁଇ ପାର୍ଶ୍ୱରେ ସଜାଗ ରହିଥିଲେ । ତାଙ୍କ ପଛକୁ ଅଶ୍ୱାରୋହୀ ଓ ଅଶ୍ୱାରୋହୀ ସୈନ୍ୟଙ୍କ ପଛକୁ ଗଜାରୋହୀ ସୈନ୍ୟମାନେ ଅଶ୍ୱ ଓ ହସ୍ତୀ ଉପରେ ସୁସଜ୍ଜିତ ହୋଇ ଧାଡ଼ି ଧରି ରହିଥିଲେ । ହାତୀମାନେ ଏପରି ଧାଡ଼ିବାନ୍ଧି ଠିଆ ହୋଇଥିଲେ ଯେ, ସତେ ଯେପରି ଲମ୍ବା ପାହାଡ଼ ଶ୍ରେଣୀ ପ୍ରାଚୀର ପରି ଦୁଇ ପାଖରେ ଦଣ୍ଡାୟମାନ ହୋଇଛି ଓ ସେମାନଙ୍କ ମଝିରେ ସଡ଼କ ନିର୍ମିତ ଯାଇଛି । ଜରାସନ୍ଧ ଓ ଶିଶୁପାଳ ଆଦି ଆଶଙ୍କା କରୁଥିଲେ ଯେ, ଚୋର ତଥା ଲମ୍ପଟ ଶିରୋମଣି କୃଷ୍ଣ ଏଠାକୁ ଆସି ଯାଇଛି । ସେ କୌଣସି ଉତ୍ତମ ଅଭିପ୍ରାୟରେ ସୈନ୍ୟମାନଙ୍କ ସଙ୍ଗରେ ଆଣି ଏଠାକୁ ଆସିନାହିଁ । ଯଦି ଏହି ଯାଦବମାନେ କୌଣସି ବିଘ୍ନ ସୃଷ୍ଟି କରନ୍ତି, ତାହାହେଲେ ଆମେ ସମସ୍ତେ ମିଳିତ ଭାବେ ସେମାନଙ୍କ ଅବିନୟିତାର ଫଳ ସେମାନଙ୍କୁ ଚଖାଇବା । ଏଥିପାଇଁ ସେମାନେ ସୈନ୍ୟମାନଙ୍କୁ ସଜାଗ ରହିବାକୁ ଆଦେଶ ଦେଇଥିଲେ ।

ରାଜକୁମାରୀ ସ୍ତ୍ରୀଲୋକମାନଙ୍କ ଗହଣରେ ବାହାରକୁ ବାହାରିବାକ୍ଷଣି ମହାରାଜ ଭୀଷ୍ମକଙ୍କ ସୈନ୍ୟମାନେ ଅସ୍ତ୍ରଶସ୍ତ୍ର ଧରି ତାଙ୍କୁ ସମ୍ମାନ ପ୍ରଦର୍ଶନ କଲେ । ଅନେକ ସୈନ୍ୟ ଅସ୍ତ୍ର ଉତ୍ତୋଳନ କରି ଆଗେ ଆଗେ ମାର୍ଚ୍ଚିଂ କଲେ ଓ ଅନେକ ପଛେ ପଛେ ମାର୍ଚ୍ଚିଂ କରି ଚାଲିଲେ । ଏହିପରି ତାଙ୍କ ଚତୁର୍ଦ୍ଦିଗରେ ସୈନ୍ୟମାନେ ଘେରି ରହିଥିବା ଅବସ୍ଥାରେ ରାଜକୁମାରୀ ମନ୍ଦିର ଅଭିମୁଖେ ଯାତ୍ରା କରୁଥିଲେ । ଏତେ ଭିଡ଼ ହୋଇଥିଲା ଯେ, ସେ ବାହାର ପାଖର କୌଣସି ବସ୍ତୁ ଦେଖିପାରୁ ନ ଥିଲେ । ସେ କେବଳ ମନେ ମନେ ଶ୍ରୀକୃଷ୍ଣଙ୍କର ଚରଣାରବିନ୍ଦକୁ ଧ୍ୟାନ କରୁଥିଲେ । ତାଙ୍କ ପାଦ ଏତେ କୋମଳ ଥିଲା ଯେ, ଖାଲି ପାଦରେ ଚାଲୁଥିବାରୁ ଅବନୀ ଲଜ୍ଜିତ ହୋଇ ନରମ ହୋଇ ଯାଉଥିଲା ଓ ନିଜର ସ୍ୱାଭାବିକ କଠିନତା ପରିତ୍ୟାଗ କରି ଦେଇଥିଲା । ଦେବୀଙ୍କ ପୂଜା ସମାପ୍ତ ନ ହେବା ପର୍ଯ୍ୟନ୍ତ ତାଙ୍କ ମୁଖରୁ ପଦେହେଲେ କଥା ବାହାରୁ ନ ଥିଲା । ସେ ପୂଜା ସରିବା ପର୍ଯ୍ୟନ୍ତ ମୌନବ୍ରତ ପାଳନ କରିଥିଲେ । ତାଙ୍କ ଆଗେ ଆଗେ ମୃଦଙ୍ଗ, ପଣବ, ଶଙ୍ଖ, ତୂର୍ଯ୍ୟ ଓ ଭେରୀ ଆଦି ମଙ୍ଗଳବାଦ୍ୟ ମଧୁର ଧ୍ୱନିରେ ବାଜି ବାଜି ଚାଲିଥିଲା । ବସ୍ତ୍ରାଳଙ୍କାରରେ ଭୂଷିତା ବୃଦ୍ଧା ବ୍ରାହ୍ମଣୀଗଣ ଆଗେ ଆଗେ ଚାଲିଥିଲେ, ତାଙ୍କ ପଛକୁ ନିଜ କୁଳର ବୃଦ୍ଧା ସ୍ତ୍ରୀ ଲୋକମାନେ ଏବଂ ତାଙ୍କ ପଛକୁ ହସ୍ତରେ ପୁଷ୍ପମାଳ୍ୟ ଚନ୍ଦନ ଓ ବସ୍ତ୍ର ଅଳଙ୍କାର ଆଦି ଉପହାର ଧରି ସେବିକାଗଣ ଚାଲିଥିଲେ । ନର୍ତ୍ତକ ନର୍ତ୍ତକୀଗଣ ଆଗେ

ଅଗ୍ରେ ନୃତ୍ୟ କରୁଥିଲେ ଓ ଗାୟକ, ସୂତ, ମାଗଧ ତଥା ଖେଳାଳୀଗଣ ସଙ୍ଗୀତ ଗାଇ ଗାଇ ଓ ଖେଳ କସରତ ଦେଖାଇ କନ୍ୟା ସହିତ ଚାଲିଥିଲେ । ଏହିପରି ଝୁବ୍‌ କାକ୍‌ଜମକରେ ରାଜକୁମାରୀଙ୍କର ଦେବୀପୂଜନ ଯାତ୍ରା ଅନୁଷ୍ଠିତ ହୋଇଥିଲା । ସେ ମଙ୍ଗଳା ଗୌରୀଙ୍କ ମନ୍ଦିରରେ ଯାଇ ପହଞ୍ଚିଲେ । ସେଠାରେ ପହଞ୍ଚିବା ମାତ୍ରେ ସେବିକାଗଣ ତାଙ୍କ ପାଦ-ଧୌତ କରି ଦେଲେ । ଗୋଡ଼ ହାତ ଧୋଇ, ଆଚମନ କରି ରାଜକୁମାରୀ ମନ୍ଦିର ଭିତରକୁ ପ୍ରବେଶ କଲେ । ଅତ୍ୟନ୍ତ ଭକ୍ତି ସହକାରେ, ଶ୍ରଦ୍ଧାଭାବରେ ପାର୍ବତୀଙ୍କୁ ସେ ହାତଯୋଡ଼ି ଦଣ୍ଡବତ ହୋଇ ତାଙ୍କ ସମ୍ମୁଖରେ ବସିଲେ । ବୃଦ୍ଧା ବ୍ରାହ୍ମଣୀଗଣ ଯେପରି ପୂଜା କରିବାକୁ ତାଙ୍କୁ ପରାମର୍ଶ ଦେଲେ, ସେ ସେହିପ୍ରକାର ପୂଜା କଲେ । ଆସନ, ପାଦ୍ୟ, ଅର୍ଘ୍ୟ, ଆଚମନୀୟ ଜଳପ୍ରଦାନ କରି ସ୍ନାନାଦି କରାଇ ବସ୍ତ୍ର, ହାର, ଆଭୂଷଣ, ଚନ୍ଦନ, ଧୂପ, ଦୀପ, ନୈବେଦ୍ୟ, ଫଳ ଓ ନାନାଦି ଉପହାର ପ୍ରଦାନ କଲେ । ମାଳପୁଆ, ମୋଦକ ଓ ଅନ୍ୟାନ୍ୟ ପାକ ହୋଇଥିବା ଦ୍ରବ୍ୟ ତାଙ୍କ ସମ୍ମୁଖରେ ରଖିଲେ । ତାଙ୍କ ସମ୍ମୁଖ ଭାଗରେ ସହସ୍ର ଦୀପ ଜଳାଇଲେ । ସୌଭାଗ୍ୟବତୀ ବିପ୍ର ପତ୍ନୀଗଣଙ୍କ ନିର୍ଦ୍ଦେଶରେ ସେ ଦେବୀଙ୍କୁ ବିଧିମୁତାବକ ପୂଜା କରି ତାଙ୍କର ଦାମ୍ପତ୍ୟ ଜୀବନ ସୁଖମୟ ହେବାପାଇଁ ପ୍ରାର୍ଥନା କଲେ । ପୂଜା ଶେଷରେ ସେ ହାତଯୋଡ଼ି ମନେ ମନେ ଦେବୀଙ୍କୁ ପ୍ରାର୍ଥନା କଲେ ଯେ—"ହେ ଦେବି ! ହେ ଅମ୍ବିକେ ! ତୁମେ ପ୍ରତ୍ୟେକଙ୍କ ହୃଦୟସ୍ଥ କଥା ଜାଣ, ମୋର ଏତିକି ଅଳି, ତୁମେ ମୋ ମନୋକାମନା ପୂର୍ଣ୍ଣକର । ଭଗବାନ ମଦନମୋହନ ମୋର ପତି ହୁଅନ୍ତୁ, ଏହା ହିଁ ମୋତେ ଆଶୀର୍ବାଦ କର । ମୁଁ ତୁମ ପାଦପଦ୍ମରେ ପ୍ରେମପୂର୍ବକ ବାରମ୍ବାର ପ୍ରଣାମ କରୁଅଛି । ଏହିପରି ବନ୍ଦନା କରି ରୁକ୍ମିଣୀ ଭଗବତୀଙ୍କୁ ପ୍ରଦକ୍ଷିଣ କଲେ । ବ୍ରାହ୍ମଣପତ୍ନୀଗଣଙ୍କ ଚରଣ ବନ୍ଦନା କଲେ । ବିପ୍ର ପତ୍ନୀଗଣ ପ୍ରସାଦରେ ତାଙ୍କ ଅଞ୍ଚଳ ଭରିଦେଲେ । ପ୍ରସାଦକୁ ତାଙ୍କ ମସ୍ତକରେ ଲଗାଇ ତାଙ୍କ ସହଚରୀମାନଙ୍କ ମଧ୍ୟରେ ବାଣ୍ଟିଦେଲେ । ଏହାପରେ ଚନ୍ଦ୍ରମୁଦ୍ରିକା ଶୋଭିତ ପରମ ସୁକୋମଳ କରକମଳକୁ ସହଚରୀମାନଙ୍କ କାନ୍ଧ ଉପରେ ରଖି ରାଜକୁମାରୀ ଉତ୍ସୁକତା ପୂର୍ବକ ମନ୍ଦିର ବାହାରକୁ ଆସିଲେ । ସେତେବେଳେ ସବୁଆଡ଼େ ବାଦ୍ୟଶବ୍ଦରେ ମୁଖରିତ ହେଉଥିଲା । କନ୍ୟାର ପୂଜା ଶେଷ ହୋଇଥିବା ଖବର ପାଇ ସମସ୍ତ ରାଜକୁମାର ସଜବାଜ ହୋଇ ତାଙ୍କର ସୌନ୍ଦର୍ଯ୍ୟ ଦର୍ଶନ କରିବା ପାଇଁ ଉତ୍ସୁକତା ପୂର୍ବକ ସୈନ୍ୟମାନଙ୍କ ଆଗରେ ଠିଆ ହୋଇଗଲେ ।

ଏବେ ରୁକ୍ମିଣୀ ଦେବୀ ତାଙ୍କର ମୌନବ୍ରତ ଭାଙ୍ଗି ଦେଇ ଥାଆନ୍ତି ଓ ମୁଣ୍ଡରୁ ଓଢ଼ଣା କାଢ଼ି ଦେଇ ଥାଆନ୍ତି । ସେ ନିଜର ସଖୀମାନଙ୍କ ସହିତ ହସିହସି କଥାବାର୍ତ୍ତା ମଧ୍ୟ ହେଉଥାଆନ୍ତି । କିନ୍ତୁ ତାଙ୍କ ଦୃଷ୍ଟିରେ ଚଞ୍ଚଳତା ଥାଏ । ସେ ସେହି ଭିଡ଼ ମଧ୍ୟରେ କାହାରିକୁ ଅନ୍ୱେଷଣ କରୁଥିବାପରି ଜଣା ପଡୁଥାଆନ୍ତି । ତାଙ୍କର ଭାବ କେହି ବୁଝିବାକୁ ସମର୍ଥ ହେଉ ନ ଥାନ୍ତି । କେହି କେହି ସଖୀ କହୁଥାଆନ୍ତି "ରାଜକୁମାରି ! ତୁମେ

ଯାହାଙ୍କୁ ଖୋଜୁଅଛ, ସେ ତ ଅତିଥି ଭବନରେ ବିଶ୍ରାମ ନେଉଥିବେ, ଏମାନେ ସବୁ ଅନ୍ୟ ରାଜକୁମାର ।” ଏହା ଶୁଣି ସେ ମିଚ୍ଛ-ମିଚ୍ଛକା ରାଗିଯାଇ ନିଜର ଅପ୍ରସନ୍ନତା ପ୍ରକାଶ କରୁଥିଲେ ଓ ସେମାନଙ୍କ କଥାକୁ ଉପହାସ କରୁଥିଲେ ।

ତାଙ୍କର ସୌନ୍ଦର୍ଯ୍ୟ ଅନବଦ୍ୟ ଥିଲା । ସେ ବଡ଼ ବଡ଼ ଧୀର ବୀରମାନଙ୍କ ମନକୁ ମଧ୍ୟ ଦେବମାୟା ସଦୃଶ ବିମୋହିତକାରିଣୀ ଥିଲେ । ତାଙ୍କର କଟି ପ୍ରଦେଶ ଅତ୍ୟନ୍ତ ସୁନ୍ଦର ଥିଲା, ସୂକ୍ଷ୍ମ ଓ କ୍ଷୀଣ ରେଶମୀ ବସ୍ତ୍ରରେ ତାହା ଆଚ୍ଛାଦିତ ହୋଇଥିଲା । ତାଙ୍କର ମନୋହର ମୁଖମଣ୍ଡଳର କମନୀୟ କନକ କୁଣ୍ଡଳଦ୍ୱୟ ଦେଦୀପ୍ୟମାନ ହେଉଥିଲା । ସେ ପନ୍ଦରବର୍ଷ ବୟସ ଅତିକ୍ରମ କରି ଷୋଳ ବର୍ଷରେ ପଦାର୍ପଣ କରିଥିଲେ । ତାଙ୍କ ଅଙ୍ଗପ୍ରତ୍ୟଙ୍ଗରୁ ଯୌବନାବସ୍ଥାର ଯଥା ସ୍ଫୁଟି ଝଲସି ଉଠୁଥିଲା । ରତ୍ନଖଚିତ ମେଖଳାରେ ତାଙ୍କର କଟିଦେଶ ଶୋଭା ପାଉଥିଲା । ରେଶମୀ କଞ୍ଚୁକୀରେ ଆବୃତ୍ତ ଉନ୍ନତ ବକ୍ଷ-ସ୍ଥଳରେ ହାର ଓ କଣ୍ଠମାଳାଗୁଡ଼ିକ ଦୋଳାୟମାନ ହେଉଥିବା ସମୟରେ ପ୍ରେମ କଳହ କରୁଥିଲେ । ମନୋହର ମୁଖ ଉପରକୁ କଳାକଳା ଅଳକାବଳୀ ବାୟୁରେ ଆନ୍ଦୋଳିତ ହୋଇ ଏପରି ପ୍ରତୀତ ହେଉଥିଲା ଯେ, ସତେ ଯେପରି ଚନ୍ଦ୍ରକୁ ଗ୍ରାସ କରିଥିବା ରାହୁ ଡରି ଡରି କିଛି କିରଣ ପ୍ରକାଶ କରାଇ ପୁନଶ୍ଚ ଗ୍ରାସ କରୁଅଛି । ରାଜକୁମାରୀଙ୍କ ଦୃଷ୍ଟିରେ ଉତ୍ସୁକତା, ଚଞ୍ଚଳତା, ବ୍ୟଗ୍ରତା, ଅଧୀରତା, ଓ ଆଶା ନିରାଶାର ଭାବ ପ୍ରତି ମୁହୂର୍ତ୍ତରେ ବ୍ୟକ୍ତ ହେଉ ଥିଲା । ବିମ୍ବଫଳ ସଦୃଶ ତାଙ୍କର ଅରୁଣ ଅଧରର କଳିତ କାନ୍ତିରେ କୁନ୍ଦକଳି ସଦୃଶ ତାଙ୍କର ଦ୍ୟୁତିମତୀ ଦନ୍ତାବଳୀ ଡାଳିମ୍ବଦାନା ସଦୃଶ ଶୁଭ୍ରତା ଓ ଅରୁଣତାର ସଙ୍ଗମସ୍ଥଳୀରେ ପରିଣତ ହୋଇଥିଲା । ସେ ଯେତେ-ବେଳେ କମଳ ସଦୃଶ ଅରୁଣବର୍ଣ୍ଣ ବିଶିଷ୍ଟ ତାଙ୍କର କୋମଳ ଚରଣ ଚାଳନା କରୁଥିଲେ ସେତେବେଳେ ନୂପୁରର ସୁମଧୁର ଝଙ୍କାରରେ ଚତୁର୍ଦ୍ଦିଗ ଝଙ୍କୃତ ହେଉଥିଲା ଓ ତାହା ଦର୍ଶକମାନଙ୍କ କର୍ଣ୍ଣକୁହରରେ ସଂଜୀବନୀର କାର୍ଯ୍ୟ କରୁଥିଲା । ତାହା ଶୁଣିବା-ମାତ୍ରେ ସମସ୍ତେ ଚମକି ଉଠି କୁମାରୀଙ୍କ ଆଡ଼କୁ ଚାହୁଁଥିଲେ । ସେ ରାଜହଂସିନୀ ଭଳି କଳ କଳ ଶବ୍ଦ କରି ମନ୍ଦ ମନ୍ଦ ଗତିରେ ଚାଲୁଥିଲେ । ରାଜପଥର ଉଭୟ ପାର୍ଶ୍ୱରେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ଯେତେ ସୈନ୍ୟ ରହିଥିଲେ, ସେମାନେ ଚିତ୍ରପ୍ରତିମାପରି ପ୍ରତୀତ ହେଉଥିଲେ । ସେମାନଙ୍କର ଚକ୍ଷୁର ପଲକ ପଡ଼ୁନଥିଲା କିମ୍ବା ଅଙ୍ଗପ୍ରତ୍ୟଙ୍ଗ ହଲଚଲ ହେଉ ନ ଥିଲା । ସତେ ଯେପରି କେହି ସେମାନଙ୍କୁ ମୋହିନୀ ମନ୍ତ୍ରରେ ବଶୀଭୂତ କରି ଦେଇଥିଲା । ରାଜକୁମାରମାନଙ୍କର ଦଶା ଖରାପ ଥିଲା । ସେମାନେ ବାହନ ଉପରେ ବସିଥିଲେ । ରାଜକୁମାରୀଙ୍କୁ ଦେଖୁ ଦେଖୁ ସେମାନେ ଆଗକୁ ଆଗେଇ ଆସିବାକୁ ଲାଗିଲେ ଓ ସଙ୍ଗେ ସଙ୍ଗେ ନିଜ ନିଜର ବାହନ ଉପରୁ ଅବତରଣ କଲେ ।

ବିଦର୍ଭନନ୍ଦିନୀ ଭଗବତୀ ରୁକ୍ମିଣୀ ବାରମ୍ବାର ନିଜର ବାମ କରକମଳର କୋମଳ ଅଙ୍ଗୁଳିଗୁଡ଼ିକୁ ମୁଖମଣ୍ଡଳର ଆଲୁଳାୟିତ ଅଳକାବଳୀ ଉପରେ ଚଳାଇ

ଅାଣୁଥିଲେ ଓ ହସ୍ତୁଲତାଯୁକ୍ତ ଦୃଷ୍ଟିରେ ରାଜାମାନଙ୍କ ଆଡ଼କୁ ଚାହୁଁଥିଲେ । ସେହି ମୂର୍ଖମାନେ ମନେ କରୁଥିଲେ, କୁମାରୀ ସେମାନଙ୍କୁ ଅନୁରାଗଭରା ଦୃଷ୍ଟିରେ ଚାହୁଁଛନ୍ତି । ସେହି ଅଜ୍ଞମାନଙ୍କୁ ଜଣା ନଥିଲା ଯେ, ଏହି ମହାମାୟା ଆତ୍ମମାନଙ୍କୁ ନିଜର ମନମୋହିନୀ ମାୟାଦ୍ୱାରା ମୋହିତ କରି ନିଜର ପ୍ରାଣପତିଙ୍କୁ ଖୋଜୁଅଛନ୍ତି । ସେମାନେ ରାଜକୁମାରୀଙ୍କର ଦୃଷ୍ଟିରୂପକ ବାଣରେ ବିଦ୍ଧ ହୋଇ ମୂର୍ଚ୍ଛିତ ହୋଇ ପଡ଼ୁଥିଲେ । ଏହିପରି ନିଜର ମନୋହର ହସ ଓ ଲାଜୁଆ ଚାହାଣିରେ ସେ ରାଜକୁମାରମାନଙ୍କୁ ମୋହିତ କରି ଓ ପ୍ରିୟତମଙ୍କୁ ଅନ୍ୱେଷଣ କରି ସେ ଅଗ୍ରସର ହେଉଥିଲେ । ଏହିପରି ସମୟରେ ସେ ଗରୁଡ଼ଧ୍ୱଜ ରଥ ଉପରେ ପୀତାମ୍ବର ପରିଧାନକାରୀ ଶ୍ୟାମସୁନ୍ଦରଙ୍କୁ ବସିଥିବାର ଦୂରରୁ ଦେଖି ପାରିଲେ । ତାଙ୍କୁ ଦର୍ଶନ କରୁ କରୁ ତାଙ୍କ ଶରୀରରେ ବିଦ୍ୟୁତ୍ ଖେଳିଗଲା ପରି ବୋଧ ହେଲା । ତାଙ୍କ ଲୋମରେ ଶିହରଣ ଜାତହେଲା ଓ ପ୍ରସନ୍ନତା ହେତୁ ମୁଖମଣ୍ଡଳ ଝଲସି ଉଠିଥିଲା । ଏବେ ସେ ରାଜପଥ ଆଡ଼େ ନ ଯାଇ ସେହି ବିଶାଳ ଗରୁଡ଼ଧ୍ୱଜ ରଥ ଆଡ଼କୁ ଆଗେଇ ଚାଲିଲେ । ଏହା ଦେଖି ତାଙ୍କ ସାଙ୍ଗସାଥୀମାନେ ଚକିତ ହେଲେ । ସୈନିକ ଓ ବାଦ୍ୟକାରମାନଙ୍କୁ ମଧ୍ୟ ଏହା ବିସ୍ମୟକର ବୋଧ । କିନ୍ତୁ ରାଜକୁମାରୀ ସେହି ଦିଗକୁ ଆଗେଇ ଚାଲିଲେ । ଏଣେ କୁମାରୀ ଧୀରେ ଧୀରେ ଅଗ୍ରସର ହେଉଥାଆନ୍ତି ଓ ତେଣୁ ରଥ ବେଗରେ ତାଙ୍କ ଆଡ଼କୁ ଆସୁଥାଏ । ରଥକୁ ସମ୍ମୁଖରେ ପହଞ୍ଚିବାର ଦେଖି ରାଜକୁମାରୀ ପଛରେ ଆସୁଥିବା ନିଜର ସାଙ୍ଗସାଥୀମାନଙ୍କୁ କହିଲେ—"ଭଉଣୀମାନେ ! ନମସ୍କାର ! ମୁଁ ଭ୍ରମବଶତଃ ଯାହା ଦୋଷ କରିଥିବି ମୋତେ ତୁମ୍ଭେମାନେ କ୍ଷମା କରିବ । ତୁମ୍ଭେମାନେ କୁଶଳରେ ରୁହ, ମୁଁ ଚାଲିଲି ।" ସଖୀମାନେ ଏଥିରୁ କିଛି ବୁଝିପାରିଲେ ନାହିଁ । କେବଳ ତାହା ଦୁଇଜଣ ହିଁ ବୁଝିଥିଲେ, ଜଣେ ଶ୍ରୀକୃଷ୍ଣ ଓ ଅନ୍ୟଜଣେ ନିଜେ ରୁକ୍ମିଣୀ ।

## ଛପ୍ପୟ

କରି ପୂଜା ପରସାଦ ଧାରି ସିଏ ବନିତା କୀନ୍ହୀଂ ।
ହୋବେଂ ପତି ମମ କୃଷ୍ଣ, ସୁ ଆଶିଷ ଦେବୀ ଦୀନ୍ହୀଂ ॥
ଗୌରୀ ଗୃହତେଁ ନିକସି ନିହାରେଂ ହରିକୁଁ ଇତ ଉତ ।
ଶୋଭା ବରନି ନ ଜାୟ ମନହୁଁ ସୁନ୍ଦରତା ବିହରତ ॥
ରୂପ, ଶୀଲ, ବୟ, ବିନୟ ଲଖି, ସଚର ଅଚର ସବ ଭୟେ ।
କାମୀ ନୃପ ବାହନ ଚଢ଼େ, ସୁନ୍ଦରତା ଲଖି ଗିରି ଗୟେ ॥

—*—

# ରୁକ୍ମଣୀ ହରଣ ପ୍ରସଙ୍ଗ

ତାଂ ରାଜକନ୍ୟାଂ ରଥମାରୁରୁକ୍ଷତୀଂ
କହାର କୃଷ୍ଣୋ ଦ୍ୱିଷତାଂ ସମୀକ୍ଷତାମ୍ ।
ରଥଂ ସମାରୋପ୍ୟ ସୁପର୍ଣ୍ଣ-ଲକ୍ଷଣଂ
ରାଜନ୍ୟଚକ୍ରଂ ପରିଭୂୟ ମାଧବଃ ॥ ❊

( ଶ୍ରୀ ଭା: ୧୦ସ୍କ, ୫୩ ଅ, ୫୫ ଶ୍ଳୋକ )

## ଛପ୍ପୟ

ଗରୁଡ଼ଧ୍ୱଜ ରଥ ନିରଖି ବଢ଼ୀ ଉତ୍ସୁକ୍ତା କୁଁଆରୀ ।
ଆବତ ଦେଖୀ କୁଁଅରି ହାଁକି ରଥ ଲୟୋ ଲଲା ॥
କୀଯୋ ଉଁଚେ ହାଥ ପକରି କେଂ ରଥ ବୈଠାଇଁ ।
ପାୟୋ ପତିକୋ ପରସ ଫୁଲ୍ଲତ୍ୱଗାଂ ଅଙ୍ଗ ଅଙ୍ଗ ଆଈଂ ।
ଜବେ ନିର୍ଭୟ ଭାଗ ଲୈ, ସିଂହ ସୃଗାଲନି ମଧ୍ୟ ଜ୍ୟୋଂ ।
ଦେଖତ ଦେଖତ ନୃପନିକେ, ଭଗେ ଭାଗ ଲୈ ଶ୍ୟାମ ତ୍ୟୋଂ ॥

ବ୍ରାହ୍ମ, ଆର୍ଷ, ଗାନ୍ଧର୍ବ, ରାକ୍ଷସ ଓ ପୈଶାଚ ଆଦି ଆଠ ପ୍ରକାର ବିବାହ ରହିଛି । ଏମାନଙ୍କ ମଧ୍ୟରୁ ଗୋଟିକରୁ ଅନ୍ୟଟି ଅଧମ । ବ୍ରହ୍ମରୁ ଆର୍ଷ ଅଧମ, ତାଠାରୁ ଗାନ୍ଧର୍ବ ଓ ତା'ଠାରୁ ରାକ୍ଷସ ବିବାହ ଅଧମ ଅଟେ । ବ୍ରାହ୍ମ ବିବାହରେ କନ୍ୟାର ପିତା ବରକୁ ବରଣ କରି କନ୍ୟାକୁ ଅଳଙ୍କୃତ କରି ବିଧିବିଧାନ ପୂର୍ବକ ତାଙ୍କୁ ସମର୍ପଣ କରେ ।

---

❊ ଗଗନେ ଦେଖି କୃଷ୍ଣରଥ । ବେଗେ ଟୋକିଲା ବେନିହସ୍ତ ॥
ରଥେ ଉଠିଲା ପ୍ରାଣମଣି । କର ଧଇଲେ ଚକ୍ରପାଣି ॥
ନେଇଣ ବସାଇଲେ କୋଳେ । ଶୂନ୍ୟେ ଦେଖନ୍ତି ଦିଗପାଳେ ॥
ହେଲେ ଚକିତ ସର୍ବଜନ । ଥିଲେ ଯେ ଅନେକ ରାଜନ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ ସ୍କ, ଅ ୫୭)

ଆର୍ଷ ବିବାହରେ ବର ସ୍ୱୟଂ କନ୍ୟା ଯାଚନ୍ତା କରିବାକୁ ଯାଏ ଓ ଦୁଇଟି ବୃଷଭ ମଙ୍ଗଳ ରୂପରେ କନ୍ୟାର ପିତାଙ୍କୁ ପ୍ରଦାନ କରି କନ୍ୟା ଗ୍ରହଣ କରେ । ଏ ଦୁଇଟି ଧର୍ମବିବାହ । ଗାନ୍ଧର୍ବ ବିବାହ ଯଦିଚ କ୍ଷତ୍ରିୟମାନଙ୍କ ପାଇଁ ଶ୍ରେଷ୍ଠ, ତଥାପି ତାହା କାମବିବାହ । ବର ଓ କନ୍ୟା ଉଭୟଙ୍କ ମନ ମିଳିଗଲେ ମାତା ପିତାଙ୍କ ବିନା ପରାମର୍ଶରେ ଏହି ବିବାହ ସମ୍ପନ୍ନ ହୁଏ । ଏଥିରେ ବେଦମନ୍ତ୍ର ପାଠ କରାଯାଏ ନାହିଁ । ତଥାପି ଏହା ଆପତ୍ତିଜନକ ବିବାହ ନୁହେଁ । ରାକ୍ଷସ ବିବାହରେ କନ୍ୟାର ମାତାପିତା ତଥା କୁଟୁମ୍ବଙ୍କୁ ଜିଣି, ସେମାନଙ୍କୁ ହତ୍ୟାକରି କିମ୍ବା ବନ୍ଧନ କରି ବଳପୂର୍ବକ କନ୍ୟାକୁ ଅପହରଣ କରାଯାଏ । ଏଥିରେ କନ୍ୟାର ଇଚ୍ଛା ଥାଉ ବା ନ ଥାଉ ଏହାକୁ 'ବୀର୍ଯ୍ୟଶୁଳ୍କ ବିବାହ' କୁହନ୍ତି । ଆଉ ଏକ ବିବାହ ଧନ ଦେଇ ମଧ କରାଯାଏ । ଏହା ଅତ୍ୟନ୍ତ ନିକୃଷ୍ଟ ବିବାହ । ଯଦି ରାକ୍ଷସ ବିବାହରେ କନ୍ୟାର ଅନୁମତି ମିଳେ, ତାହାହେଲେ ତାହା ଗାନ୍ଧର୍ବ ଓ ରାକ୍ଷସ ଉଭୟର ସଂମିଶ୍ରଣ ଅନ୍ୟ ଏକପ୍ରକାର ବିବାହ । ଭଗବାନ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କ ସହିତ ରାକ୍ଷସ ବିବାହ ତ କରିଥିଲେ; କିନ୍ତୁ ଏଥିରେ କନ୍ୟାର ପୂର୍ଣ୍ଣ ଅନୁମତି ଥିଲା । ତେଣୁ ଏହାକୁ ଗାନ୍ଧର୍ବ ବିବାହ ମଧ କୁହାଯାଇ ପାରେ । ପିତାଙ୍କର ମଧ ଅନୁମତି ଥିଲା ଓ ସେ ମନେ ମନେ ଭଗବାନଙ୍କୁ ଡାକୁଥିଲେ ଏବଂ ବର ଭଳି ତାଙ୍କୁ ବରଣ କରିଥିଲେ । ଏଥିପାଇଁ ଏ ବିବାହରେ ବ୍ରାହ୍ମବିବାହର ବିଧି ମଧ ପାଳନ କରାଯାଇଥିଲା । ଏହି ବିବାହରେ ଭଗବାନ କନ୍ୟାର ପରିବାରରେ କାହାରିକୁ ହେଲେ ପ୍ରହାର କରି ନ ଥିଲେ । କୌଣସି କନ୍ୟାପକ୍ଷ ବନ୍ଧୁବାନ୍ଧବଙ୍କୁ ମାରି ମଧ କନ୍ୟାକୁ ନେଇଯାଇ ନ ଥିଲେ । ତେଣୁ ଏହି ଅନୁପମ ବିବାହରେ ସବୁପ୍ରକାର ବିବାହର ବିଧି ପାଳନ କରାଯାଇଥିଲା ।

ସୂତ କହିଲେ—"ମୁନିଗଣ ! ଯେପରି ଭାଗ୍ୟବାନ ଲୋକଙ୍କୁ ଲକ୍ଷ୍ମୀ ପର୍ଯ୍ୟାପ୍ତ ଧନ ପ୍ରଦାନ କରନ୍ତି, ସେହିପରି ଦେବୀମନ୍ଦିର ନିକଟରେ ରହିଥିବା ଭଗବାନ୍ ବାସୁଦେବ ନିକଟରେ ସ୍ୱୟଂ ଭଗବତୀ ରୁକ୍ମିଣୀ ଆସି ଉପସ୍ଥିତ ହେଲେ । ଯିବାମାତ୍ରେ ସେ ସୁବର୍ଣ୍ଣ ମୁଦ୍ରିକାରେ ବିଭୂଷିତ କମଳ ପାଖୁଡ଼ା ସଦୃଶ କୋମଳ ଅଙ୍ଗୁଳି ବିଶିଷ୍ଟ ନିଜର ଅରୁଣରଙ୍ଗର କର ଉପରକୁ ଉଠାଇ ସଙ୍କେତରେ ଭଗବାନଙ୍କୁ କହିଲେ— 'ଆପଣ ଏ ସମସ୍ତ ରାଜାଙ୍କୁ ଦେଖାଇ ମୋର ପାଣିଗ୍ରହଣ କରନ୍ତୁ । ଆପଣ ମୋ ପାଣିଗ୍ରହଣ କଲା ପରେ ଆଉ ଆପଣଙ୍କଠାରୁ ମୋତେ କେହି ପୃଥକ୍ କରି ପାରିବେ ନାହିଁ ।' ଭଗବାନ୍ ଶ୍ରୀକୃଷ୍ଣ ତ ତାଙ୍କ ପାଣିଗ୍ରହଣ କରିବାପାଇଁ ସମୁତ୍ସୁକ ଥିଲେ । ଯୋଗକୁ ନିଜେ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କ ଆଡ଼କୁ ହାତ ବଢ଼ାଇ ଦେଲେ । ରୁକ୍ମିଣୀ ଥିଲେ ରାଜକନ୍ୟା । ସେ ରଥ ଉପରେ ବସିବା ଓ ରଥଚାଳନା କରିବା ଆଦି ଜାଣିଥିଲେ । ତେଣୁ ଭଗବାନଙ୍କ କରକମଳର ସହାୟତାରେ ସେ ରଥ ଆରୋହଣ କଲେ । ଭଗବାନ ତାଙ୍କୁ ବାମାଙ୍କରେ ବସାଇଲେ । ସତେ ଯେପରି ଦେବୀଙ୍କୁ ସାକ୍ଷୀ ରଖି

ବିବାହର ସମସ୍ତ ସଂସ୍କାର ସମ୍ପନ୍ନ ହୋଇଗଲା । ଏବେ ସେଠାରେ ଅଧିକ ସମୟ ରହିବାକୁ ଭଗବାନ୍ ଉଚିତ ମନେ କଲେ ନାହିଁ । ସିଂହ ଯେପରି ସମସ୍ତ ବନ୍ୟ ପ୍ରାଣୀଙ୍କ ସମ୍ମୁଖରେ ନିଜର ଭାଗ ନେଇ ପଳାଏ, ସେହିପରି ସେ ରାଜକୁମାରୀଙ୍କୁ ନେଇ ବଳରାମ ଆଦି ଯାଦବଙ୍କ ସହିତ ସେଠାରୁ ପ୍ରସ୍ଥାନ କଲେ ।

ରାଜାମାନଙ୍କ ମଧ୍ୟରେ ହାଲହୋଲ ପଡ଼ିଗଲା । ଲୋକମାନେ ହୋ ହା ହେଲେ । "କଣ ହେଲା ? କଣ ହେଲା ?" କହି ଲୋକମାନେ ଧାଇଁ ଶୁଣିବାକୁ ପାଇଲେ ଯେ, କିଏ ଜଣେ ରାଜକୁମାରୀଙ୍କୁ ନେଇ ଚାଲି ଯାଉଛି । କିଏ ଏ ପ୍ରକାର ଅସାଧୁ ଉପାୟ ଅବଲମ୍ବନ କଲା ? କିଏ ସର୍ପ ଶିରରେ ପାଦରଖି ତାକୁ କ୍ରୁଦ୍ଧିତ କଲା ? ସେଠାରେ ଜଣେ ଭଗବତ୍ ଭକ୍ତ ରଜା ଥିଲେ । ସେ ହସି ହସି କହିଲେ—'ହେଲା କଣ ? ଯାହା ହେବାର ଥିଲା ତ ହେଲା । ଯାହାର ବସ୍ତୁ ସେ ତାକୁ ନେଇ ଚମ୍ପଟ କଲା । ଏବେ ତୁମ୍ଭେମାନେ ପଥର ଉପରେ ମୁଣ୍ଡ କଚାଡ଼ କିମ୍ବା କଳାମୁଖ କରି ନିଜ ନିଜର ଘରକୁ ରାସ୍ତା ଦେଖ । ପକ୍ଷୀ ଫୁରର୍ କରି ଉଡ଼ିଗଲା, ଖେଳ ସରିଗଲା ।"

ଏହା ଶୁଣି ଜରାସନ୍ଧର ବଂଶରୁ ଆସିଥିବା ଜଣେ ଭଗବଦ୍‌ବିଦ୍ୱେଷୀ ରାଜା କ୍ରୋଧଭରେ ହୋଇ ନିଶ ମୋଡ଼ି କହିଲା—"ଆରେ ! ଏହା ତ ଆମ୍ଭମାନଙ୍କୁ ବଡ଼ ଅପମାନ । ଆମ୍ଭମାନଙ୍କ ଦୀର୍ଘ ଦିନର ଯଶକୀର୍ତ୍ତି ଆଜ ଧୂଳିସାତ୍ ହୋଇଗଲା ! ହାୟ ! ଆମ୍ଭେମାନେ ଦେଖୁ ଦେଖୁ ଗଉଡ଼ଟୋକା ଏକ ରାଜକନ୍ୟାକୁ ବଳପୂର୍ବକ ଅପହରଣ କରି ନେଉଛି ଓ ଆମେ ସବୁ ନୀରବ ଦ୍ରଷ୍ଟା ହୋଇ ରଥର ଘର୍ ଘର୍ ଶବ୍ଦ ଶୁଣୁଛୁ । ଆମ୍ଭମାନଙ୍କ ବଳବୀର୍ଯ୍ୟକୁ ଶତଧିକ୍ । ଆମ୍ଭମାନଙ୍କର ଏ ଧନୁଶର କେବଳ ଦେଖିବାର ବସ୍ତୁ । ହାୟ ! ଆମେ ସବୁ ଅସ୍ତ୍ରଶସ୍ତ୍ରଧାରୀ ଏତେ ରାଜା ଥାଉଁ ଥାଉଁ କ୍ଷତ୍ରିୟଠାରୁ ନୀଚ ଏ ଗଉଡ଼ ଟୋକା ଆମ୍ଭମାନଙ୍କ ଆଗରେ ରାଜକୁମାରୀଙ୍କୁ ଏପରି ନେଇଗଲା, ସତେ ଯେପରି ଶିକାରୀ ସିଂହ ସମ୍ମୁଖରୁ ଶୃଗାଳ ହରିଣକୁ ନେଇ ପଳାଇ ଯିବ ?"

ଏହା ଶୁଣି ଅନ୍ୟ ନୃପତିମାନେ କହିଲେ—"ଆରେ ଭାଇ ! ଏପରି ପଶ୍ଚାତ୍ତାପ କରି ଲାଭ କଣ ? କିଛି ପୁରୁଷକାର ଦେଖାଅ । ସେ ତ ସେତେଦୂର ପଳାଇ ଯାଇ ନାହିଁ ? ତା ରଥର ଧ୍ୱଜା ହେଇଟି ସମ୍ମୁଖରେ ଦେଖା ଯାଉଛି । ଚାଲ ସମସ୍ତେ ମିଶି ତାକୁ ଘେରିଯିବା ଓ ଯୁଦ୍ଧରେ ପରାଜିତ କରି ତାଠାରୁ ରାଜକୁମାରୀଙ୍କୁ ଛଡ଼ାଇ ଆଣିବା ।"

ସୂତ କହିଲେ—"ମୁନିଗଣ ! ଏହା କହି କ୍ରୋଧରେ ଜର୍ଜ୍ଜରିତ ହୋଇ ସମସ୍ତ ରାଜା କବଚ ପିନ୍ଧି ଅସ୍ତ୍ରଶସ୍ତ୍ରରେ ଭୂଷିତ ହୋଇ ଓ ନିଜ ନିଜର ବାହନ ଉପରେ ବସି ମିଳିତ ଭାବେ ଚତୁରଙ୍ଗ ସୈନ୍ୟଙ୍କୁ ସଙ୍ଗରେ ନେଇ ଶ୍ରୀକୃଷ୍ଣଙ୍କ ପଛେ ପଛେ ଧାଇଁଲେ । ଯୁଦ୍ଧ କରିବାକୁ ଆସୁଥିବା ବୀରମାନଙ୍କୁ ଦେଖି ଯଦୁବଂଶୀମାନଙ୍କର ସେନା ଭୟ କଲେ ନାହିଁ । ସେମାନେ ବୁଲିପଡ଼ି ପ୍ରସ୍ତୁତ ହୋଇଗଲେ ଓ ଅଶ୍ୱଙ୍କୁ

ନଚାଇ, ଧନୁରେ ବାଣ ଚଢ଼ାଇ ଟଙ୍କାର ଶବ୍ଦରେ ଚତୁର୍ଦ୍ଦିଗ ମୁଖରିତ କଲେ । ଶତ୍ରୁସୈନ୍ୟମାନେ ଖୁବ୍ ଶୀଘ୍ର ଆସି ଯାଦବସୈନ୍ୟଙ୍କୁ ଘେରିଗଲେ, ଯେପରିକି କୁକୁରମାନେ ହାତୀଙ୍କୁ ଘେରି ଯାଆନ୍ତି । ରାଜାମାନେ ଆସି କିଛି ପଚରା ଉଚରା ନ କରି ଚତୁର୍ଦ୍ଦିଗରୁ ଯାଦବ ସୈନ୍ୟଙ୍କ ଉପରକୁ ବାଣ ନିକ୍ଷେପ କରିବାକୁ ଲାଗିଲେ । ପର୍ବତ ଉପରେ ମୂଷଳ ଧାରାରେ ଯେପରି ଜଳବର୍ଷା ହୁଏ, ସେହିପରି ଯାଦବସେନାଙ୍କ ଉପରକୁ ସମସ୍ତ ରାଜା ଏକ ସଙ୍ଗେ ବାଣବର୍ଷା କଲେ । ସେମାନଙ୍କ ମଧ୍ୟରୁ ଅନେକ ଅଶ୍ୱ ଆରୋହଣ କରିଥିଲେ, ଅନେକ ହାତୀ ଉପରେ ଓ ଅନେକ ରଥରେ ଆରୋହଣ କରିଥିଲେ ।

ରୁକ୍ମିଣୀ ଯେତେବେଳେ ଦେଖିଲେ, ରାଜାମାନେ ଏକତ୍ର ମିଶି ତାଙ୍କ ସୈନ୍ୟଙ୍କ ଉପରକୁ ବାଣବୃଷ୍ଟି କରୁଛନ୍ତି ଓ ତାଙ୍କ ରଥ ତଥା ସମସ୍ତ ସେନାପତି ବାଣ ମଧ୍ୟରେ ଆଚ୍ଛାଦିତ ହୋଇ ଯାଇଛନ୍ତି, ସେତେବେଳେ ସେ ଅତ୍ୟନ୍ତ ଭୟଭୀତା ହେଲେ । କାତର ଦୃଷ୍ଟିରେ ଲାଜ ଲାଜ ହୋଇ ସେ ବାରମ୍ବାର ବନମାଳୀଙ୍କ ଆଡ଼କୁ ଚାହିଁବାକୁ ଲାଗିଲେ । ଭଗବାନ ବାସୁଦେବ ତାଙ୍କ ମନୋଗତ ଭାବ ବୁଝିପାରି ହସି ହସି କହିଲେ—"ଆରେ ରୁକ୍ମିଣୀ ! ତୁମେ ଏତେ ଡରିଯାଉଛ କାହିଁକି ? ତୁମେ ଏପରି ଚିନ୍ତା କର ନାହିଁ । ଦେଖ, ତୁମ ସୈନ୍ୟମାନେ ସଂଖ୍ୟାରେ ଖୁବ୍ କମ ଅଛନ୍ତି ସତ, କିନ୍ତୁ ମୁଁ ମୁହୂର୍ତ୍ତକ ମଧ୍ୟରେ ଏହି ସମସ୍ତ ଶତ୍ରୁସେନାଙ୍କୁ ସଂହାର କରିଦେବି । ତୁମେ କେବଳ ରଥରେ ବସି ଖେଳ ଦେଖୁଥାଅ । ଭୟଭୀତ ହେବାର କୌଣସି କାରଣ ନାହିଁ ।" (୧)

ଏହା ଶୁଣିବା ମାତ୍ରେ ରୁକ୍ମିଣୀ ନିର୍ଭୟରେ ନିଜର ପ୍ରାଣନାଥଙ୍କ ପାଖରେ ବସି ଯୁଦ୍ଧ ଦେଖିବାକୁ ଲାଗିଲେ । ଏଣେ ବଳରାମ ଗଦ ଆଦି ଯାଦବ ମହାରଥୀଙ୍କ ସହିତ ଶତ୍ରୁ ସୈନ୍ୟଙ୍କ ଉପରେ ଆକ୍ରମଣ କରିଦେଲେ । ସେ ଶତ୍ରୁମାନଙ୍କ ପରାକ୍ରମର ପ୍ରତିକାର କରି ସେମାନଙ୍କ ଉପରକୁ ବାଣବୃଷ୍ଟି କରିବାକୁ ଲାଗିଲେ । ତାଙ୍କ ବାଣରେ

---

(୧) ଯାଦବ ଦଳେ ବାଣ ବୃଷ୍ଟି । ଦେଖି ରୁକ୍ମିଣୀ ଭୟ ଦୃଷ୍ଟି ॥
ଲଜ୍ଜାରେ ଜଡ଼ିତ ନୟନ । ଚାହିଁଲ କୃଷ୍ଣର ବଦନ ॥
ବାଣ ବରଷଣେ ଅନାଇଁ । କମ୍ପଇ କୃଷ୍ଣ କୋଳେ ଥାଇ ॥
ହାସ ବଦନେ ଭବଗ୍ରାହୀ । ବୋଲନ୍ତି କନ୍ୟା ମୁଖ ଚାହିଁ ॥
କମ୍ପ ସୁନ୍ଦରୀ ପାଉ ତ୍ରାସ । ହେଲେ ତୋ ଶତ୍ରୁ ଯିବେ ନାଶ ॥
ମୋହର ବଳ ଦେଖ ଏବେ । ଅକ୍ଷୟ ଅଛନ୍ତି ଯାଦବେ ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦ମ : ୫୮ଅ)

ବହୁ ସୈନ୍ୟ, ଅଶ୍ୱ, ହସ୍ତୀ ଓ ରଥ ରଣାଙ୍ଗନରେ ଲୋଟିବାକୁ ଲାଗିଲେ । ସେ ସାବଧାନ ସହକାରେ ଶତ୍ରୁମାନଙ୍କ ବାଣଙ୍କୁ କାଟି ସେମାନଙ୍କ ଉପରେ ପ୍ରହାର କରୁଥିଲେ । ଏଥିଯୋଗୁଁ ଅନେକ ଶତ୍ରୁସୈନ୍ୟ ନିହତ ହେଲେ । ରାଜାମାନଙ୍କର ମୁକୁଟ ଓ କୁଣ୍ଡଳଯୁକ୍ତ ଶିର କଟିଯାଇ ଭୂମିରେ ଲୋଟିବାକୁ ଲାଗିଲା । କାହାର କାହାର ବାଜୁବନ୍ଧ ଓ କଙ୍କଣଯୁକ୍ତ କଟାହାତମାନ ତଳେ ଝଡ଼ି ପଡ଼ିଲା । କାହାର କାହାର ଗୋଡ଼, ହାତ, ଗଣ୍ଡି ଓ ଅନ୍ୟାନ୍ୟ ଅଙ୍ଗ ଛିନ୍ନ ବିଚ୍ଛିନ୍ନ ହୋଇ ଭୂମିରେ ଲୋଟିବାକୁ ଲାଗିଲା । ଅନେକ ହାତୀ ଘୋଡ଼ା ଓ ଓଟ ମଲେ । କେତେକ କ୍ଷତ ବିକ୍ଷତ ହୋଇ ପଳାୟନ କଲେ ଓ ଦୂରରେ ମରି ଢଳି ପଡ଼ିଲେ । ଯାଦବମାନଙ୍କର ଏପରି ବୀରତ୍ୱ ଦେଖି, କେତେକ ନୃପତିଙ୍କ ମୁଣ୍ଡ ଘୂରିଗଲା । ସେମାନେ ତଟସ୍ଥ ହୋଇଗଲେ ଓ ଚିନ୍ତା କରିବାକୁ ଲାଗିଲେ--"ଆରେ ! ଆମ୍ଭେମାନେ ତ ବରଯାତ୍ରୀ ହୋଇ ଆସିଥିଲୁ । ରାଜକୁମାରୀଙ୍କର ବିବାହ ଶିଶୁପାଳ ସହିତ ହେଉ ଅବା ଶ୍ରୀକୃଷ୍ଣଙ୍କ ସହିତ ହେଉ, ଆମ୍ଭେମାନେ କାହିଁକି ଅଯଥାରେ ନିଜ ନିଜର ପ୍ରାଣ ବଳି ଦେବା ?" ଏହା ଚିନ୍ତା କରି ସେମାନେ ଫେରିଗଲେ । ଜରାସନ୍ଧାଦି ରାଜାଗଣ ଯେତେବେଳେ ଦେଖିଲେ ଯେ, ଯାଦବମାନଙ୍କୁ ଜୟକରିବା ସମ୍ଭବ ନୁହେଁ, ସେମାନେ ଆଉ ନିଜ ନିଜର ଶକ୍ତି ଅପବ୍ୟୟ କରି ମୃତ୍ୟୁବରଣ କରିବାକୁ ଚାହିଲେ ନାହିଁ । ତେଣୁ ସେମାନେ ଯୁଦ୍ଧରୁ ପରାଙ୍ମୁଖ ହେଲେ । ଯାଦବ ସୈନ୍ୟଗଣ ନିଜର ବିଜୟ ଭେରୀ ବଜାଇ ଆଗେଇ ଚାଲିଲେ ଓ ଶତ୍ରୁମାନେ ପରାଜିତ ହୋଇ ଅତିଥି ଭବନକୁ ଫେରି ଆସିଲେ ।

ଶତ୍ରୁ ସୈନ୍ୟମାନେ ଅତିଥି ଭବନକୁ ଫେରି ଆସି ଦେଖିଲେ ଯେ ଶିଶୁପାଳର ଅବସ୍ଥା ଅତି ଦୟନୀୟ । କୌଣସି କ୍ଷୁଧାର୍ତ୍ତ ଆଗରେ ପରସା ଯାଇଥିବା ଅନ୍ନ କେହି ଉଠାଇ ନେଇଗଲେ ସେ ଯେପରି ନିରାଶ ହୁଏ, ସେହିପରି ସେ ନିରାଶ ହୋଇ ପଡ଼ିଥିଲା । ରାଜକୁମାରୀଙ୍କୁ ତାଠାରୁ ଛଡ଼ାଇ ନିଆଯାଇଥିବା ହେତୁ ତା ମୁହଁ ଶୁଖି ଯାଇଥିଲା । ତାହାର ତେଜ ବିଲୁପ୍ତ ହୋଇ ଯାଇଥିଲା ଓ ସେ ତକିଆ ଉପରେ ମୁହଁ ମାଡ଼ି କ୍ରନ୍ଦନ କରୁଥିଲା । ତାକୁ ଏପରି ଅଧୀର ହେଉଥିବାର ଦେଖି ଜରାସନ୍ଧ ଆଦି ତାହାର କେତେକ ହିତୈଷୀ ରାଜା ତାକୁ କହିଲେ—"ହେ ପୁରୁଷ ସିଂହ ! ଏ କଣ କରୁଛୁ ? ତୁ ସ୍ତ୍ରୀଲୋକଙ୍କ ଭଳି କାନ୍ଦୁଛୁ ! ଅରେ, ଏ ତ ସଂସାରଚକ୍ର । ଯେପରି ରଥର ପହିଆ କେତେବେଳେ ଉପରକୁ ଅସେ ତ କେତେବେଳେ ତଳକୁ ରହିଯାଏ, ସେହିପରି ଜୟ-ପରାଜୟ ତ କ୍ଷତ୍ରିୟଙ୍କ ପାଇଁ ଚିରନ୍ତନ । ଏହା ଭାଗ୍ୟର ଲିଖନ । ପ୍ରାରବ୍ଧ ସମ୍ମୁଖରେ ପୁରୁଷାର୍ଥ ନିଷ୍ଫଳ ହୁଏ । ତଥାପି ମନୁଷ୍ୟ ପକ୍ଷେ ସାହସ ହରାଇବା ଉଚିତ୍ ନୁହେଁ ଓ ନିରାଶ ହେବା ଉଚିତ୍ ନୁହେଁ । । ହିମ୍ମତର ନାମ ହିଁ ତ ଜୀବନ । ସୁଖ ସହିତ ଦୁଃଖ, ଜୀବନ ସହିତ ମୃତ୍ୟୁ ଓ ଜୟ ସହିତ ପରାଜୟ ଲାଗିରହିଛି । ଅମ ସମସ୍ତଙ୍କୁ କାଳରୂପୀ ଭଗବାନ୍ ଏପରି ନଚାଉଛନ୍ତି, ଯେପରିକି କଣ୍ଢେଇ ନଚାଉଥିବା ଲୋକ

କାଠ ପୁତୁଳକୁ ନଚାଉଛି ଥାଏ । ଏତେ ନିରାଶ ହେବା ତୋ ପକ୍ଷେ ଉଚିତ୍ ନୁହେଁ । ଗୋଟିଏ କନ୍ୟାକୁ ବିବାହ କରି ନ ପାରିଲୁ ତ କଣ ତୋ'ପାଇଁ ଏ ସଂସାରରେ ଆଉ କନ୍ୟା ନାହାନ୍ତି ?" (୨)

ଶିଶୁପାଳ କାନ୍ଦି କାନ୍ଦି କହିଲା—"କନ୍ୟା ଚାଲିଯିବା କାରଣରୁ ମୁଁ ଏତେ ଦୁଃଖିତ ନୁହେଁ, କିନ୍ତୁ ଏହା ଚିନ୍ତା କରୁଛି ଯେ, କେଉଁ ମୁହଁ ନେଇ ମୁଁ ଘରକୁ ଯିବି ? ମୋର ବନ୍ଧୁବାନ୍ଧବଙ୍କୁ କିପରି ମୁହଁ ଦେଖାଇବି ?"

ଜରାସନ୍ଧ ଆପଣା ଲୋକ ଭଳି ଭାବ ଦେଖାଇ କହିଲା—"ଆରେ ଭାଇ ! ଏ ଘଟଣାରେ ମୁହଁ ନ ଦେଖାଇବାର କୌଣସି ମାନେ ନାହିଁ । ଯୁଦ୍ଧରେ ଦୁଇଟି କଥା ହୁଏ, ଜୟ କିମ୍ବା ପରାଜୟ । ଆଜି ଆମେ ଯାହାଙ୍କଠାରୁ ହାରିଗଲେ, ସମୟ ଆସିବ ଆମେ ମଧ୍ୟ ତାଙ୍କୁ ପୁଣି ହରାଇ ଦେଇ ପାରିବା । ଏହାର ପ୍ରତ୍ୟକ୍ଷ ପ୍ରମାଣ ସ୍ୱରୂପ ମୁଁ ନିଜେ ତୋ ସମ୍ମୁଖରେ ସମୁପସ୍ଥିତ ଦେଖୁଛୁ । ମୁଁ ସତର ଥର ବଡ଼ ବଡ଼ ସେନାଙ୍କୁ ନେଇ ମଥୁରା ଉପରେ ଆକ୍ରମଣ କରିଥିଲି ଓ କୃଷ୍ଣ ମୋତେ ପରାସ୍ତ କରିଥିଲେ । ତଥାପି ମୁଁ ସାହସ ହରାଇ ନାହିଁ । ଉଦ୍ୟୋଗ କରି ଚାଲିଛି । ଅଠର ଥରରେ ମୁଁ ମଧ୍ୟ ଯାଦବମାନଙ୍କୁ ପରାସ୍ତ କରିଥିଲି । ମୋ ଭୟରେ ତ ଏମାନେ ସବୁ ନିଜର ପୈତୃକ ଭୂମି ଛାଡ଼ି ସମୁଦ୍ର ମଧ୍ୟରେ ଯାଇ ଲୁଚିଛନ୍ତି । ମୁଁ ଯେତେବେଳେ ସତର ଥର ହାରି ଯାଇଥିଲି ସେତେବେଳେ ତ ମୁଁ ଆଦୌ ତୋ ପରି ଶୋକ କରୁନଥିଲି । ଅଷ୍ଟାଦଶ ଥରରେ ଯେତେବେଳେ ମୁଁ ଜୟକଲି, ସେତେବେଳେ ମଧ୍ୟ ମୋର ହର୍ଷ ବି ଉଦ୍‌ବେଳିତ ହୋଇ ନଥିଲା । କାରଣ ମୁଁ ସବୁ ରହସ୍ୟ ଜାଣେ, ଜୟ-ପରାଜୟ ଏ ସବୁ ଦୈବାଧୀନ । ଏ ସାରା ଜଗତ ଦେବ ପ୍ରେରିତ କାଳ ଯୋଗୁଁ ହିଁ ସୁଖୀ-ଦୁଃଖୀ, ଉନ୍ନତ-ଅବନତ ଆଦି ଅବସ୍ଥାରେ ପଡ଼ିଥାଏ । (୩)

ବଳାବଳକାରୀ ତ ସ୍ୱୟଂ କାଳ । କେହି କାଳ ନିକଟରେ ବଳୀ ନୁହନ୍ତି କିମ୍ବା ନିର୍ବଳ ନୁହନ୍ତି । ଯେତେବେଳେ ଯେପରି ସମୟ ବା ପରିସ୍ଥିତି ଆସି ପହଞ୍ଚେ, ସେତେବେଳେ ମନୁଷ୍ୟ ସେହିପରି ହୋଇଯାଏ । ଏହି ସମୟରେ କାଳ ଯାଦବଙ୍କ

---

(୨) ଅର୍ଜିଲ କର୍ମ ଭୁଞ୍ଜେ ଦେହ । ଏହାର ପ୍ରିୟାପ୍ରିୟ ନାହିଁ ॥
ଏ ଦେହ ଈଶ୍ୱର ଅଧୀନ । ସ୍ୱକର୍ମ ପଥେ ଆତଯାତ ॥

(୩) ଜୀବଟି କର୍ମେ ଅତଯାତ । କାଳର କ୍ରୀଡ଼ା ଏ ଜଗତ ॥
ଦେଖ ଏ କାଳର ମହିମା । ଅନ୍ତେ ସକଳ ସାର ସିନା ॥
ହାରିଲୁ ନିଜ କର୍ମ ବଳେ । ଯାଦବେ ଜିଣିଲେ ସମରେ ॥

ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦ମ, ଅ. ୫୮

ଅନୁକୂଳ ହୋଇଛି । ତେଣୁ ସେମାନେ ବିଜୟୀ ହୋଇଛନ୍ତି । ସଂଖ୍ୟାରେ ଅଳ୍ପ ହୋଇଥିଲେ ମଧ୍ୟ ସେମାନେ ଆମ୍ଭମାନଙ୍କ ଆଖି ଆଗରେ ରାଜକୁମାରୀଙ୍କୁ ଅପହରଣ କରି ନେଲେ । ଯେତେବେଳେ କାଳ ଆମର ଅନୁକୂଳ ହେବ, ସେତେବେଳେ ଆମ୍ଭେମାନେ ଜୟଯୁକ୍ତ ହେବା । ଏହି ଅପହରଣକାରୀଙ୍କୁ ପରାସ୍ତ କରିବା ।"

ଏହା ଶୁଣି ଶିଶୁପାଳ ଅନନ୍ୟୋପାୟ ହୋଇ କହିଲା—"ତେବେ ଠିକ୍ ଅଛି, ଏବେ ମୋର ଚିତ୍ତ ସ୍ଥିର ନାହିଁ, ଆପଣମାନେ ଯାଇ ବିଶ୍ରାମ କରନ୍ତୁ, ମୁଁ ଏକାନ୍ତରେ କିଛି ସମୟ ବିଶ୍ରାମ କରେ ।" ଏହା ଶୁଣି ଅନ୍ୟାନ୍ୟ ରାଜା ମାନେ ନିଜ ନିଜର ବିଶ୍ରାମାଗାରକୁ ଗଲେ ଓ ଶିଶୁପାଳ ଚୁପ୍‌ଚାପ୍ ପାଲିଙ୍କି ମଗାଇ ଆଣିଲା । ପାଲିଙ୍କିରେ ପର୍ଦ୍ଦା ଢଙ୍କା ହୋଇଥିଲା । ସେ ସେଥିରେ ବସି ପଳାଇଗଲା । ପଛେ ପଛେ ତା ସୈନ୍ୟମାନେ ମଧ୍ୟ ଚାଲିଲେ । ରାଜକନ୍ୟା ଯେତେବେଳେ କ୍ଷେତ୍ର ଛାଡ଼ି ଚାଲିଗଲେ, ସେତେବେଳେ ବରଯାତ୍ରୀ ଦଳ ସେଠାରେ ରହିବା କି ଆବଶ୍ୟକ ? ସେଠାରେ ତାଙ୍କୁ ଆଉ କିଏ କାହିଁକି ବା ପଚାରନ୍ତା ? ନିଜ ନିଜର ମୁଁହ ତଳକୁ କରି ସମସ୍ତେ ସେଠାରୁ ପଳାଇଲେ ।

ଶିଶୁପାଳ ରାତିକାଳରେ ନିଜ ଘରେ ପହଞ୍ଚିଲା । ତା'ର ମା, ଭଉଣୀ ଓ ଭାଉଜମାନେ ମନେକଲେ ବୋଧହୁଏ ବୋହୂ ଆସିଗଲା । ତେଣୁ ସେମାନେ ଆରତି ସଜାଇ ପାଲିଙ୍କି ନିକଟକୁ ଆସିଲେ । ଶିଶୁପାଳ ସହଜେ ତ କଳା ଥିଲା, ପୁନଶ୍ଚ କାନ୍ଦି କାନ୍ଦି ତା ଆଖିର କଜଳ ବହିଆସି ମୁହଁ ଆହୁରି କଳା ପଡ଼ି ଯାଇଥିଲା । ପରଦା ଉଠାଇ ପୁରନାରୀଗଣ ଯେତେବେଳେ ଦେଖିଲେ ଯେ ଏକ ବିକଟାଳ ରୂପ ପାଲିଙ୍କି ଭିତରେ ବିରାଜମାନ କରିଛି, ସେତେବେଳେ ସେମାନେ ଭୟରେ ଥରହର ହେଲେ ଓ କହିବାକୁ ଲାଗିଲେ – "ଏଥିରେ ବୋହୂ ନାହିଁ, ଗୋଟାଏ ଭୂତ ବସିଛି ।" ଚାରିଆଡ଼େ ଏ କଥା ପ୍ରଚାର ହୋଇଗଲା । ବହୁ ଲୋକ ସେଠାରେ ଆସି ରୁଣ୍ଡ ହେଲେ । ସେମାନେ ଦେଖିଲେ, ପାଲିଙ୍କିରେ ଭୂତ ନାହିଁ କି ବୋହୂ ବି ନାହିଁ, କଳା ଭୂତୁଣ୍ଡା ଶିଶୁପାଳ ବସିଛି । ଶିଶୁପାଳ ଲଜ୍ଜାରେ କାହାରିକୁ କିଛି ନ କହି ଘର ଭିତରକୁ ପଶିଗଲା । ତାର ଭାଉଜମାନେ ତାକୁ ପଚାରିଲେ—"ଆରେ ପୁଅ ! ବୋହୂ କଣ ସଙ୍ଗରେ ଆସିଲା ନାହିଁ ?"

ଶିଶୁପାଳ ରାଗରେ ଜର୍ଜରିତ ହୋଇ କହିଲା - "ଯାଅ, ପଳାଅ ଏଠୁ ! ତୁମ୍ଭମାନଙ୍କର କେବଳ ବୋହୂ ଚିନ୍ତା । ମୁଁ ଜୀବନ ଧରି ପଳାଇ ଆସିଲି, ଏହା କମ୍ ବଡ଼ କଥା ନୁହେଁ । ସେଠାରେ ବହୁତ ଗୋଳମାଳ ସୃଷ୍ଟି ହେଲା । ବୋହୂ କୌଣସି କାମର ହେଲା ନାହିଁ । ତାକୁ କେହି ଜଣେ ନେଇ ପଳାଇଗଲା ।"

ଏହା ଶୁଣି ଜଣେ ଚପଳା ସ୍ତ୍ରୀଲୋକ କହିଲେ—"ଓହୋ ! ଅଙ୍ଗୁର କୋଳି ଖଟା ।"

ଏକଥା ଶୁଣି ଶିଶୁପାଳ ଆହୁରି ଅଧିକ ଲଜ୍ଜିତ ହେଲା । ସେ ଆଉ ସେଠାରେ ନ ରହି ଅନ୍ୟତ୍ର ଚାଲିଗଲା ।

ସୂତ କହିଲେ—"ମୁନିଗଣ ! ଶିଶୁପାଳ ତ ଏହିପରି ନିରାଶ ହୋଇ ଫେରି ଆସିଲା । ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ନେଇ ଚାଲିଗଲେ; କିନ୍ତୁ ଏ ଘଟଣାରେ ରୁକ୍ମିଣୀଙ୍କର ବଡ଼ ଭାଇ ରୁକ୍ମୀଙ୍କ ମନରେ ଅତ୍ୟନ୍ତ ଦୁଃଖ ହେଲା । ସେ ଚାହୁଁଥିଲେ ମୋ ଭଉଣୀର ବିବାହ ପଛକେ ଅନ୍ୟ କୌଣସି ରାଜାଙ୍କ ସହିତ ହେଉ; କିନ୍ତୁ କୃଷ୍ଣଙ୍କ ସହିତ ନହେଉ । ସେ ଯାହା ଚାହୁଁ ନଥିଲେ, ତାହାହିଁ ହେଲା । ଏହାଦ୍ୱାରା ତାଙ୍କର କ୍ରୋଧର ସୀମା ରହିଲା ନାହିଁ । ରାଜାମାନେ ଯେତେବେଳେ ନିଜ ନିଜ ରାଜ୍ୟକୁ ଫେରି ଯିବାକୁ ଲାଗିଲେ, ସେତେବେଳେ ସେ ନିଜର ସୈନ୍ୟଙ୍କୁ ସଜାଇ ସମସ୍ତ ରାଜାଙ୍କୁ ଶୁଣାଇ କହିଲେ— "ରାଜନ୍ୟବର୍ଗ ! ମୁଁ ଆପଣମାନଙ୍କ ସମ୍ମୁଖରେ ହସ୍ତରେ ଅସ୍ତ୍ର ଧରି ପ୍ରତିଜ୍ଞା କରୁଛି, ଯେ ପର୍ଯ୍ୟନ୍ତ କୃଷ୍ଣଙ୍କୁ ହରାଇ ମୋର ଭଉଣୀ ରୁକ୍ମିଣୀଙ୍କୁ ଫେରାଇ ନ ଆଣିଛି, ସେ ପର୍ଯ୍ୟନ୍ତ କୁଣ୍ଡିନପୁରରେ ପ୍ରବେଶ କରିବି ନାହିଁ ।" ଏହିପରି ପ୍ରତିଜ୍ଞା କରି ସେ ଭଗବାନ ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କରିବା ପାଇଁ ବାହାରି ପଡ଼ିଲେ ।

## ଛପ୍ପୟ

ତବ ଅତି ହଲ୍ଲା ମଚେୟା ନୃପତି ସବ ଲଡ଼ିବେ ଆୟେ ।
ଯାଦବ ବୀରନି ସବହିଁ ଭୂପ ଖଲ ମାରି ଭଗାୟେ ॥
ଜନମାସେ ମହଁ ଆଇ ଯବନି ଶିଶୁପାଲ ମନାୟେ ।
କରି କାରୋ ମୁଖ ଭାଗି ରୈନିମହଁ ନିଜଘର ଅୟେ ॥
ଇତ ରୁକ୍ମୀ ହ୍ୱୈ କ୍ରୁଦ୍ଧ ଅତି, କରୀ ପ୍ରତିଜ୍ଞା ହୈଂ ଲରୁଁ ।
ହରି ବଧ କରି ବିନୁ ହିନ ଲୈ, ନଗରୀମହଁ ବନହିଁ ପଗ ଧରୁଁ ॥

—*—

# ରୁକ୍ମୀ-ଶ୍ରୀକୃଷ୍ଣ ଯୁଦ୍ଧ

କୁତ୍ର ଯାସି ସ୍ୱସାରଂ ମେ ମୁଷିତ୍ୱା ଧ୍ୱାଙ୍‌କ୍ଷବଦ୍ଧବିଃ ।
ହରିଷ୍ୟେଦ୍ୟ ମଦଂ ମନ୍ଦ ମାୟିନଃ କୂଟଯୋଧିନଃ ॥ *

( ଶ୍ରୀ ଭା: ୧୦ମ ସ୍କନ୍ଧ ୫୪ ଅ ୨୫ ଶ୍ଳୋକ )

## ଛପ୍‌ପୟ

ବ୍ୟର୍ଥ ପ୍ରତିଜ୍ଞା କରି ଚଳୋଇ ସେନା ସକି ମାନୀ ।
ଲଲକାରେ ଘନଶ୍ୟାମ ବୀରତା ବଡ଼ୀ ବଖାନୀ ॥
ଭସ୍ମ୍ୟେ ଖଡ଼େ ଭଗବାନ ବାନ ତକି ତକି କୋଂ ମାରେ ।
କୁଣ୍ଡିନପୁର କେ ବୀର ଭଗେ ବୋଲତ ହମ ହାରେ ॥
ରୁକ୍ମୀ ହ୍ୱେକେଂ ବିରଥ ଲୈ, କର କରବାଲ ଚଲେୟା ଲଡ଼ନ ।
ତବ ହୀ ରଥତେଂ ଉତରି ହରି, ଲଗେ ଖଡ଼୍‌ଗ ତେଂ ବଧ କରନ ॥

ଅପରାଜିତ ଅଚ୍ୟୁତଙ୍କ ସଙ୍ଗେ ଯେ ଯୁଦ୍ଧ କରନ୍ତି, ସେହି ବ୍ୟକ୍ତି ମଧ୍ୟ ଅତ୍ୟନ୍ତ ଭାଗ୍ୟବାନ୍ । ସମ୍ମୁଖ ରହିବାଦ୍ୱାରା ସହଜେତ ଭଗବତ୍ ପ୍ରାପ୍ତି ହୁଏ । ତାଙ୍କ ସହିତ

---

* ଏମନ୍ତ ଗର୍ବ ରୁକ୍ମ ବନ୍ଧୁ । ହରି ମହିମା ନ ଜାଣଇ ॥
ବେଗେ ଧାଇଁଲା ଏକା ରଥେ । ଡାକଇ ରହ ରହ ପଥେ ॥
ଯାଦବ-କୁଳପାଂଶୁ ତୁହି । ମୋର ସଂଗ୍ରାମେ ଯିବୁ କାହିଁ ॥
କାକ ଯେସନେ ମାୟା କରି । ଯଜ୍ଞରୁ ଚରୁ ନଏ ହରି ॥
ମନ୍ଦ ମାୟାବୀ କୂଟ ଯୋଦ୍ଧି । ଗୋପାଳେ ହୀନ ଦୁଷ୍ଟବୁଦ୍ଧି ॥
ଆଜ ଜଣିବ ତୋତେ ହାଣି । ଯାବତ ନ ଛାଡ଼ୁ ରୁକ୍ମିଣୀ ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦ମ. ଅ. ୭୮)

ପୁତ୍ର, ମିତ୍ର, ସଖା, ବନ୍ଧୁ, ପିତା, ପତି ତଥା ଅନ୍ୟ ଯେ କୌଣସି ସମ୍ବନ୍ଧ ରଖାଯାଇ ପାରେ । ତାଙ୍କୁ ଶତ୍ରୁ ଭାବରେ କିମ୍ବା ମିତ୍ର ଭାବରେ ଯେ କୌଣସି ଭାବରେ ଭଜିଲେ ବି ଜୀବନ କଲ୍ୟାଣ ସାଧିତ ହୋଇଥାଏ । ଯେଉଁ ବ୍ୟକ୍ତି ନିଜେ ଭଗବାନଙ୍କ ସହିତ ଅସ୍ତ୍ର ଶସ୍ତ୍ର ନେଇ ଲଢ଼ିବାକୁ ଉଦ୍ୟମ କରେ, ଯେଉଁ ବ୍ୟକ୍ତି ତାଙ୍କୁ ନିର୍ଭୟରେ ଗାଳିଦିଏ, ତାଙ୍କୁ ଭଗବାନ ନିଜେ ହିଁ ଏତେବଡ଼ ସାହସ ଦେଇଥାଆନ୍ତି । ତା ନ ହୋଇଥିଲେ ସାଧାରଣ ମନୁଷ୍ୟର ଏତେ ସାହସ କିପରି ଅବା ହୁଅନ୍ତା ଯେ ସେ ସର୍ବେଶ୍ୱରଙ୍କୁ ଏପରି ଧୃଷ୍ଟତା ପ୍ରଦର୍ଶନ କରନ୍ତା ?

ସୂତ କହିଲେ—"ମୁନିଗଣ ! ରୁକ୍ମୀ ଯେତେବେଳେ ଏହା ପ୍ରତିଜ୍ଞା କରିଥିଲି ଯେ, ରୁକ୍ମିଣୀଙ୍କୁ ଫେରାଇ ନ ଆଣିବା ପର୍ଯ୍ୟନ୍ତ ଓ କୃଷ୍ଣଙ୍କୁ ନ ମାରିବା ପର୍ଯ୍ୟନ୍ତ ଆଉ କୁଣ୍ଡିନପୁର ଫେରିବେ ନାହିଁ । ତଥାପି ତ ଯୋଦ୍ଧାମାନଙ୍କର ଉତ୍ସାହ କମ୍ ନୁହେଁ । ବୀର ତଥା ମାନୀ ରୁକ୍ମୀ ନିଜ ରଥରେ ବସି ଅତି ଅଭିମାନରେ କହିଲି—"ସାରଥି ! ଦେଖ, ତୁମେ ମୋ ରଥକୁ ଅବିଳମ୍ବେ ସେହିଠାକୁ ନେଇଚାଲ, ଯେଉଁଠାକୁ କୃଷ୍ଣ ମୋ ଭଉଣୀକୁ ନେଇ ଯାଉଛି । ଆଜି ତା ସହିତ ମୋର ହାତାହାତି ହୋଇଯିବ । ସେ ଅନାର୍ଯ୍ୟ ଗଉଡ଼ଟୋକାର ସାହସକୁ ଦେଖ, ଏତେ ରାଜାଙ୍କ ମଧ୍ୟରୁ ସେ ରାଜକୁମାରୀଙ୍କୁ କିପରି ଅପହରଣ କରିନେଲା ! ଆଜି ମୁଁ ସେହି ଗୋରୁ ଜଗାଳି ଗୋପାଳର ମଦକୁ ମର୍ଦ୍ଦନ କରିବି । ସେହି ଢ଼ିନ୍ନଭିର ସମସ୍ତ ଅହଙ୍କାର ଭାବ ଆଜି ମୁଁ ଶେଷ କରିଦେବି । ତୁମେ ଖୁବ୍ ଶୀଘ୍ର ରଥ ଚଳାଇ ତା ନିକଟରେ ମୋତେ ପହଞ୍ଚାଇ ଦିଅ । ସେ ଯେପରି ଆଉ ଅଧିକ ଦୂର ଯାଇ ନ ପାରେ ।"

ସାରଥି ହାତଯୋଡ଼ି କହିଲା—"ମଣିମା ! ମୁଁ ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କ ରଥ ସମ୍ମୁଖରେ ଆପଣଙ୍କ ରଥକୁ ପହଞ୍ଚାଇ ଦେଉଛି ।" ଏହା କହି ସେ ଘୋଡ଼ାକୁ ଚାବୁକ ମାଇଲା । ଘୋଡ଼ା ପବନ ବେଗରେ ରଥ ଉଡ଼ାଇନେଇ ଅଳ୍ପ ସମୟ ମଧ୍ୟରେ ମାଧବଙ୍କ ରଥ ସମ୍ମୁଖରେ ପହଞ୍ଚିଗଲା । ରୁକ୍ମୀଙ୍କର ନିଜ ବଳର ଅତ୍ୟଧିକ ଅଭିମାନ ଥିଲା । ତେଣୁ ପଛରେ ଆସୁଥିବା ସୈନ୍ୟଙ୍କୁ ଅଟକାଇ ଦେଇ ଈଶ୍ୱରଙ୍କ ମହିମା ସମ୍ବନ୍ଧରେ ଅଜ୍ଞ ସେହି ମନ୍ଦମତି ଏକାକୀ ଭଗବାନଙ୍କ ସହିତ ଯୁଦ୍ଧ କରିବାପାଇଁ ତାଙ୍କ ସମ୍ମୁଖରେ ପହଞ୍ଚିଗଲା । ଭଗବାନଙ୍କ ସମ୍ମୁଖରେ ସେ ଚିତ୍କାର କରି କହିଲା—"ରେ ପଳାତକ ! ଆଉ ଆଗକୁ ମାଡ଼ି ଯାଆନା । ମୋ ଭଉଣୀକୁ ତୁ ଚୋରଙ୍କ ପରି କେଉଁଆଡ଼େ ନେଇ ପଳାଇଯାଉଛୁ ?"

ଭଗବାନ୍ କହିଲେ—"ତୋ ଆଖି କଣ ଫୁଟି ଯାଇଛି କି ? ଚୋରଙ୍କ ଭଳି ଯାଉଛି କ'ଣ ? ମୁଁ ତ ତୁମ ସମସ୍ତଙ୍କ ସମ୍ମୁଖରେ ନିଜର ପୁରୁଷାର୍ଥ ବଳରେ ତୁମ୍ଭମାନଙ୍କ ଆଖିରେ ଧୂଳି ପକାଇ ନିଜର ଭାଗ ନେଇ ଆସିଲି । ତୋର ଯଦି ସାହସ ଅଛି, ତାହା ହେଲେ ମୋଠାରୁ ତୋ ଭଉଣୀକୁ ଛଡ଼ାଇ ନେ ।"

ଏହା ଶୁଣି ଶୁଣି ରୁକ୍ମୀ କ୍ରୋଧଭରେ ହୋଇ ବନା ବଗ୍ଟରରେ ଭଗବାନଙ୍କୁ ଲଗ ଲଗ ତିନବାଣ ଛାଡ଼ିଲ ଏବଂ ଗର୍ଜିଉଠି କହିଲ—"ରେ ଯଦୁକୁଳକଳଙ୍କ ! ତୁ ଠିଆ ହୋଇ ମୋ ବାଣ ସହିତ ଦେଖି ! ପଳାତକ ଖ୍ରୁ ! ମୋ ଆଗରେ ତୁ ବଳ ପରାକ୍ରମ ଦେଖାଇବୁ ନା ? ଗ୍ୱେଣ୍ଟି-ନାଶ୍ର କର ତୋ ଜୀବନ ତ କଟିଲ । କୁଆ ଯେପରି ଯଜ୍ଞମଣ୍ଡପରୁ ଚୁପ୍‌କରି ହବି ଗ୍ୱେରାଇ ନେଇ ଚମ୍ପଟ ମାରେ, ତୁ ସେହିପରି ମୋ ଭଉଣୀକୁ ଗ୍ୱେରାଇ ନେଇ ପଳାଇ ଆସିଛୁ । ତୋ'ର ତ ବଳବୀର୍ଯ୍ୟ କିଛି ନାହିଁ, କେବଳ ଛଳକପଟ କରିବା ତୋତେ ଭଲଭାବେ ଜଣା । କାଳଯବନକୁ ତୁ ଛଳ କରି ମାରିଥିଲୁ । ନିଜ ମାମୁଁଙ୍କୁ କପଟ କରି ମାରିଲୁ । ଆଜି ମୁଁ ତୋ'ର ସବୁ କପଟକୁ କର୍ପୂର ପରି କପରି ଉଡ଼ାଇ ଦେଉଛି ଦେଖ୍ ! ଆଜି ତୋ'ର ସବୁ ମାୟାବୀ ପଣିଆ ମୁଁ ଛଡ଼ାଇ ଦେବ । ତୋର ସମସ୍ତ ଗର୍ବ ଆଜି ଖର୍ବ ହେବ । ଯେ ପର୍ଯ୍ୟନ୍ତ ମୁଁ ମୋର ତୀକ୍ଷ୍ଣ ବାଣ ଦ୍ୱାରା ତୋ'ତେ ଯମପୁରକୁ ନ ପଠାଇଛି, ସେ ପର୍ଯ୍ୟନ୍ତ ମୁଁ ଯୁଦ୍ଧ ଛାଡ଼ି ଯିବି ନାହିଁ । ଏବେ ତୋ ମୃତ୍ୟୁକାଳ ନିକଟ ହୋଇ ଆସିଲ । ଯଦି ତୋ'ର ନିଜ ପ୍ରାଣ ପ୍ରତି ମମତା ଥାଏ, ତାହାହେଲେ ସଙ୍ଗେ ସଙ୍ଗେ ମୋ ଭଉଣୀକୁ ଏହିଠାରେ ଛାଡ଼ିଦେଇ ତୁ ପ୍ରାଣନେଇ ପଳାଇ ଯା । ମୁଁ ବୀର, ପଳାତକ ଉପରେ ଓ ହତାଶ ହେଉଥିବା ଶତ୍ରୁ ଉପରେ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରେ ନାହିଁ ।"

ଭଗବାନ କହିଲେ—"ଶାଳକ ମହାଶୟ ! ଆଉ ବେଶୀ ବଡ଼ ବଡ଼ କଥା କୁହନାହିଁ, ନିଜର ପୁରୁଷାର୍ଥ ଦେଖାଅ । ଗୁଡ଼ାଏ ବକ୍ ବକ୍ ହେବା ଶୂର-ବୀରଙ୍କର କାମ ନୁହେଁ । ଯେଉଁମାନେ ଭଡ଼ ଭଡ଼ ହୁଅନ୍ତି, ତାଙ୍କର ପୁରୁଷାର୍ଥ ନଥାଏ । ଯିଏ ବହୁତ ଗର୍ଜନ ତର୍ଜନ କରନ୍ତି, ସେ କାପୁରୁଷ । ତୁମର ଯଦି ବଳ ବିକ୍ରମ ଅଛି, ପୁରୁଷାର୍ଥ ଅଛି, ତାହାହେଲେ କିଛି କରି ଦେଖାଇଦିଅ । ନଚେତ୍ ନିଅ·ସମ୍ଭାଳ, ମୁଁ ବାଣ ଛାଡ଼ିଲି ।"

ଏହା କହି ଭଗବାନ ଶ୍ରୀକୃଷ୍ଣ ଏକାସଙ୍ଗେ ଆଠଟି ବାଣ ଛାଡ଼ିଲେ । ସେହି ଅଷ୍ଟବାଣ ମଧ୍ୟରୁ ଗ୍ୱରିଟି ବାଣ ଯାଇ ରୁକ୍ମୀର ଗ୍ୱରିଟି ଅଶ୍ୱଙ୍କୁ ମାରି ଦେଲ, ଦୁଇଟି ସାରଥୀକୁ ବଧ କଲ ଓ ଅନ୍ୟ ଦୁଇଟିରେ ରଥର ଧ୍ୱଜା କଟିଗଲ । ପରେ ଅନ୍ୟ ଛଅଟି ବାଣରେ ରୁକ୍ମୀର ଧନୁକୁ କାଟି ଭଗବାନ ତା' ଶରୀରକୁ ବିଦ୍ଧ କଲେ ।

ସାରଥୀ ଓ ଅଶ୍ୱ ମରିଯିବା ଦେଖି ସେ ଅନ୍ୟଏକ ନୂତନ ରଥ ନେଇ ଆସିଲ ଓ ଆଗକୁ ଧାଇଁଯାଇ ଭଗବାନଙ୍କ ଉପରେ ପାଞ୍ଚଥର ବାଣ ପ୍ରୟୋଗ କଲ । ଭଗବାନ ପୁଣି ତାହାର ଧନୁ ଓ ରଥ କାଟି ଉଡ଼ାଇଦେଲେ; ଏବଂ ଅଶ୍ୱ ଓ ସାରଥୀ ଆଦିଙ୍କୁ ମାରି ଦେଲେ । ରୁକ୍ମୀ ପୁନଶ୍ଚ ନୂଆ ରଥ ନେଇ ଆସିଲ । ଏଥର ମଧ୍ୟ ଭଗବାନ ସେହିପରି କଲେ । ଏହାପରେ ଧନୁଛାଡ଼ି ସେ ଅନ୍ୟ ଅସ୍ତ୍ରରେ ଯୁଦ୍ଧ କରିବାକୁ ଆରମ୍ଭ କଲ । ଏହିପରି

ସେ ନମଣଃ ପରିଘ, ପରଶୁ, ଶୂଳ, ଭୁଶୁଣ୍ଡୀ, ଢାଲ ତରବାରୀ, ତୋମର ଏବଂ ଅନ୍ୟାନ୍ୟ ବହୁତ ଅସ୍ତ୍ରଶସ୍ତ୍ର ଉଠାଇଲା । କିନ୍ତୁ ସେ ଯେତେ ଅସ୍ତ୍ର ଉଠାଇଲା ଶ୍ୟାମସୁନ୍ଦର ସମସ୍ତ ଅସ୍ତ୍ରକୁ କାଟିଦେଲେ । ରଥକୁ ମଧ୍ୟ ଛିନ୍ନଭିନ୍ନ କରିଦେଲେ । ସେ ଯେତେବେଳେ ଦେଖିଲା ତାହାର ସମସ୍ତ ଉଦ୍ୟମ ବିଫଳ ହୋଇଗଲା, ସେତେବେଳେ ତାର ଅତ୍ୟନ୍ତ କ୍ରୋଧ ଜାତ ହେଲା । ସେ ଢାଲ, ତରବାରୀ ନେଇ ଭଗବାନଙ୍କ ରଥ ଉପରକୁ ଏପରି କୁଦି ପଡ଼ିଲା ଯେ, ଯେପରି ମୃଗ ସିଂହକୁ ମାରିବା ପାଇଁ କୁଦିପଡ଼େ, ଅଥବା ପତଙ୍ଗ ଅଗ୍ନିକୁ ଲିଭାଇବା ପାଇଁ ଅଗ୍ନି ଉପରକୁ ଡେଇଁପଡ଼େ ।

ଭଗବାନ ଦେଖିଲେ ଏ ଏବେ ସମସ୍ତ ଶକ୍ତି ଲଗାଇ ମୋତେ ମାରିବାକୁ ଆସୁଛି, ତେଣୁ ସେ ନିଜର ତୀକ୍ଷ୍ଣ ଶର ମାରି ତାହାର ଢାଲ ଓ ତରବାରୀକୁ କାଟି ଚୂର୍ଣ୍ଣବିଚୂର୍ଣ୍ଣ କରିଦେଲେ । ସେ ଅସ୍ତ୍ରହୀନ ହୋଇଯିବାରୁ ଭଗବାନ ଶୀଘ୍ର ରଥ ଉପରୁ ତଳକୁ ଓହ୍ଲାଇ ପଡ଼ିଲେ । ଯେପରି ସିଂହ ଝପଟି ଆସି ମୃଗକୁ ଧରି ପକାଏ, ସେହିପରି ଭଗବାନ ତାହାର ଦାଢ଼ି କେଶଗୁଚ୍ଛିକୁ ଧରି ଏକ ତୀକ୍ଷ୍ଣ ତରବାରୀ ବାହାର କରି ତାହାର ଶିରଚ୍ଛେଦ କରିବାକୁ ଉଦ୍ୟତ ହେଲେ ।

ଏ ପର୍ଯ୍ୟନ୍ତ ରଥରେ ବସିଥିବା ରୁକ୍ମିଣୀ ଶଙ୍କିତ ଚିତ୍ତରେ ରୁକ୍ମି ଓ ଭଗବାନଙ୍କ ମଧ୍ୟରେ ହେଉଥିବା ଯୁଦ୍ଧ ଦେଖୁଥିଲେ । କିନ୍ତୁ ଯେତେବେଳେ ସେ ଦେଖିଲେ ଯେ, ଭଗବାନ ରୁକ୍ମିକୁ ବଧ କରିବା ପାଇଁ ଉଦ୍ୟତ ହୋଇଛନ୍ତି, ସେତେବେଳେ ସେ ଆଉ ରଥ ଉପରେ ବସି ରହି ପାରିଲେ ନାହିଁ । ସେ ଶୀଘ୍ର ରଥରୁ ଓହ୍ଲାଇ ଆସି ନିଜ ପ୍ରାଣନାଥଙ୍କ ପାଦତଳେ ପଡ଼ିଗଲେ ଓ ଭୟରେ ଥରି ଥରି ଅତ୍ୟନ୍ତ କରୁଣ ବାଣୀରେ କହିଲେ—"ହେ ଅପ୍ରମେୟାତ୍ମନ ! ହେ ଯୋଗେଶ୍ୱର ! ହେ ଜଗତ୍ପତେ ! ଆପଣ ଏପରି କରନ୍ତୁ ନାହିଁ । ତାଙ୍କୁ ବଧ କରିବା ଆପଣଙ୍କ ପକ୍ଷେ ଉଚିତ୍ ହେବନାହିଁ ।"

ଭଗବାନ୍ କହିଲେ "ପ୍ରିୟେ ! ତୁମେ ମୋ କାର୍ଯ୍ୟରେ ହସ୍ତକ୍ଷେପ କରନାହିଁ । ଏ ହେଉଛି ଜଣେ ଅତତାୟୀ ଓ ବଧ ଯୋଗ୍ୟ । ଏ ମୋତେ ବହୁତ ଅପମାନିତ କରିଛି ।"

ରୁକ୍ମିଣୀ ଦୀନଭାବ ସହିତ କହିଲେ "ପ୍ରଭୋ ! ଆପଣ ତାଙ୍କ ଦୋଷ ଆଉ ଧରନ୍ତୁ ନାହିଁ । ମୋତେ କ୍ଷମା ଦିଅନ୍ତୁ । ମୁଁ ଦୀନ ହୋଇ ଆପଣଙ୍କ ଚରଣ ଧରୁଛି, ଆଉ୍ତନାଦ କରି କହୁଛି । ଏ ମୋର ଭାଇ, ତେଣୁ ତାଙ୍କୁ ଛାଡ଼ି ଦିଅନ୍ତୁ । ତାଙ୍କୁ

ମାରିଦେଲେ ମୋ ମନ ଅତ୍ୟନ୍ତ ଦୁଃଖ ହେବ । ଆପଣଙ୍କ ଶରଣାଗତଙ୍କୁ କଷ୍ଟ ଦେବା ଉଚିତ୍ ନୁହେଁ ।" (୧)

ସୂତ କହିଲେ –"ମୁନିଗଣ ! ଭାଇଙ୍କ ବଧ ଆଶଙ୍କାରେ ଭଗବତୀ ରୁକ୍ମିଣୀଙ୍କର ଶରୀର ଥରିବାକୁ ଲାଗିଲା । ଶୋକାକୁଳା ହୋଇ ତାଙ୍କ ମୁଖକମଳ ନିଷ୍ପ୍ରଭ ହୋଇଗଲା । ଭୟ କାରଣରୁ ତାଙ୍କ କଣ୍ଠ ଗଦ୍‌ଗଦ୍ ହୋଇ ଗଲା । କେଶ ଉଲବିର୍ଯ୍ୟିତ ହୋଇଗଲା ଓ ଶିରର ଓଢ଼ଣୀ ଖସି ଗଲା । ଅତ୍ୟନ୍ତ ଆତୁରତା କାରଣରୁ ସୁବର୍ଣ୍ଣ ଓ ମୋତିର ମନୋହର ମାଳା କଣ୍ଠଦେଶରୁ ଖସିପଡ଼ିଲା । ତାଙ୍କର ଏପରି ଦୟନୀୟ ଅବସ୍ଥା ଦେଖି ଦୀନବନ୍ଧୁ ଶ୍ୟାମସୁନ୍ଦରଙ୍କ ମନରେ ଦୟା ହେଲା । ସେ କହିଲେ—"ପ୍ରିୟେ ! ତୁମେ ଯଦି ଏହାର ବଧ ନ ଚାହୁଁଛ, ତେବେ ଆଉ କିଏ ତାକୁ ବଧ କରି ପାରିବ ? କିନ୍ତୁ ସେ ଆବଶ୍ୟକତା ଠାରୁ ଅଧିକ ଅଶିଷ୍ଟତା ପ୍ରଦର୍ଶନ କରିଛି, ତେଣୁ ତାକୁ ଦଣ୍ଡ ଦେବାକୁ ତ ପଡ଼ିବ ।"

ରୁକ୍ମିଣୀ ଏହାଶୁଣି କାତର ବାଣୀରେ କହିଲେ—"ପ୍ରାଣନାଥ ! ପ୍ରାଣଦଣ୍ଡକୁ ଛାଡ଼ି ଆପଣ ଅନ୍ୟ ଯେ କୌଣସି ଦଣ୍ଡ ଦେବା ଉଚିତ୍ ମନେକରୁଛନ୍ତି ସେହି ଦଣ୍ଡ ଦିଅନ୍ତୁ । ଆପଣ ଯଦି ତାଙ୍କୁ ମାରିଦେବେ, ତାହାହେଲେ ସଂସାରରେ ମୋର ଅପଯଶ ହୋଇଯିବ ।"

ଭଗବାନ କହିଲେ—"ତେବେ ଠିକ୍ ଅଛି । ତୁମେ ଯାଇ ରଥ ଉପରେ ବସ, ମୁଁ ଆଉ ତାକୁ ମାରିବି ନାହିଁ । କ୍ଷୌର କରି ତାର ଦାଢ଼ି ନିଶ କାଟି ଛାଡ଼ିଦେବି ।"

ଭଗବାନଙ୍କ ଆଜ୍ଞାରେ ରୁକ୍ମିଣୀଦେବୀ ରଥ ଉପରେ ଯାଇ ବସିଲେ । ଭଗବାନ ରୁକ୍ମୀକୁ ନିଜ ଉତ୍ତରୀୟରେ ରଥରେ କସିକରି ବାନ୍ଧି ପକାଇ ଏକ ତୀକ୍ଷ୍ଣ ଖଡ଼୍‌ଗ ନେଇ ତା ମୁହଁରୁ ଦାଢ଼ି ନିଶ ଓ ମୁଣ୍ଡରୁ ଠାଏ ଠାଏ ବାଳ କାଟି ତାକୁ ସାତବେଣ୍ଢିଆ କରିଦେଲେ । ସାଧାରଣତଃ କ୍ଷୁରରେ କ୍ଷୌର କର୍ମ କରାଯାଏ, କିନ୍ତୁ ଖଡ଼୍‌ଗରେ ସାତବେଣ୍ଢିଆ କରାଯିବାରୁ ସ୍ଥାନେ ସ୍ଥାନେ କ୍ଷତ ହୋଇ ରକ୍ତସ୍ରାବ ହେଲା ଓ ସ୍ଥାନେ ସ୍ଥାନେ କୁଆଖଣ୍ଡିଆ ହୋଇ ତାହାର ରୂପ ଅତି କଦର୍ଯ୍ୟ ଦେଖାଗଲା । ଇତି ମଧ୍ୟରେ

---

(୧) ଭାଇର ପ୍ରାଣନାଶ ଜାଣି । ଚରଣେ ପଡ଼ିଲା ରୁକ୍ମିଣୀ ।।
କାତରେ କରଇ କାରୁଣ୍ୟ । ହେ ନାଥ ଯୋଗେଶ୍ୱର ଶୁଣ ।।
ଅନନ୍ତ ମହିମା ତୋହର । ଦୋଷ ଉପେକ୍ଷ ଦେବ ତାର ।।
ଜଗତ ପତି ନାରାୟଣ । ମୁଁ ତୁମ୍ଭ ଚରଣେ ଶରଣ ।।
ନ ମାର ମୋର ଜ୍ୟେଷ୍ଠଭ୍ରାତ । ପରମାନନ୍ଦ ଜଗନ୍ନାଥ ।।

(ଭାଗବତ : ଜଗନ୍ନାଥ ଦାସ : ୧୦ସ୍କ, ଅ. ୫୮)

ଶାଧ୍ୟ ଦ୍ୱାନାମାନଙ୍କୁ ଗୃହଅନ୍ତ ସଂହାର କରି ଅପି ଶ୍ରାଗ୍ରଗଣ୍ୟ ସଙ୍କର୍ଷଣ (ବଳରାମ) ସେଠାରେ ଅପି ପହଞ୍ଚି ରୁକ୍ମୀର ଏପରି ଦଶା ଦେଖି ତାଙ୍କୁ ହସ ମାଡ଼ିଲା । ପୁନଶ୍ଚ ସେ ଦେଖିଲେ ରୁକ୍ମିଣୀଦେବୀ ଓଢ଼ଣାତଳୁ ଅତି କାତର ହୋଇ ନିଜ ଭାଇକୁ ଗୃହିଁଛନ୍ତି ଓ ତାଙ୍କ ନୟନରୁ ଲୋତକଧାର ବୃଷ୍ଟି ହେଉଛି । ତେଣୁ ସେ ଆଉ ହସିବେ କ'ଣ, ତାଙ୍କ ମନରେ ଦୟା ଜାତହେଲା । ସେ ସଙ୍ଗେ ସଙ୍ଗେ ରୁକ୍ମୀଙ୍କ ନିକଟକୁ ଆସି ତାହାର ବନ୍ଧନ ଖୋଲି ଦେଲେ । ସେତେବେଳେ ରୁକ୍ମୀ ଲଜ୍ଜାରେ ଆଉ ମୁଣ୍ଡଟେକି ପାରୁ ନଥିଲେ । ସେ ଅର୍ଦ୍ଧମୃତଙ୍କ ଭଳି ଘନ ନିଃଶ୍ୱାସ ଛାଡ଼ୁଥିଲେ । ବଳରାମ ବଡ଼ ଭାଇ ହୋଇଥିବାରୁ ଶ୍ରୀକୃଷ୍ଣଙ୍କୁ ତାଡ଼ନା କରି କହିଲେ --"କୃଷ୍ଣ ! ମୁଁ ତୋ'ର ଏପରି କାର୍ଯ୍ୟରେ ଅତ୍ୟନ୍ତ ଅପ୍ରସନ୍ନ । ତୁ ଏପରି କରି କିଛି ଭଲ କାର୍ଯ୍ୟ କଲୁ ନାହିଁ ।"

ଭଗବାନ୍ ଲଜ୍ଜିତ ହୋଇ କହିଲେ—"ଭାଇ ! ତୁମେ ତ ଶୁଣି ନାହଁ । ଏ ମନ୍ଦମତି ମୋତେ କେତେ ଜଘନ୍ୟ ଭାଷାରେ ଗାଳି ଗୁଲଜ କରିଛି । ମୁଁ ତ ତାକୁ ବଧ କରି ଥାଆନ୍ତି; କିନ୍ତୁ ସଙ୍କୋଚବଶତଃ ତାହା କଲି ନାହିଁ ।"

ବଳରାମ ପୁନଶ୍ଚ ତାଙ୍କୁ ତାଡ଼ନା କରି କହିଲେ—"ଅରେ ଭାଇ ! ତୁ ଆଉ ବଧ କଣ କରି ଥାଆନ୍ତୁ ? କେଶ, ଦାଢ଼ି, ନିଶ ଆଦି ସାତଭେଣ୍ଡିଆ କରି ଛାଡ଼ିଦେବା ତ ମରଣଠାରୁ ବଳି ଅପମାନ । କ୍ରୋଧବଶତଃ ସେ ଅବଶ୍ୟ ତୋତେ ଗାଳି ଗୁଲଜ କରିଥିବ; କିନ୍ତୁ ଶଳାର ଗାଳି ତ ଅତି ମଧୁର ବୋଲି କୁହାଯାଏ । ତୁ ବଡ଼ଟିଏ ହେଲୁଣି, ଏପର୍ଯ୍ୟନ୍ତ ତୋ'ର ପିଲାଳିଆ ବୁଦ୍ଧି ଯାଇନାହିଁ । ଶଳାମାନଙ୍କୁ ଲୋକେ କେତେ ଭଲ ପାଆନ୍ତି, ତାଙ୍କୁ କେତେ ଆଦର ସତ୍କାର କରନ୍ତି । ଆଦର ସତ୍କାର କରିବା ପରିବର୍ତ୍ତେ ତୁ ତାଙ୍କୁ ଏପରି କୁରୂପ କରି ପକାଇଛୁ । ଏହା ତୋ ପକ୍ଷେ ଆଦୌ ଶୋଭନୀୟ ନୁହେଁ । ଦିନୁଦିନ ତୁ ପିଲା ହୋଇଯାଉଛୁ । ଏହାଦ୍ୱାରା ଲୋକେ ଆମ୍ଭମାନଙ୍କୁ ବହୁତ ନିନ୍ଦା କରିବେ ।"

'ବଳରାମ ଏହିପରି ମୋ ଭାଇର ପକ୍ଷ ନେଇ ଶ୍ରୀକୃଷ୍ଣଙ୍କୁ ତାଡ଼ନା କରୁଛନ୍ତି', ଏହା ଚିନ୍ତା କରି ରୁକ୍ମିଣୀ ଆନ୍ତରିକ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ବୁଝିପାରିଲେ ଯେ, ଏ ହେଉଛନ୍ତି ତାଙ୍କ ଦେଢ଼ଶୁର । ତେଣୁ ସେ ଅଞ୍ଚଳକୁ ଟିକିଏ ଟାଣି ଆଣି ଆଖିରୁ ଲୁହପୋଛୁ ପୋଛୁ ଆଙ୍ଗୁଠିରେ ଓଢ଼ଣାକୁ ଅଳପ ଆଡ଼େଇ କଣେଇ କଣେଇ ତାଙ୍କ ଆଡ଼କୁ ଗୃହିଁବାକୁ ଲାଗିଲେ । ବଳରାମ ତାଙ୍କ ହାବଭାବ ଦେଖି ବୁଝିପାରିଲେ ଯେ, ଭାଇବୋହୂ ବହୁତ ଦୁଃଖ କରୁଥିଲେ ଓ ତାଙ୍କ ବ୍ୟବହାରରେ ଏବେ ସାନ୍ତ୍ୱନା ପାଇଲେଣି । ତେଣୁ ସେ ରୁକ୍ମିଣୀଙ୍କୁ ସମ୍ବୋଧନ କରି କହିଲେ—"ବୋହୂ ! ତୁମେ ଦୁଃଖ କରନାହିଁ, କିମ୍ବା ମନରେ ଏପରି ଭାବନାହିଁ ଯେ, ଏ ଯାଦବ ତୁମ ବଡ଼ଭାଇଙ୍କୁ ଅପମାନିତ କରିଛନ୍ତି ।

ହେ ରାଜକୁଳକ ! ତୁମେ ତ ସ୍ୱୟଂ ବୁଦ୍ଧିମତୀ । ଏ ସଂସାରରେ କେହି କାହାରିକୁ ସମ୍ମାନ ଦେଇ ପାରେନାହିଁ କିମ୍ବା ଅପମାନିତ କରି ପାରେନାହିଁ । ଏ ସବୁ କାଳର କରାମତି । ଯେତେବେଳେ ଯାହା ହେବାର ଥାଏ, ତାହାହିଁ ହୁଏ । ବଳବାନ୍ ଓ ବଳହୀନ ସମସ୍ତେ ସେହି କାଳର ଅଧୀନ । ଦୁଃଖ, ସୁଖ ଦେବା ଲୋକ ଅନ୍ୟ କେହି ନୁହନ୍ତି । ନିଜର ପୂର୍ବଜନ୍ମକୃତ କର୍ମ ହିଁ ପ୍ରାରବ୍ଧ ରୂପେ ସୁଖ ବା ଦୁଃଖ ଦେଇଥାଏ । (୧)କୃଷ୍ଣ ଯାହା କିଛି କଲ, ଏପରି କରିବା ତା ପକ୍ଷେ ଉଚିତ ନଥିଲା । ତଥାପି ଆମକୁ ଏହା ସ୍ୱୀକାର କରିବାକୁ ହେବ ଯେ, ରୁକ୍ମୀଙ୍କ ଭାଗ୍ୟରେ ଏହିପରି ଦଶା ଭୋଗ କରିବା ପାଇଁ ଲେଖା ଥିଲା ।''

ଭଗବାନ୍ କହିଲେ—''ଭାଇ ! ତୁମେ ତ ମୋତେ ଦୋଷ ଦେଉଛ, ଏ ରୁକ୍ମୀର ଦୋଷ ତ ଦେଖୁନାହିଁ ? ସେ ପ୍ରଥମେ ଆସି ମୋତେ ପ୍ରହାର କଲା । ମୁଁ କ୍ଷତ୍ରିୟ ହୋଇ କ'ଣ ନୀରବ ରହିଥାଆନ୍ତି, ପ୍ରହାରକାରୀକୁ ପ୍ରହାର କରି ନ'ଥାନ୍ତି ? ସେତ ଗୋଟିଏ ଆତତାୟୀ, ବଧ ଯୋଗ୍ୟ ।''

ବଳରାମ ନିଜ କଥା ଉପରେ ଜୋର ଦେଇ କହିଲେ—''ତୁ ପୁଣି ସେହି ପିଲାଳିଆ କଥା କହୁଛୁ । ଯଦି ନିଜର ଆତ୍ମୀୟ ଲୋକ କୌଣସି ଗୁରୁତର ଅପରାଧ କରନ୍ତି କିମ୍ବା ଅନୁଚିତ୍ ବ୍ୟବହାର କରନ୍ତି, ତଥାପି ତାଙ୍କୁ ମାରିଦେବା ଉଚିତ୍ ନୁହେଁ । ଧମକ ଚମକ ଦେଇ ଛାଡ଼ିଦେବା ଉଚିତ । ଦେଖ, ପାପୀ ତ ନିଜ ପାପ କର୍ମପାଇଁ ଆପେ ଆପେ ମରି ସରିଥାଏ, ପୁଣିଥରେ ମୃତବ୍ୟକ୍ତିକୁ ମାରିବ କ'ଣ ? ଥରେ ପେଷି ହୋଇଥିବା ବସ୍ତୁକୁ ଆଉ ପେଷିବା କି ଆବଶ୍ୟକ ?''

ରୁକ୍ମିଣୀ ନିଜ ଭାଇର ଦୁର୍ଦ୍ଦଶା ଦେଖି କାନ୍ଦୁଥିଲେ । ଏଥିପାଇଁ ବଳରାମ ଏହିପରି ମଝିରେ ମଝିରେ ତାଙ୍କୁ ବୋଧଶୋଧ କରୁଥିଲେ, ସେ ରୁକ୍ମିଣୀଙ୍କୁ କହିଲେ—''ରାଜକୁମାରି ! ତୁମେ ଆଉ ଅଧୀର ହୁଅନା । ମୁଁ ବା ତୁମକୁ ଆଉ କ'ଣ କହିବି ? ବ୍ରହ୍ମା ନିଜେ ଏ କ୍ଷତ୍ରିୟମାନଙ୍କୁ ଏପରି କଠୋରଧର୍ମୀ କରି ଅଛନ୍ତି । ରଣ କରିବାବେଳେ ନିଜର ଭାଇ, ବନ୍ଧୁ ଆତ୍ମୀୟ ମଧ୍ୟ ଆତ୍ମୀୟ-ଅନାତ୍ମୀୟ ଦେଖନ୍ତି ନାହିଁ । ସେ ପିତା ହୁଅନ୍ତୁ, ପିତାମହ ହୁଅନ୍ତୁ, ମାତୁଳ ହୁଅନ୍ତୁ କିମ୍ବା, କୌଣସି ଅତି ପ୍ରିୟ ଲୋକ ହୋଇ ଥାଆନ୍ତୁ, ଯଦି ସେ ଯୁଦ୍ଧ କରିବା ପାଇଁ ଅସ୍ତ୍ରଶସ୍ତ୍ର ଧରି କ୍ଷତ୍ରିୟକୁ ଆହ୍ୱାନ କରନ୍ତି, ତାହା ହେଲେ ସେହି ଆହ୍ୱାନକୁ ସ୍ୱୀକାର କରିବାକୁ ପଡ଼ିବ ହିଁ ପଡ଼ିବ । ଆଖିବୁଜି ତାଙ୍କୁ ଦଣ୍ଡ ଦେବାକୁହିଁ ପଡ଼ିବ । ଏଥିପାଇଁ କ୍ଷାତ୍ରଧର୍ମକୁ କ୍ରୂର, କଠୋର ଓ ଘୋର ବୋଲି କୁହାଯାଏ ।''

---

(୧) ଆମ୍ଭାକୁ ନିନ୍ଦିତ ନ କର । ଦଇବ ବଳ ବଳୀୟାର ॥
କର୍ମ ସେ ସୁଖ ଦୁଃଖ ଦେଇ । ପ୍ରବୃତ୍ତି ଅବଶ୍ୟ ଭୁଞ୍ଜଇ ॥
( ଭାଗବତ : ଜଗନ୍ନାଥ ଦାସ : ସ୍କ, ୧୦ମ, ୬୮ଅ. )

ଭଗବାନ ଏହା ଶୁଣି କହିଲେ –"ଭଦ୍ର ! ତୁମେ ଏବେ ଯାହା ଇଚ୍ଛା ତାହା କହିପାର; କିନ୍ତୁ ତୁମ ଆଗରେ ଯଦି ନିଜର ବନ୍ଧୁମାନେ ଦେଖାଇ ଏପରି ବ୍ୟବହାର କରନ୍ତା, ତାହାହେଲେ ତୁମେ କଣ ତାଙ୍କୁ ଛାଡ଼ି ଦିଅନ୍ତ ? ତୁମେ କଣ ଏପରି ତିରସ୍କାରକୁ ଚୁପ୍-ଚାପ୍ ସହି ନିଅନ୍ତ ?

ବଳରାମ କହିଲେ—"ଯଦି ମୁଁ କ୍ଷମା ନ ଦିଅନ୍ତି, ତେବେ ଭୁଲ୍ କରିବସନ୍ତି । ତୁ ଚିନ୍ତା କରି ଦେଖ, କଣେ ଅନ୍ୟ ଜଣଙ୍କୁ ତିରସ୍କାର କାହିଁକି କରେ ? ଅଭିମାନର ବଶୀଭୂତ ହୋଇ ତ ? ତାହା ହେଲେ ଅଭିମାନ ହୁଏ କାହିଁକି ? ଐଶ୍ୱର୍ଯ୍ୟ କାରଣରୁ ହିଁ ଅଭିମାନ, କଳା କୌଶଳ କାରଣରୁ ହିଁ ଅଭିମାନ ହୁଏ । ଲୋକ ଭାବେ—ମୋର ଏତେ ବଡ଼ ରାଜ୍ୟ, ମୁଁ ଏତେବଡ଼ ରାଜ୍ୟର ଅଧୀଶ୍ୱର । ଏତେ ଲୋକ ମୋର ଅଧୀନ, ମୋ ପାଖରେ ବିପୁଳ ଧନ, ଏତେ ରୂପବତୀ ସ୍ତ୍ରୀ, ମୋର ଏତେ ମାନସମ୍ମାନ ଓ ଆଭିଜାତ୍ୟ, ମୁଁ ଏପରି ତେଜସ୍ୱୀ ଓ ପ୍ରଭାବଶାଳୀ । ଏହିପରି ଆହୁରି ଅନେକ କାରଣ ଅଛି ଯେଉଁଥିପାଇଁ ମନୁଷ୍ୟ ନିଜର ବନ୍ଧୁ ବାନ୍ଧବ ଓ ଆତ୍ମୀୟସ୍ୱଜନଙ୍କୁ ତିରସ୍କାର କରିବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । କିନ୍ତୁ ଆମପକ୍ଷେ ଏପରି କାର୍ଯ୍ୟ ଶୋଭନୀୟ ନୁହେଁ । (୩)

ଏହା କହି ବଳରାମ ପୁଣି ରୁକ୍ମିଣୀଙ୍କୁ ବୁଝାଇବାକୁ ଲାଗିଲେ—"ଦେଖ ମା ! ଯାହା ହେବାର ତ ହେଲାଣି । ତୁମର ଏବେ ଶୋକ କରିବା ମିଥ୍ୟାମୋହ । ତୁମ ଭାଇ ସମସ୍ତ ପ୍ରାଣୀଙ୍କ ସହିତ ଦ୍ରୋହକାରୀ । ଦୈବ ତାଙ୍କୁ ଯାହା ଦଣ୍ଡ ଦେବାର କଥା ଦେଲା । ବିଧିର ଯାହା ବିଧାନ ଥିଲା ତାହା ହିଁ ହେଲା । ଏଥିରେ କାହାରି କାହାରି ଦୋଷ ନାହିଁ । ତୁମେ ଏବେ ଚିନ୍ତା କରି ଦେଖତ, ଅପମାନ କାହାକୁ ହେଲା ? ଆତ୍ମା ତ ମାନ ଅପମାନ ଠାରୁ ବହୁ ଦୂରରେ । କେବଳ ଅବଶିଷ୍ଟ ଏ ଶରୀର । ଏ ଶରୀର ତ ଅନିତ୍ୟ, କ୍ଷଣ ଭଙ୍ଗୁର ଓ ନାଶବାନ୍ । ତାହାର ପୁଣି ମାନ ଅପମାନ କଣ ? ହଁ, ଯେଉଁ ଅଜ୍ଞାନୀ ଏ ଦେହକୁ ଆତ୍ମାବୋଲି ଜ୍ଞାନକରି କଥା କହେଁ, ସେହି ହିଁ ମୋହ ବଶତଃ ଦୁଃଖ ଶୋକ ଭୋଗ କରେ । ଏହା ଭଗବାନଙ୍କର ଅଘଟନ ଘଟନ ମହୀୟସୀ ମାୟାର ପ୍ରଭାବରୁ ହୁଏ ।

"ତୁମେ କହିପାର, ଶରୀରର ଅପମାନରୁ ସେହି ଶରୀର ମଧ୍ୟରେ ରହିଥିବା ଆତ୍ମାର ମଧ୍ୟ ଅପମାନ ହୁଏ; କିନ୍ତୁ ପ୍ରକୃତରେ ତାହା ନୁହେଁ । ଆତ୍ମା କଦାପି ଏକାଧିକ ତଥା

(୩) ପୁଣି ଗୋବିନ୍ଦ ମୁଖ ଚାହିଁ । କହନ୍ତି ସ୍ୱଧର୍ମ ଦେଖାଇ ॥
ରାଜ୍ୟ ଧରଣୀ ବିତ୍ତ ଅଶେ । ମାନ ସମ୍ପଦ ତେଜବଶେ ॥
ଆପଣା ଅର୍ଥେ ମତ୍ତ ହୋଇ । ପ୍ରାଣୀ ପୀଡ଼ନ୍ତି ଗର୍ବ ବହି ॥

( ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦ମ. ଅ. ୫୮ )

ଦଶ, ପଚାଶ, ପଚିଶ, ଶହେ ବା ହଜାର ନୁହେଁ । ଏକ ଆତ୍ମା ହିଁ ସମସ୍ତ ଦେହଧାରୀଙ୍କ ମଧ୍ୟରେ ବ୍ୟାପ୍ତ । ଯେପରି ସହସ୍ର ଘଟରେ ଜଳ ପୂର୍ଣ୍ଣ କରିଗଲେ,ତହିଁରେ ସୂର୍ଯ୍ୟ ଚନ୍ଦ୍ରଙ୍କର ପ୍ରତିବିମ୍ବମାନ ଦେଖାଯାଏ; କିନ୍ତୁ ବାସ୍ତବରେ ସୂର୍ଯ୍ୟଚନ୍ଦ୍ର ତ ଏକ । ଜଳ ମଳିନ ହୋଇ ଥିଲେ ସୂର୍ଯ୍ୟଚନ୍ଦ୍ର ମଧ୍ୟ ମଳିନ ଦେଖା ଯାଆନ୍ତି । କିନ୍ତୁ ସୂର୍ଯ୍ୟଚନ୍ଦ୍ରଙ୍କଠାରେ ମଳ ନାହିଁ । ସେହିପରି ଆତ୍ମା ମଧ୍ୟ ଶୁଦ୍ଧ ତଥା ନିର୍ମଳ ; ଅଜ୍ଞାନୀ ଲୋକ ସେହି ଏକମାତ୍ର ବିଶୁଦ୍ଧ ଆତ୍ମାକୁ ଅନେକ ଦେଖନ୍ତି ।

"ଆତ୍ମା ଆପେ ଆପେ ନିଜକୁ ହିଁ ଦେଖନ୍ତି । ନିଜେ ନିଜ ସହିତ କ୍ରୀଡ଼ା କରେ । ଯେପରି ସୂର୍ଯ୍ୟ ଆଖିରେ ଜ୍ୟୋତି ପ୍ରଦାନ କରିଛନ୍ତି ଓ ପଦାର୍ଥକୁ ହିଁ ସୂର୍ଯ୍ୟ ପ୍ରକାଶ କରନ୍ତି, ସୂର୍ଯ୍ୟ ଜ୍ୟୋତି ନ ଥିଲେ ଯେପରି ଆମର ଆଖି ଥାଇ ମଧ୍ୟ ଆମେ ଦେଖିପାରୁ ନାହିଁ,ତେଣୁ ଦେଖିବା ଆଦି କିମ୍ବା ସୂର୍ଯ୍ୟଙ୍କ ବ୍ୟତୀତ ସମ୍ଭବ ହୁଏ ନାହିଁ । ସେହିପରି ସମସ୍ତ କାର୍ଯ୍ୟ ଆତ୍ମାଦ୍ୱାରା ହିଁ ହେଉଅଛି । ପୁନଶ୍ଚ ଆତ୍ମା ସବୁଥିରେ ନିର୍ଲିପ୍ତ । ଅମଳ ପଦାର୍ଥଗୁଡ଼ିକର ପ୍ରସିଦ୍ଧି ଆତ୍ମାର ହିଁ ଅଧୀନ । ତେଣୁ ଆତ୍ମା ସଂଯୋଗ ଓ ବିଯୋଗ ନିଭମ୍ବର ପରେ । ଏବେ ତୁମେ ଧ୍ୟାନ ପୂର୍ବକ ବିଚାର କରି ଦେଖ । ଲୋକେ କହନ୍ତି, ଅମାବାସ୍ୟାଦିନ ଚନ୍ଦ୍ରକ୍ଷୟ ହୋଇଗଲା; କିନ୍ତୁ ବାସ୍ତବରେ ଚନ୍ଦ୍ରମା କେବେହେଲେ କ୍ଷୟ ହୁଏ ନାହିଁ । ତାହାର କଳା ହିଁ କ୍ଷୟ ହୁଏ । କିନ୍ତୁ ତାପଗ୍ରହ ଯୋଗୁଁ କ୍ଷୟିତ କଳାକୁ ଲୋକମାନେ ଚନ୍ଦ୍ରମାର କ୍ଷୟ ହେଲା ବୋଲି କହନ୍ତି । ସେହିପରି ଜନ୍ମହେବା, ମରିବା, ବୃଦ୍ଧ ହେବା, ଏ ସବୁ ଶରୀରର ଧର୍ମ, ଆତ୍ମାର ନୁହେଁ । ତଥାପି ଲୋକମାନେ ଅଜ୍ଞାନତା ବଶତଃ ଆତ୍ମାରେ ଏହାର ଆରୋପ କରି ଥାଆନ୍ତି ।

ଏବେ ଦେଖ, ଜଣେ ଲୋକ ଶୂନ୍ୟ ଅରଣ୍ୟରେ ଶୋଇ ରହିଅଛି । ଶୋଇବା ଅବସ୍ଥାରେ ସେ ସ୍ୱପ୍ନ ଦେଖିଛି, ମୁଁ ରାଜା ହୋଇଗଲି । ହାତୀ ଉପରେ ଚଢ଼ି ଯାଉଛି, ସୁନ୍ଦର ସୁନ୍ଦର ସ୍ୱାଦିଷ୍ଟ ପଦାର୍ଥ ଖାଉଅଛି, ବିଭିନ୍ନ ଭୋଗରେ ବୁଡ଼ି ରହିଅଛି । କିନ୍ତୁ ପ୍ରକୃତରେ ଦେଖାଯାଏ, ସେଠାରେ ହାତୀ ନାହିଁ କିମ୍ବା ଖାଦ୍ୟ ପଦାର୍ଥ ଆଦି କିଛି ନାହିଁ । ତଥାପି ଭୋକ୍ତା ନିଜର ଭାବନା ଅନୁସାରେ ସେହିସବୁ ଭୋଗ କରୁଅଛି । ସେହିପରି ଅଜ୍ଞାନୀ ପୁରୁଷ ଏହି ମିଥ୍ୟା ସଂସାରଚକ୍ରରେ ପାଶବଦ୍ଧ ହୋଇ ମୁଁ ସୁଖୀ, ମୁଁ ଦୁଃଖୀ, ମୁଁ ଦରିଦ୍ର, ମୁଁ ଧନୀ, ମୁଁ ରୋଗୀ ଇତ୍ୟାଦି କଳ୍ପନା କରି ଚିନ୍ତାଗ୍ରସ୍ତ ହୋଇଥାଏ । ଏଥିପାଇଁ ତୁମେ ଏହାକୁ ଭଗବାନଙ୍କର ମାୟା ବୋଲି ମନେକରି ସୁସ୍ଥ ହୋଇ ଯାଅ । ଯାହା ହେବାର ଥିଲା, ତାହା ହୋଇଗଲା ।"

ସୂତ କହିଲେ—"ମୁନିଗଣ ! ନିଜର ଦେବତୁଲ୍ୟ ବଳଦେବଙ୍କ ସାନ୍ତ୍ୱନାରେ ରୁକ୍ମିଣୀଙ୍କର ଶୋକ ଦୂର ହେଲା । ଏହା ପାରବ୍ଧର ଭୋଗ ବୋଲି ସେ ବୁଝି ପାରିଲେ ଓ ତାଙ୍କର ଅସନ୍ତୋଷ ଦୂର ହେଲା ।"

ବଳଦେବ ମୁକ୍ତ କରିଦେବା ଯୋଗୁଁ ରୁକ୍ମୀ ଅତ୍ୟନ୍ତ ଉଦାସ ମନୋରଥ ହୋଇ ପଡ଼ିଲେ । ତାଙ୍କ ସୈନ୍ୟମାନେ ମୃତ୍ୟୁବରଣ କରିଥିଲେ, ରଥ ଭାଙ୍ଗିଭୁଜି ଯାଇଥିଲା, ସାରଥୀ, ଅଶ୍ୱ ଆଦି ମରିଯାଇଥିଲେ । ସେ ଯେଉଁ ଭଉଣୀକୁ ଛଡ଼ାଇ ନେବାକୁ ଆସିଥିଲେ ତାକୁ ମଧ୍ୟ ଛଡ଼ାଇ ନେଇ ପାରିଲେ ନାହିଁ । ନିଜେ ମଧ୍ୟ ମୃତ୍ୟୁବରଣ କଲେ ନାହିଁ । ଏହିସବୁ କାରଣରୁ ସେ ଅତ୍ୟନ୍ତ ଦୁଃଖିତ ହେଲେ । ଶ୍ରୀକୃଷ୍ଣ ତାଙ୍କୁ ଯାତବେଣ୍ଢିଆ କରି ବିକୃତରୂପ କରିଥିବାରୁ ତାଙ୍କୁ ବଡ଼ ଅପମାନ ହୋଇଥିଲା । ଏହି ଲଜ୍ଜା କାରଣରୁ ଓ ନିଜର ପୂର୍ବ ପ୍ରତିଜ୍ଞା କାରଣରୁ ସେ ଆଉ କୁଣ୍ଡିନପୁର ଫେରିଲେ ନାହିଁ । ସେ ନିଜେ ରହିବାପାଇଁ 'ଭୋଜକଟ' ନାମକ ଏକ ନଗର ବସାଇଲେ । ସେଠାରେ ରାଜଧାନୀ କରାଇ ନିଜର ପୁରୋହିତ ଓ ମନ୍ତ୍ରୀମାନଙ୍କ ସହିତ ରହିବାକୁ ଲାଗିଲେ । ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପ୍ରତି ତାଙ୍କ ମନରେ ଯେଉଁ ଦ୍ୱେଷ ଥିଲା, ତାହା ଦୂରହେଲା ନାହିଁ । କେବଳ ସେତିକି ନୁହେଁ, ଏହି ଅପମାନ ଯୋଗୁଁ ତାଙ୍କର ଦ୍ୱେଷ ଦ୍ୱିଗୁଣିତ ହୋଇଗଲା ।

ଭଗବାନ ରୁକ୍ମିଣୀଙ୍କୁ ନେଇ ଦ୍ୱାରକାପୁରୀ ଚାଲିଗଲେ । ସେଠାରେ ଯେପରି ବିଧିବିଧାନରେ ବିବାହ କାର୍ଯ୍ୟ ସମ୍ପାଦନ ହେଲା, ତାହା ପରବର୍ତ୍ତୀ ପ୍ରସଙ୍ଗରେ ବର୍ଣ୍ଣିତ ହୋଇଛି ।

## ଛପପଦ୍ମ

ନିରଖି ବନ୍ଧୁବଧ ପରି ରୁକ୍ମିନୀ ହରି ଚରନନ ମେଂ ।
ଡ଼ରପି କହେଂ ମମ ବନ୍ଧୁ ବଧେଂ ନହିଂ ନାଥ ! ଶରନ ମେଂ ॥
ମାନି ପ୍ରିୟାକେ ବଚନ ନ ରୁକ୍ମୀ ଫିରି ହରି ମାରେଂଯା ।
କରି କୁରୂପ କଚ କତରି ବାଁଧି ରଥ ପୀଛେ ଡ଼ାରେଂଯା ॥
ଆଇ ଛୁଡ଼ାୟୋ ରାମ ନେ, ଡାଁଟେ ହରି ଅନୁଚିତ କହେଂଯା ।
ଗୟୋ ନ ପୁର ପୁନି ଭୋଜକଟ, ପୁର ବସାଇ ରୁକ୍ମୀ ରହେଂଯା ॥



# ଦ୍ୱାରକାରେ ବିବାହ-ଉତ୍ସବ

ଭଗବାନ ଭୀଷ୍ମକସୁତାମେବଂ ନିର୍ଜିତ୍ୟ ଭୂମିପାନ୍ ।
ପୁରମାନୀୟ ବିଧିବଦୁପୟେମେ କୁରୁଦ୍ୱହ । *

(ଶ୍ରୀ ଭା : ୧୦ମ ସ୍କନ୍ଧ ୫୪ ଅ: ୫୩ ଶ୍ଳୋକ)

## ଛପ୍ପୟ

ଭୀଷ୍ମକ ଦୁହିତ ଜୀତ ଦ୍ୱାରକାମହଁ ହରି ଆୟେ ।
ବହୂ ଆଗମନ ସୁନତ ନଗରମହଁ ବଜତ ବଧାୟେ ॥
ଲୋଗ ଲୁଗାଇନି ଜୁରୀ ଔର ନବବଧୂ ସଜାଇ ।
କୀୟୋ ବିଧିବତ୍ ବ୍ୟାହ ରୁକ୍ମିନୀ ସଁଗ ଯଦୁରାଇ ॥
ପାଗ ଦୁପଟ୍ଟା ସିରସଜ, ପହିନ ପହିନ ଯାଦବ ସଜେଂ ।
ନାରୀ ଗାବେଁ ଗୀତ ମିଲି, ମଧୁର ମଧୁର ବାଜେ ବଜେଂ ॥

ବିବାହରେ ପ୍ରତ୍ୟେକଙ୍କ ମନରେ ପ୍ରସନ୍ନତା ଜାତ ହୁଏ । ବିବାହଠାରୁ ବଳି ଅନ୍ୟ କୌଣସି ଉତ୍ସବରେ ଏତେ ପ୍ରସନ୍ନତା ଆସେନାହିଁ । ବର ନବବଧୂ ଲାଭ କରି ଓ କନ୍ୟା ବର ଲାଭକରି ଅତ୍ୟନ୍ତ ପ୍ରସନ୍ନ ହୁଅନ୍ତି । ବରର ମାତାପିତା ପୁତ୍ରବଧୂ ଓ ଯୌତୁକ ସାମଗ୍ରୀ ଦେଖି ପ୍ରସନ୍ନ ହୁଅନ୍ତି । ଭଉଣୀ ଭାଉଜ ଲାଭ କରି ପ୍ରସନ୍ନ ହୁଏ । ପିଲାମାନେ ମିଠେଇ ଖାଇ ଓ ବରଯାତ୍ରୀଙ୍କୁ ଦେଖି ପ୍ରସନ୍ନ ହୁଅନ୍ତି । ଜାତି କୁଟୁମ୍ବ ଭୋଜି ଭାତ ଖାଇ ପ୍ରସନ୍ନ ହୁଅନ୍ତି । ଚାକରବାକର ଓ ସେବାକାରୀମାନେ ପାରିତୋଷିକ

---

* ରୁକ୍ମିଣୀ ଘେନି ଭଗବାନ । ପ୍ରବେଶ ଦ୍ୱାରକାଭୁବନ ॥
ସମରେ ଜିଣି ସର୍ବରାଜା । ଯାଦବେ କଲେ ପାଦପୂଜା ॥
ସ୍ତୁତି କରନ୍ତି ପୁରନର । ଆନନ୍ଦ ଦ୍ୱାରାବତୀପୁର ॥
ଗୋବିନ୍ଦ ବିଭାର ଉତ୍ସବେ । ପୁର ମଣ୍ଡିଲେ ନାନା ଭାବେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ ସ୍କ, ଅ ୫୯·)

ପାଇ ପ୍ରସନ୍ନ ହୁଅନ୍ତି । ପୁରୋହିତ ଦକ୍ଷିଣା ପାଇ ପ୍ରସନ୍ନ ହୁଅନ୍ତି । ସାର କଥା ଏହି ଯେ, ବିବାହ ଉତ୍ସବରେ ସମସ୍ତେ ଅତି ଖୁସି ହୋଇଥାଆନ୍ତି । ଯେଉଁ ବ୍ୟକ୍ତିର ଗୃହରେ ବିବାହ ଉତ୍ସବ ଓ ବନ୍ଧୁମିଳନ ହୁଏ ନାହିଁ, ସେ ଘର ଶ୍ମଶାନ ସଦୃଶ । ଗୃହସ୍ଥର ଘରର ଶୋଭା ବିବାହାଦି ଉତ୍ସବରେ ବଢ଼ିଥାଏ । ନବ ବରବଧୂ ଦର୍ଶନ ଲକ୍ଷ୍ମୀ-ନାରାୟଣଙ୍କ ଦର୍ଶନ ସଦୃଶ ହୋଇଥାଏ । ତେଣୁ ଯେଉଁଠାରେ ଶୁଭବିବାହ ଅନୁଷ୍ଠିତ ହୋଇଥାଏ, ସେଠାରେ ଆତ୍ମୀୟ ସ୍ୱଜନ ବର ବଧୂଙ୍କୁ ଦର୍ଶନ କରି ଆନ୍ତରିକ ପ୍ରସନ୍ନତା ଅନୁଭବ କରି ଥାଆନ୍ତି ଓ ଯଦି ବିଷ୍ଣୁ ସ୍ୱୟଂ ବର ହୋଇ ଥାଆନ୍ତି ଏବଂ ଲକ୍ଷ୍ମୀ ସ୍ୱୟଂ ବଧୂ ବେଶରେ ଓଢ଼ଣାଟାଣି ବସି ଥାଆନ୍ତି, ତାହାହେଲେ ତ ଆଉ କିଛି କହିବାର ନାହିଁ । ଏହି ଯୁଗଳ ମୂର୍ତ୍ତିଙ୍କ ଦର୍ଶନ ଅନେକ ଜନ୍ମର ପୁଣ୍ୟ ଫଳରୁ ହୋଇଥାଏ ।

ସୂତ କହିଲେ—"ମୁନିଗଣ ! ବଳଦେବ ଯେତେବେଳେ ରୁକ୍ମୀଙ୍କୁ ମୁକ୍ତ କରିଦେଲେ, ସେତେବେଳେ ଯାଦବମାନେ ଜୟଗାନ କରିବାକୁ ଲାଗିଲେ ଓ ଦ୍ୱାରକା ଅଭିମୁଖେ ଯାତ୍ରା କଲେ । ଦ୍ୱାରକାରେ ଯେତେବେଳେ ଏ ସମାଚାର ପହଞ୍ଚିଲା, ସେତେବେଳେ ଦ୍ୱାରକାବାସୀଙ୍କ ଆନନ୍ଦର ସୀମା ରହିଲା ନାହିଁ । ଭଗବାନ ଶ୍ରୀକୃଷ୍ଣଙ୍କୁ ସମସ୍ତ ନରନାରୀ ପ୍ରାଣଠାରୁ ବଳି ଭଲପାଉଥିଲେ । ଭଗବାନଙ୍କ ବିବାହ ବିଷୟରେ ସମସ୍ତେ ଚିନ୍ତିତ ଥିଲେ । ସମସ୍ତେ ଭଗବାନଙ୍କୁ ଯୁଗଳ ରୂପରେ ଦର୍ଶନ କରିବାକୁ ଲାଳାୟିତ ଥିଲେ । ଯେତେବେଳେ ସେମାନେ ଶୁଣିଲେ ଯେ, ସେମାନଙ୍କର ମନୋରଥ ପୂର୍ଣ୍ଣ ହୋଇଛି, ସେତେବେଳେ ସେମାନଙ୍କର ଆନନ୍ଦର ଠିକଣା ରହିଲା ନାହିଁ । ସମସ୍ତେ ଅନୁଭବ କଲେ, ଯେପରିକି ନିଜ ନିଜ ଘରେ ଏକ ଏକ ବିବାହ ଉତ୍ସବ ଅନୁଷ୍ଠିତ ହୋଇଛି । ଅତି ଉତ୍ସାହରେ ସେମାନେ ନବବଧୂଙ୍କ ସହିତ ଶ୍ରୀକୃଷ୍ଣଙ୍କ ଦର୍ଶନ କରିବାପାଇଁ ତାଙ୍କ ଆଗମନକୁ ଅପେକ୍ଷା କରି ରହିଲେ । ମାନଙ୍କର ହୃଦୟ ଅତି ପୁଲକିତ ହୋଇ ଉଠୁଥିଲା । ବୋହୂ ମଧ୍ୟ ସାକ୍ଷାତ୍ ସୁନ୍ଦରତାର ସଜୀବ ପ୍ରତିମା ଥିଲେ । ବାସୁଦେବ ସଙ୍ଗେ ସଙ୍ଗେ ପୁରୋହିତଙ୍କୁ ଡକାଇଲେ ଓ ତାଙ୍କ ଆଗରେ ଦକ୍ଷିଣା ରଖି କହିଲେ—'ମହାଶୟ ! ଆପଣ ବିଳମ୍ବ ନ କରି ବିବାହର ଶୁଭମୁହୂର୍ତ୍ତ ପଞ୍ଜିକା ଦେଖି ସ୍ଥିର କରନ୍ତୁ ।'

ପୁରୋହିତ ଜାତକ ଓ ପାଞ୍ଜି ଦେଖି ଗ୍ରହ ନକ୍ଷତ୍ର ହିସାବ କରି କହିଲେ—"ରାଜନ୍ ! ପରଦିନ ହିଁ ଶୁଭମୁହୂର୍ତ୍ତ ମିଳୁଛି । ବିବାହ ତ ଏକ ପ୍ରକାର ହୋଇ ଯାଇଛି, ଏବେ କେବଳ ବିଧି ପାଳିବାକୁ ହେବ । ଶାସ୍ତ୍ରୀୟ ବିଧି ପାଳନ କରିବାକୁ ପଡ଼ିବ । ତେଣୁ ପରଦିନ ବିବାହ ବ୍ୟବସ୍ଥା କରନ୍ତୁ ।"

ସୀନେକମାନେ ପଚାରିଲେ—'ପୁରୋହିତ ! ହଳଦୀ ଲେଇ କେବେ ହେବ ?"

ପୁରୋହିତ କହିଲେ—"ଆଜି ଓ କାଲି ମଧ୍ୟରେ ତୁମ୍ଭେମାନେ ହଳଦୀ ତେଲ ବାଧି କରିନିଅ। ବୋହୂଙ୍କୁ ତ ତେଲ ହଳଦୀ ଲଗାଇ ଦିଆହେବ। କିନ୍ତୁ ଶ୍ୟାମସୁନ୍ଦରଙ୍କୁ ତେଲ କିମ୍ବା ହଳଦୀ ଯାହା ହେଲେ ଗୋଟିଏ ଲଗାଇ ଦିଅ। ଏହା ବ୍ୟତୀତ ତ ଅନ୍ୟ କିଛି ଲଗାଯିବ ନାହିଁ। ପଞ୍ଚଟେଲ ଓ କଙ୍କଣ ଆଦି ବାଧି କାଲିହିଁ ପାଳନ କର।"

ଏହା ଶୁଣି ସ୍ତ୍ରୀଲୋକମାନେ ସମସ୍ତ ଆୟୋଜନ କରିବାରେ ଲାଗିଗଲେ। ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ଅନନ୍ୟ ପ୍ରେମ ରଖିଥିବା ସମସ୍ତ ଯାଦବଙ୍କ ଘରେ ଖୁବ୍ ଧୁମ୍‌ଧାମ୍‌ରେ ଏହି ଉତ୍ସବ ପାଳନ କରାଗଲା। ଦ୍ୱାରକାବାସୀ ନରନାରୀ ଆନନ୍ଦଭରା ହୋଇ ସ୍ୱର୍ଣ୍ଣ ମଣିମୟ କୁଣ୍ଡଳମାନ ଧାରଣ କରି, ନୂଆ ନୂଆ ବସ୍ତ୍ର ପିନ୍ଧି ଆନନ୍ଦରେ ବିଭୋର ହୋଇ ନିଜ ନିଜ କର୍ତ୍ତବ୍ୟରେ ଲାଗିଗଲେ। ବର ଓ ବଧୂଙ୍କୁ ବିବିଧ ବସ୍ତ୍ରାଲଙ୍କାରରେ ଭୂଷିତ କରାଗଲା। ଦ୍ୱାରକା ନଗରୀକୁ ଖୁବ୍ ସୁନ୍ଦର ଭାବରେ ସଜାଇ ଦିଆଗଲା। ପ୍ରତ୍ୟେକଙ୍କ ଦ୍ୱାର ଦେଶରେ ମଙ୍ଗଳ ଘଟ ସ୍ଥାପନା କରାଗଲା। ଦୀପମାନ ଧାଡ଼ି ଧାଡ଼ି କରି ଜଳାଯାଇ ରାତି କାଳରେ ନଗରୀ ଆଲୋକମୟ ହୋଇ ଉଠିଲା। ସମସ୍ତ ମିତ୍ର ରାଜା ଓ ବନ୍ଧୁମାନଙ୍କୁ ନିମନ୍ତ୍ରଣ କରାଗଲା। ମହାରାଜ ଭୀଷ୍ମକ ମଧ୍ୟ ସପରିବାର କନ୍ୟାଦାନ କରିବା ପାଇଁ ଆସି ଉପସ୍ଥିତ ହେଲେ। ତାଙ୍କ ରହିବା ପାଇଁ ସୁବ୍ୟବସ୍ଥା କରାଗଲା। ହାତୀମାନେ ନଗରରେ ଆନନ୍ଦରେ ବିଚରଣ କଲେ। ପ୍ରତ୍ୟେକଙ୍କ ଘର ସମ୍ମୁଖରେ କଦଳୀଗଛ ଶୋଭା ପାଇଲା। ସମସ୍ତଙ୍କ ହୃଦୟରେ ଏକ ବିଚିତ୍ର ଅନିର୍ବଚନୀୟ ଆନନ୍ଦ। ସ୍ତ୍ରୀଲୋକମାନେ ନୂତନ ବସ୍ତ୍ର ପରିଧାନ କରି ନିଜ ନିଜ କାର୍ଯ୍ୟରେ ତତ୍ପର ହୋଇ ଉଠିଥିଲେ ଓ ବର-ବଧୂଙ୍କ ପାଇଁ କିଛି ନା କିଛି କାର୍ଯ୍ୟ କରୁଥିଲେ। କୁରୁ, ସୃଞ୍ଜୟ, କୈକେୟ, ବିଦର୍ଭ ଓ କୁନ୍ତି ଆଦି ରାଜ୍ୟର ରାଜାମାନେ ସପରିବାର ଏହି ଉତ୍ସବରେ ଯୋଗଦେଲେ। ସମସ୍ତେ ନିଜ ନିଜର ଅନନ୍ତ ବୈଭବ ପ୍ରଦର୍ଶନ କରୁଥିଲେ। ସର୍ବତ୍ର ରୁକ୍ମିଣୀ ଦେବୀଙ୍କ ହରଣ ବିଷୟ ଆଲୋଚିତ ହେଉଥିଲା। ରାଜାଗଣ ଅତି ବିସ୍ମୟର ସହିତ ଏହି ବିଷୟ ଚର୍ଚ୍ଚା କରୁଥିଲେ। ରାଜକନ୍ୟାଗଣ ରୁକ୍ମିଣୀ ହରଣ ସମାଚାର ଶୁଣି ଅତ୍ୟନ୍ତ ପ୍ରସନ୍ନ ହେଉଥିଲେ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ! ରାଜକନ୍ୟାମାନେ ହରଣ ସମାଚାର ଶୁଣି କାହିଁକି ଏତେ ଖୁସି ହେଉଥିଲେ?"

ସୂତ କହିଲେ "ମହାରାଜ! ଏପରି କେଉଁ ପୁଣ୍ୟାତ୍ମା ରାଜାଙ୍କର କନ୍ୟା ଅବା ଶ୍ୟାମସୁନ୍ଦରଙ୍କୁ ନିଜର ପତି ରୂପେ ବରଣ କରିବାକୁ ନ ଚାହିଁବ? ପ୍ରଥମରୁ ତ ସେ ଚିନ୍ତା କରୁଥିଲେ ଯେ, ସମ୍ଭବତଃ ଶ୍ୟାମସୁନ୍ଦର ମୋତେ ସ୍ୱୀକାର କରିବେ ନାହିଁ କିମ୍ବା ତାଙ୍କ ପିତା ତାଙ୍କୁ ପ୍ରଦାନ କରିବେ ନାହିଁ। କିନ୍ତୁ ଏ ଘଟଣାରୁ ସେ ଦୃଢ଼ ନିଶ୍ଚିତ ହେଲେ ଯେ, ଯଦି ତାଙ୍କ ପିତା ପ୍ରସନ୍ନତା ପୂର୍ବକ ତାଙ୍କୁ ଭଗବାନଙ୍କୁ ପ୍ରଦାନ ନ କରନ୍ତି, ତାହା ହେଲେ କୌଣସି ଚିନ୍ତା ନାହିଁ।

ଶୌନକ କହିଲେ—"ହଁ ସୂତ ! ମୁଁ ତ ଶୁଣିଥିଲି ରୁକ୍ମିଣୀଙ୍କୁ ବିବାହ କରିବା ପରେ ଭଗବାନଙ୍କୁ ବିବାହ କରିବା ରୋଗ ଗ୍ରାସ କରିଥିଲା । ଭଗବାନ ଏହି ବିବାହ ପରେ ଲଗ ଲଗ ବିବାହ କଲେ । ଶୁଣାଯାଏ ଷୋଳ ହଜାର ଏକଶହ ଆଠ ବିବାହ ଭଗବାନ୍ କରିଥିଲେ । ଆପଣ ଆମ୍ଭମାନଙ୍କୁ ସେହି ସମସ୍ତ କଥା ଶୁଣାନ୍ତୁ । ବର୍ତ୍ତମାନ ତ ରୁକ୍ମିଣୀଙ୍କ ବିବାହ କଥା କହିବେ । ମହାରାଜ ଭୀଷ୍ମକ କିପରି ତାଙ୍କ ବିବାହ କରାଇଲେ ତାହା ଆମ୍ଭମାନଙ୍କୁ ଶୁଣାନ୍ତୁ ।

ସୂତ ହସି ହସି କହିଲେ -"ହଁ ମହାରାଜ ! ଯଦି ଷୋଳ ସହସ୍ର ବିବାହ ସମ୍ବନ୍ଧରେ ମୁଁ ବିସ୍ତାର କରି କହିବି, ତାହା ହେଲେ ତ ଭାଗବତ କଥା ସରିଯିବ ।" ପୁଣି ତ ଏ ବିବାହ କଥା ମୋତେ କହିବାକୁ ହେବ । ତେଣୁ ଅଷ୍ଟପାଟବଂଶୀଙ୍କ (ଆଠ ପାଟରାଣୀଙ୍କ) ବିବାହ ସମ୍ବନ୍ଧରେ ମୁଁ ଏଠାରେ ସଂକ୍ଷେପରେ କହିବି ଓ ଷୋଳସହସ୍ରଙ୍କ କଥା ଏକାଥରକେ କହିବି ।"

ଶୌନକ କହିଲେ—"ମହାଭାଗ ! ଆପଣ ଭଗବାନଙ୍କ ପ୍ରଥମ ବିବାହ କଥା ଏବେ କହୁଥିଲେ, ତାହା କୁହନ୍ତୁ ।"

ସୂତ କହିଲେ—"ହଁ ମହାରାଜ ! ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ । ମୁଁ ଭୁଲି ଯାଇଥିବା କଥା ଆପଣ ମନେ ପକାଇ ଦେଲେ । ହଁ, ମହାରାଜ ଭୀଷ୍ମକ ଏହାପରେ ଭଗବାନଙ୍କୁ ବରଣ କରି ଆସନରେ ବସାଇ ବିଷ୍ଟର, ପାଦ୍ୟ, ଅର୍ଘ୍ୟ, ଆଚମନୀୟ ଓ ମଧୁପର୍କ ଆଦି ଆଣି ତାଙ୍କୁ ପୂଜା କଲେ । ଅଙ୍ଗନ୍ୟାସ କରାଇ ଗୋଦାନ କଲେ । ଏହାପରେ ଅଗ୍ନି ସ୍ଥାପନ ପୂର୍ବକ ବସ୍ତ୍ରଦାନ କଲେ । ଏହାପରେ ସେ ଗୋତ୍ର, ଶାଖା, ପ୍ରବର ଉଚ୍ଚାରଣ ପୂର୍ବକ କନ୍ୟାଦାନର ସଂକଳ୍ପ କଲେ ।

ଯଥା:—"କନ୍ୟାଂ କନକ ସମ୍ପନ୍ନାଂ କନ୍ୟକା ଭରଣୈ ର୍ଯୁତାମ୍ ।
ଦାସ୍ୟାମି ବିଷ୍ଣବେତୁଭ୍ୟଂ ବ୍ରହ୍ମଲୋକ ଜିଗୀଷୟା ॥
ବିଶ୍ୱମ୍ଭରାଃ ସର୍ବଭୂତା ସାକ୍ଷିଣ୍ୟଃ ସର୍ବଦେବତାଃ ।
ଇମାଂ କନ୍ୟାଂ ପ୍ରଦାସ୍ୟାମି ପିତୃଣା ତାରଣାୟ ଚ ॥

ଏହି ପ୍ରାର୍ଥନା କରି ମହାରାଜ ଭଗବାନଙ୍କୁ ନିଜର କନ୍ୟା ପ୍ରଦାନ କଲେ । ଏହାପରେ ଅନ୍ୟମାନେ ବର କନ୍ୟାଙ୍କର ପଦଧୌତ କଲେ । ଆଚାର୍ଯ୍ୟଙ୍କ କହିବା ଅନୁସାରେ କନ୍ୟା ବରକୁ ଓ ବର କନ୍ୟାକୁ ଦର୍ଶନ କଲେ । ଯେତେବେଳେ ଦୁଇ-ଜଣଙ୍କର ବିବାହବେଦୀରେ ଦେଖା ଦେଖି ହୋଇଗଲା ସେତେବେଳେ ଉଭୟେ ଅଗ୍ନି ପ୍ରଦକ୍ଷିଣ କଲେ । ପ୍ରଦକ୍ଷିଣ ପରେ ଦୁହେଁ ପୂର୍ବାଭିମୁଖୀ ହୋଇ କୁଶକଣ୍ଡିକାପୂର୍ବକ ଅଗ୍ନିରେ ଘୃତ ଆହୁତି ଦେଲେ । ତଦନନ୍ତର ଭଗବାନ ରୁକ୍ମିଣୀଙ୍କ ମୁଣ୍ଡରେ ସିନ୍ଦୂର

ଭରିଦେଲେ । ହବନ (ହୋମ) ସରିବା ପରେ ରୁକ୍ମିଣୀଙ୍କର କର ଭଗବାନଙ୍କ କରକମଳ ଉପରେ ରଖାଗଲା । ସେଥିରେ ମହାରାଜ ଭୀଷ୍ମକଙ୍କ ସବୁଠାରୁ କନିଷ୍ଠପୁତ୍ର ରୁକ୍ମମାଳୀ ଧାନକେଣ୍ଡା ଆଣି ରଖିଲେ । ଏହାପରେ ଲଜ୍ଜା ହୋମ ହେଲା ଓ ଶିଳା ଉପରେ ପାଦ ରଖାଗଲା । ଦୁହେଁ ପୁନଶ୍ଚ ଅଗ୍ନି ପ୍ରଦକ୍ଷିଣ କରି ସପ୍ତପଦୀ ହେଲାପରେ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା ।

ଏଇପରି ଭାବରେ ସମସ୍ତ ବେଦାଚାର ଓ ଲୋକାଚାର ପାଳନ କରାଯିବା ପରେ ବର କନ୍ୟା ଉଭୟେ ରାଜମହଲକୁ ଗଲେ । ସେଠାରେ ମାତାମାନେ ଅନେକ ଦେବ-ଦେବୀଙ୍କୁ ପୂଜା କରି ଘର ଭିତରେ ଯାହା ଯାହା ବିଧିବିଧାନ ପାଳନ କରିବାର କଥା ପାଳନ କରି ପୂଜା ଆଦି କରାଇଲେ । ଏ ସମସ୍ତ କାର୍ଯ୍ୟ ଶେଷ ହେବାପରେ ଉଭୟେ ସୁଖରେ ରାଜମହଲରେ ରହିଲେ ।"

ସୂତ କହିଲେ—"ମୁନିଗଣ ! ବିବାହ ପରେ ମାତା-ପିତା ଓ ପରିବାରର ସମସ୍ତ ଲୋକଙ୍କର ଆଶାଥାଏ ଯେ, କେବେ ସନ୍ତାନ ହେବ ? ତେଣୁ ଭଗବାନଙ୍କର ଯେପରି ପୁତ୍ର ସନ୍ତାନ ଲାଭ ହେଲା, ସେ ବିଷୟରେ ମୁଁ ପରବର୍ତ୍ତୀ ପ୍ରସଙ୍ଗରେ କହିବି । ଆପଣ ଭଗବାନଙ୍କ ପୁତ୍ରୋତ୍ପତ୍ତି କଥା ମନଧ୍ୟାନ ଦେଇ ଶ୍ରବଣ କରିବାକୁ ଅନୁରୋଧ ।"

## ଛପ୍‌ପୟ

ସୁନ୍ଦର ମଣ୍ଡପ ସଜେୟା ବଧୂ ଅରୁ ବର ବୈଠାୟେ ।
ଗଣପତି ଗ୍ରହ ଅରୁ ମାତୃକାଦି ପୂଜନ କରବାୟେ ॥
ଭାଁମର ଫିରି କର ଗଠେୟା ଖୀଲକୋ ହବନ କରାୟୋ ।
ନେଗ ଯୋଗ ସବ କରେ ମାଁଗ ସିନ୍ଦୂର ଭରାୟୋ ॥
କରିକେଁ ପାଲଗାରୁବ ପୂର୍ନି, କର୍ମ ଚତୁର୍ଥୀ ହ୍ୱେ କିୟୋ ।
ଯୋଂ ଶ୍ରୀରୁକ୍ମିନୀ ସଙ୍ଗମହଁ, ବ୍ୟାହ ଶ୍ୟାମକୋ ହ୍ୱେ ଗୟୋ ॥



# ପ୍ରଦ୍ୟୁମ୍ନଙ୍କର ଜନ୍ମ

କାମସ୍ତୁ ବାସୁଦେବାଂଶୋ ଦଗ୍ଧଃ ପ୍ରାଗ୍ ରୁଦ୍ରମନ୍ୟୁନା ।
ଦେହୋପପତ୍ତୟେ ଭୂୟସ୍ତମେବ ପ୍ରତ୍ୟପଦ୍ୟତ ॥
ସ ଏବ ଜାତୋ ବୈଦର୍ଭ୍ୟାଂ କୃଷ୍ଣବୀର୍ଯ୍ୟସମୁଦ୍ଭବଃ ।
ପ୍ରଦ୍ୟୁମ୍ନ ଇତି ବିଖ୍ୟାତଃ ସର୍ବତୋଽନବମଃ ପିତୁଃ ।

( ଶ୍ରୀ ଭା: ୧୦ମ ସ୍କନ୍ଧ ୫୫ ଅ ୧-୨ ଶ୍ଳୋକ )

## ଛପ୍ପୟ

ସୁଖୀ ଭୟେ ସବ ସ୍ୱଜନ ନିରଖି ଅତି ଅନୁପମ ଜୋରୀ ।
ମାତୁ ମନାବେଂ ଦୋହିଁ କୃଷ୍ଣ ଜେଂ ସ୍ୟାମ ଗୋରୀ ॥
‘ଜନେ ପୁତ୍ର’ ନିତ ବିପ୍ର କହେଂ ସୁନି ସକୁଚେ ବାଲା ।
ଦୂଜା କନ୍ଦର୍ପ କାନ୍ତି ଜନେୟା ବୈଦର୍ଭୀ ଲାଲା ॥
କାମଦେବ ଜୋ ପ୍ରଥମ ହ୍ୱୀ, ଶମ୍ଭୁ କୋପ ତେଂ ଜରି ଗୟେ ।
ସୋଇ ବନି ପ୍ରଦ୍ୟୁମ୍ନ ପୁନି ପ୍ରଥମ ପୁତ୍ର ହରିକୋ ଭୟେ ॥

---

୧ ରୁକ୍ମିଣୀ ଘେନ ଭଗବାନ । ରଙ୍ଗେ ରମିଲେ କେତେଦିନ ॥
ଏମନ୍ତେ ବିଧାତାର ବଶେ । କନ୍ଦର୍ପ ନାରାୟଣ ଅଂଶେ ॥
ଜାତ ହୋଇଲା ଦେହ ବହି । ଶୁଣ ରାଜନ ମନ ଦେଇ ॥
ପୂର୍ବେ ଦେବଙ୍କ କାର୍ଯ୍ୟେ ଗଲା । ଈଶ୍ୱର ତପ ଭଗ୍ନ କଲା ॥
ଘୋର ସମାଧି ଭଗ୍ନ କାଳେ । କଠୋର-ନୟନ-ଅନଳେ ॥
ଶଙ୍କର କଲା ଭସ୍ମଯୋଗ । ତେଣୁ ସେ ବୋଲାଇ ଅନଙ୍ଗ ॥
କୃଷ୍ଣର ବୀର୍ଯ୍ୟେ ଜାତ ହେଲା । ପ୍ରଦ୍ୟୁମ୍ନ ନାମକୁ ପାଇଲା ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦ମ : ୫୯ଅ)

ବିଦ୍ୟାର ଫଳ ଯେପରି ବିନୟ, ଯଜ୍ଞର ଫଳ ଯେପରି ସ୍ୱର୍ଗ, ପାପର ଫଳ ଦୁଃଖ ଓ ବୃକ୍ଷର ଫଳ ଫଳ, ସେହିପରି ବିବାହର ଫଳ ପୁତ୍ର ଅଟେ । ବିବାହ କରି ଯେ ପୁତ୍ରର ପବିତ୍ର ମୁଖ ଦେଖେ ନାହିଁ, ତାହାର ବିବାହ କରିବା ବୃଥା । ପୁତ୍ରୋତ୍ପନ୍ନ କରିବା ଅତି ପୁଣ୍ୟ କାର୍ଯ୍ୟ । ପିତା, ପିତାମହଙ୍କ ଦ୍ୱାରା ଯେଉଁ ଶରୀର ନ୍ୟାସ ରୂପରେ ପ୍ରାପ୍ତ ହୁଏ, ପୁତ୍ରୋତ୍ପନ୍ନ କରି ତାଙ୍କ ଋଣ ମୁକ୍ତ ନ ହେଲେ ଋଣୀ ହେବାକୁ ପଡ଼େ । ଯେଉଁ ବ୍ୟକ୍ତି ପୁତ୍ରୋତ୍ପନ୍ନ ନ କରି ମୃତ୍ୟୁବରଣ କରେ, ସେ ପିତୃଲୋକଙ୍କ ପାଖରେ ଋଣୀ ହୋଇ ରହିଯାଏ । ଅପୁତ୍ରିକର ଗତିମୁକ୍ତି ନାହିଁ । ସେ ସ୍ୱର୍ଗଲାଭ କରି ପାରେ ନାହିଁ । ପୁତ୍ର ନାମରେ ଏକ ନରକ ଅଛି, ସେଥିରୁ ପିତୃ ଲୋକଙ୍କୁ ପୁତ୍ର ହିଁ ଉଦ୍ଧାର କରିପାରେ । ପୁତ୍ର ନିଜର ଆତ୍ମା ଅଟେ । ସେ ନିଜର ଏକ ଅଂଶ ସ୍ୱରୂପ । ସ୍ୱୟଂ ପତି ହିଁ ପତ୍ନୀଙ୍କ ଉଦରରେ ପ୍ରବେଶ କରି ଶିଶୁ ରୂପେ ଉତ୍ପନ୍ନ ହୁଅନ୍ତି । ଏଥିପାଇଁ ପୁତ୍ରବତୀ ପତ୍ନୀର 'ଜାୟା' ସଂଜ୍ଞା । ପୁତ୍ର ଜନ୍ମ ହେଲେ ସେ ଆଉ ନବବଧୂ ହୋଇ ରହେ ନାହିଁ, 'ମାତା' ହୋଇ ଯାଏ । କୌଣସି ମାତୃ ପିତୃ ଦୋଷ ନ ଥିଲେ ପୁତ୍ର ଠିକ୍ ପିତା ଅନୁରୂପ ହୋଇଥାଏ । ପୁତ୍ର ଲାଭକରିବା ବିବାହର ପରମ ସୁଖ । ପୁତ୍ରୋତ୍ପନ୍ନ ହେଲା ବିବାହ ଠାରୁ ଘରେ ଅଧିକ ଆନନ୍ଦ ମିଳେ । ପୁତ୍ର ଜନ୍ମହେଲେ କେବଳ ପୃଥିବୀସ୍ଥିତ ଆତ୍ମୀୟ ଲୋକ ପ୍ରସନ୍ନ ହୁଅନ୍ତି ନାହିଁ, ପିତୃଲୋକରେ ଥିବା ପିତୃଗଣ ମଧ୍ୟ ଆନନ୍ଦରେ ବିଭୋର ହୋଇ ନାଚନ୍ତି । ସେମାନେ ଚିନ୍ତା କରନ୍ତି ଯେ, ଆମର ଶ୍ରାଦ୍ଧ ତର୍ପଣ କରିବା ପାଇଁ ଏକ ଅଧିକାରୀ ଆସିଗଲା ।

ସୂତ କହିଲେ—''ମୁନିଗଣ ! ଭଗବାନ୍ ତ ସ୍ୱୟଂ ଆପ୍ତକାମ ଓ ସତ୍ୟସଙ୍କଳ୍ପ । ସେ ସମଗ୍ର ଚରାଚର ଜଗତର ପିତା । ତାଙ୍କର ତ କୌଣସି ଇଚ୍ଛା ବା କାମନା ନ ଥାଏ । ତଥାପି ସେ ଯେତେବେଳେ ଲୋକ ସଂଗ୍ରହ ନିମିତ୍ତ କ୍ରୀଡ଼ା କରିବା ପାଇଁ ମନୁଷ୍ୟ ଶରୀର ଧାରଣ କରନ୍ତି, ସେତେବେଳେ ସମସ୍ତ ମାନବୀୟ ଲୀଳା ପ୍ରଦର୍ଶନ କରନ୍ତି । ମନୁଷ୍ୟଙ୍କ ପରି ବ୍ୟବହାର କରନ୍ତି । ଯେତେବେଳେ ସେ ମଥୁରାରେ ଯଦୁବଂଶରେ ଅବତୀର୍ଣ୍ଣ ହେଲେ, ସେତେବେଳେ ତାଙ୍କ ଶକ୍ତି ଲକ୍ଷ୍ମୀଦେବୀ କିପରି ଅବା ରହି ପାରନ୍ତେ ? ସେ ମଧ୍ୟ ବିଦର୍ଭାଧିପ ମହାରାଜ ଭୀଷ୍ମକଙ୍କ ଘରେ ଅବତୀର୍ଣ୍ଣ ହୋଇଥିଲେ । ନିଜର ବସ୍ତୁ ଯେ କୌଣସି ସ୍ଥାନରେ ରହୁ ନା କାହିଁକି, ସେ ନିଜକୁ ଦିନେ ନା ଦିନେ ମିଳିଯାଏ । ଯାହା ଆମ ଭାଗ୍ୟର ବସ୍ତୁ, ତାହା ଅନ୍ୟକୁ ମିଳିପାରେ ନାହିଁ ଓ ଯାହା ଆମର ଭାଗ୍ୟର ବସ୍ତୁ ନୁହେଁ, ଲକ୍ଷେ ପ୍ରଯତ୍ନ କଲେ ମଧ୍ୟ ତାହା ଆମକୁ ମିଳିପାରେ ନାହିଁ ।

ଯେଉଁ କାମଦେବ ସାରା ସଂସାରକୁ ନିଜବଶରେ ରଖିଛନ୍ତି, ସେ ଭଗବାନ୍ ବାସୁଦେବଙ୍କର ଅଂଶ । ଧର୍ମ ସହିତ ଅବିରୁଦ୍ଧ କାମ ହେଉଛି ଭଗବାନଙ୍କର ଏକ ଅତି ଉତ୍ତମ ବିଭୂତି । ସେହି ବିଭୂତି ମାହାତ୍ମ୍ୟରେ ଏହି ସଂହାରଚକ୍ର ଚାଲିଛି ।

ଅମେମାନଙ୍କୁ ଯେପରି ଦେବତାଙ୍କ ସ୍ୱରୂପ, କାମଦେବ ସେହିପରି ଏକ ଅତି ମନୋହର ରୂପ ତାଙ୍କର ଧନୁ ଅତି ମଧୁର ଇକ୍ଷୁଦଣ୍ଡ ନିର୍ମିତ, ତାଙ୍କର ଅତି ସୁଗନ୍ଧିତ ପାଞ୍ଚଟି ପୁଷ୍ପବାଣ ଅଛି । ସେ ଅତ୍ୟନ୍ତ ଅଭିମାନୀ । ତାଙ୍କର ଏକ ପୁତ୍ର କ୍ରୋଧ । ସମ୍ମୁଖରେ ସେ ସାମାନ୍ୟ କମ୍ପିତ ହୁଅନ୍ତି । ବଡ଼ ପୁଅ ସମ୍ମୁଖରେ ପିତା ସରଳ ହେବା ଉଚିତ୍ । ଏହା ହୋଇ-ଥିବାରୁ କାମଦେବ ଅଧିକ ଅଭିମାନୀ ଅଟନ୍ତି । ତାଙ୍କର ବଡ଼ପୁଅ ଜନ୍ମହେବା ମାତ୍ରେ, ଅର୍ଥାତ୍ କ୍ରୋଧ ଉଦୟ ହେବାମାତ୍ରେ ହିଁ ସେ ନିଜର ଜନକ ବ୍ରହ୍ମାଙ୍କୁ ଆହତ କରିବାକୁ ପଛାଇ ନଥିଲେ । ଯେଉଁଠାରୁ ଅଭିମାନ ବୃଦ୍ଧି ପାଏ, ସେହିଠାରୁ ପତନ ଆରମ୍ଭ ହୁଏ । ଯେ ପର୍ଯ୍ୟନ୍ତ ନମ୍ରତା ଥାଏ, ସେ ପର୍ଯ୍ୟନ୍ତ ପ୍ରାଣୀ ନିଜ ସ୍ୱରୂପରେ ଅବସ୍ଥାନ କରେ । କାମଦେବ ଚିନ୍ତାକଲେ—"ମୁଁ ଯେତେବେଳେ ସମସ୍ତ ଦେବତାଙ୍କୁ ବଶ କରିପାରିଛି, ସେତେବେଳେ ମହାଦେବଙ୍କୁ ମଧ୍ୟ ବଶ କରି ନେବି । ତେଣୁ ସେ ତାଙ୍କ ଉପରେ ଆକ୍ରମଣ କଲେ । ମହାଦେବଙ୍କ ପଛେ କାମର ପୁତ୍ର କ୍ରୋଧ ଯାଇ ମିଶିଗଲା । ଏଥିପାଇଁ ମହାଦେବ କ୍ରୋଧର ସହାୟତାରେ କାମକୁ ବିନାଶ କଲେ । କାମର ପତ୍ନୀ ରତି କାନ୍ଦି କାନ୍ଦି ଆସି ସେଠାରେ ପହଞ୍ଚିଲେ । ତାଙ୍କୁ କାନ୍ଦୁଥିବାର ଦେଖି ତାଙ୍କର ପୁତ୍ର କ୍ରୋଧ ଶାନ୍ତ ହୋଇଗଲା ଓ ଦକ୍ଷଙ୍କ କନ୍ୟା ଦୟା କରି ଶିବଙ୍କର ହୃଦୟ ତରଳାଇ ଦେଲେ । ଦୟାର ବଶୀଭୂତ ହୋଇ ଶିବ କହିଲେ—"ଅଚ୍ଛା, ଠିକ୍ ଅଛି, ତୁ କୌଣସି ସ୍ଥାନରେ ଲୁଚି ଯା, ତୋର ସ୍ୱାମୀ ପୁନଶ୍ଚ ଶରୀରଧାରୀ ହେବ ।"

ଦେବତାମାନେ ରତିଙ୍କ ପକ୍ଷ ନେଇ କହିଲେ—"ମହାରାଜ ! ଏହାର ପତି ଯେତେଦିନ ପର୍ଯ୍ୟନ୍ତ ଜୀବନ ନ ପାଇଛି, ସେତେଦିନ ପର୍ଯ୍ୟନ୍ତ ସଂସାର ଚଳିବ କିପରି ? କାମନା ବିନା ତ କର୍ମରେ ପ୍ରବୃତ୍ତି ହୁଏ ନାହିଁ ଏବଂ କର୍ମ ହିଁ ତ ସଂସାର ଚକ୍ର ଚଳାଉଛି ।"

ଶିବ କହିଲେ—"ଦେଖ, ଭାଇ ! ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ସମସ୍ତ ନ ହେଲେ ମୁଁ କଦାପି ସୃଷ୍ଟି ସଂହାର କରି ପାରେ ନାହିଁ । କାମ ତ ଭଗବାନ ବାସୁଦେବଙ୍କର ଅଂଶ, ଅଂଶୀ ଓ ଅଂଶ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ବାସୁଦେବ ଯେପରି ନିତ୍ୟ, ତାଙ୍କର ଅଂଶଭୂତ କାମ ସେହିପରି ନିତ୍ୟ । ମୁଁ ତାହାର ଅଙ୍ଗକୁ ନଷ୍ଟକରି ଦେଇଛି ସତ; କିନ୍ତୁ ତାହାର ଆତ୍ମାତ ବିଦ୍ୟମାନ ଅଛି । ଆଜିଠାରୁ ମୋ ଆଶୀର୍ବାଦରେ ବିନା ଅଙ୍ଗରେ ହିଁ ଏହି କାମଦେବ ସମସ୍ତ ପ୍ରାଣୀଙ୍କ ହୃଦୟରେ ରହି ସେମାନଙ୍କ ମନକୁ ମନ୍ଥନ କରିବ । କୌଣସି ପ୍ରାଣୀ ଏହାଠାରୁ ରକ୍ଷା ପାଇ ପାରିବେ ନାହିଁ । ସେହିଦିନ ଠାରୁ କାମର 'ଅନଙ୍ଗ ଓ ମନ୍ମଥ' ଏହି ଦୁଇ ନାମ ହୋଇ ପ୍ରସିଦ୍ଧି ଲାଭ କରିଛି । ଏପରି ଭାବରେ ସେ ପ୍ରାଣୀମାନଙ୍କ ହୃଦୟରେ ରହିଲେ ସ୍ତ୍ରୀ ପୁରୁଷଙ୍କ ଦେଖା ଦେଖି ହେବା ମାତ୍ରେ ସେ ଉଭୟଙ୍କ ମନକୁ ମନ୍ଥନ କରୁଥିବ । ଯେତେବେଳେ ତାହାର ଶରୀର ଥିଲା, ସେତେବେଳେ ତା'ର ଏତେ ପ୍ରଭାବ ନଥିଲା । ଅନଙ୍ଗ ହେବାରୁ ତାହାର ପ୍ରଭାବ

ଅତମାଣାରେ ଚଢ଼ିଗଲା । ସେ ହୃଦୟ ମଧ୍ୟରେ ପ୍ରବେଶକରି ମନକୁ କେତେବେଳେ ଯେ ଚଞ୍ଚଳ କରିବ ତାହା କେହି କେହି ପାରିବେ ନାହିଁ । ଅନଙ୍ଗ ହେବାରୁ ତାହାର ଗର୍ବ ଆହୁରି ବଢ଼ିଗଲା ।

ଏହି କୃଷ୍ଣାବତାର ଏପରି ଗୂଢ଼ ରୂପରେ ହେଲା ଯେ, ତାହା ଅତି ଅଲୌକିକ । ବ୍ରହ୍ମାଙ୍କର ମଧ୍ୟ ମତିଭ୍ରମ ହୋଇଗଲା । ଯେତେବେଳେ ଶ୍ରୀକୃଷ୍ଣ ଗୋପାଳ ବାଳକ ମାନଙ୍କ ସହିତ ମିଳି ଗୋଚାରଣ କରୁଥିବାର ସେ ଦେଖିଲେ ସେତେବେଳେ ତାଙ୍କ ମନରେ ସନ୍ଦେହ ଜାତହେଲା, ଯେ ଏ କି ପ୍ରକାର ଅବତାର ? ତାଙ୍କୁ ପରୀକ୍ଷା କରିବା ପାଇଁ ବ୍ରହ୍ମା ଗୋ-ବତ୍ସ ଓ ଗୋପାଳ ବାଳକ ମାନଙ୍କୁ ଚୋରାଇ ନେଇ ଲୁଚାଇ ରଖିଥିଲେ । ତାହା ପରେ ଯାହା ଯାହା ଘଟିଥିଲା, ସେ ସବୁ ପ୍ରସଙ୍ଗ ପୂର୍ବରୁ କୁହା ଯାଇଛି । ଇନ୍ଦ୍ରଙ୍କୁ ମଧ୍ୟ ସନ୍ଦେହ ହୋଇଥିଲା, ଯମ, ବରୁଣ, କୁବେର ପ୍ରତ୍ୟେକଙ୍କୁ ଭଗବାନଙ୍କର ମହତ୍ତ୍ୱ ଉପରେ ସନ୍ଦେହ ହୋଇଥିଲା ଓ ଭଗବାନ ସମସ୍ତଙ୍କ ସନ୍ଦେହ ଦୂର କରିଥିଲେ । ଅନଙ୍ଗ ଯେତେବେଳେ ଦେଖିଲେ ଯେ, ଶ୍ରୀକୃଷ୍ଣ ଅତ୍ୟନ୍ତ ସୁନ୍ଦର ହୋଇ ଏକାନ୍ତରେ ଗୋପୀଗଣଙ୍କ ସହିତ ହସ ଖୁସିରେ ସରସ ଖେଳା ଲୀଳା କରୁଛନ୍ତି ଓ କାହାରି ମନରେ ବିକାର ଭାବ ନାହିଁ, ତେଣୁ ସେ ଭାବିଲେ ଯେ ଏ ଏକ ବିଚିତ୍ର ପୁରୁଷ, ମୁଁ ତାଙ୍କ ସହିତ ଥରେ ଯୁଦ୍ଧ କରିବି । ଯୁଦ୍ଧ ହେଲା, ଭଗବାନ୍ ରାସଲୀଳାରେ ତାଙ୍କୁ ପରାସ୍ତ କଲେ । ସେ ଭଗବାନଙ୍କ ଶରଣ ପଶିବାରୁ ଭଗବାନ୍ କହିଲେ—"ଆରେ ଭାଇ ! ତୁ ତ ମୋ ଅଂଶ, ମୁଁ ଯେତେବେଳେ ଅବତାର ହୋଇଛି, ତୁ ଏବେ ମୋର ପୁତ୍ର ହୋଇ ଜନ୍ମଲାଭ କର ।"

କାମଦେବ ସେତେବେଳେ ପଚାରିଥିଲେ—"ହେ ପ୍ରଭୁ ! ଆପଣଙ୍କର ତ ଏ ଅସଂଖ୍ୟ ଗୋପୀ ପ୍ରିୟା ଅଛନ୍ତି, ମୁଁ କାହାଠାରୁ ଉତ୍ପନ୍ନ ହେବି ?"

ଭଗବାନ ହସି ହସି କହିଥିଲେ—"ଆରେ ! ତୁ ବଡ଼ ପାଗଳ, ଯାହା ସହିତ ଯଜ୍ଞ କର୍ମ କରାଯାଏ, ତାକୁ ହିଁ ପତ୍ନୀ ବୋଲି କୁହାଯାଏ । ଏ ଗୋପୀକାଗଣ ତ ମୋର ପତ୍ନୀ ନୁହନ୍ତି, ଏମାନେ ହେଉଛନ୍ତି ମୋର ପ୍ରାଣପ୍ରିୟା, ମୋର ଆତ୍ମା । ଏମାନେ ତ କୁମାରୀ, ଏମାନଙ୍କର ପୁତ୍ର ହେବ ବା କିପରି ? ଦ୍ୱାରକାରେ ବିଦର୍ଭାଧିପ ମହାରାଜ ଭୀଷ୍ମକଙ୍କର କନ୍ୟା ରୁକ୍ମିଣୀଙ୍କୁ ମୁଁ ସର୍ବପ୍ରଥମେ ବିବାହ କରିବି । ତାଙ୍କ ଗର୍ଭରୁ ତୁ ଉତ୍ପନ୍ନ ହେବୁ । ତେଣୁ ତୁ ହେବୁ ମୋର ଜ୍ୟେଷ୍ଠ ପୁତ୍ର ।"

ଭଗବାନଙ୍କ କଥା ଶୁଣି କାମଦେବ ଚାଲିଗଲେ । ଯେତେବେଳେ ଭଗବାନ୍ ମଥୁରାରୁ ଦ୍ୱାରକା ଆସିଲେ ଓ ରୁକ୍ମିଣୀଙ୍କ ସହିତ ବିଧିବିଧାନରେ ତାଙ୍କର ବିବାହ ହେଲା, ସେତେବେଳେ କାମଦେବ ତୁରନ୍ତ ଭଗବାନଙ୍କ ମନରେ ଅବସ୍ଥାନ କଲେ । ଏହା ଦ୍ୱାରା ସେ ରୁକ୍ମିଣୀଙ୍କ ଗର୍ଭରେ ସ୍ଥାନ ପାଇଲେ ଓ ଯଥା ସମୟରେ ତାଙ୍କର

ପୁତ୍ର ରୂପେ ଜନ୍ମଗ୍ରହଣ କଲେ । ପୁତ୍ରୋତ୍ପତ୍ତି ହୋଇଥିବା ଖବର ଶୁଣିବାମାତ୍ରେ ଦ୍ୱାରକାପୁର ଆନନ୍ଦରେ ଭରିଗଲା । ସର୍ବତ୍ର ପ୍ରସନ୍ନତା ସାଗରସମ ଉଚ୍ଛୁଳି ଉଠିଲା । ସର୍ବତ୍ର ଶୁଭ ବାଦ୍ୟମାନ ବାଜି ଉଠିଲା । ବ୍ରାହ୍ମଣ ଗଣ ବେଦ ପାଠ କଲେ । ଜାତକର୍ମାଦି ସଂସ୍କାର କରାଗଲା । ଏହି ପୁତ୍ର ପ୍ରଦ୍ୟୁମ୍ନ ହିଁ କାମଦେବଙ୍କର ଅବତାର ।

କାମଦେବଙ୍କର ପତ୍ନୀ ରତି ମଧ୍ୟ ନିଜ ପତିଙ୍କ ଜନ୍ମକୁ ପ୍ରତୀକ୍ଷା କରି ନିଜର ବେଶ ବଦଳାଇ ଇତସ୍ତତଃ ଦିନ କଟାଉଥିଲେ । ସେତେବେଳେ ସେ ସମ୍ବରାସୁର ପୁରରେ ରହି ଯାଇଥିଲେ । ସମ୍ବରାସୁର ସେ ସମୟରେ ସମୁଦ୍ର ପ୍ରାନ୍ତରେ ନିଜ ରାଜ୍ୟ ସ୍ଥାପନ କରି ଶାସନ କରୁଥିଲା । ସେ ଅତ୍ୟନ୍ତ ବଳଶାଳୀ ଥିଲା । କଂସ, ଜରାସନ୍ଧ ଓ ଶିଶୁପାଳ ପକ୍ଷରେ ସେ ରହିଆସିଥିଲା । ସେ ଥିଲା ଏକ ମାୟାବୀ ଅସୁର । ସେ ଯେତେ-ବେଳେ ଯେପରି ଇଚ୍ଛୁଥିଲା, ସେତେବେଳେ ସେହିପରି ରୂପ ଧାରଣ କରୁଥିଲା । ଦିନେ ନାରଦ ହଠାତ୍ ତା ସଭା ମଧ୍ୟରେ ଆସି ଉପସ୍ଥିତ ହେଲେ । ସେ ନାରଦଙ୍କୁ ପଚାରିଲା—"ଭଗବାନ୍ ! ମୋର ମୃତ୍ୟୁ କାହାଦ୍ୱାରା ହେବ ?"

ନାରଦ କହିଲେ—"ରାଜନ୍ ! ଶ୍ରୀକୃଷ୍ଣଙ୍କ ଔରସରୁ ରୁକ୍ମିଣୀଙ୍କ ଗର୍ଭରୁ ଏକ ପୁତ୍ର ଜାତ ହେବ, ସେ ତୁମର ଶତ୍ରୁ ହୋଇ ତୁମକୁ ସଂହାର କରିବ । ତୁମେ ଯଦି କୌଣସି ଉପାୟରେ ତା ଠାରୁ ବଞ୍ଚିଯାଇ ପାର ତୁମକୁ ଆଉ କେହି ହେଲେ ମାରି ପାରିବେ ନାହିଁ ।"

ଏହା ଶୁଣି ସେ ବଡ଼ ଚମକିତ ହେଲା ଓ ସନ୍ଧାନ ନେବାକୁ ଲାଗିଲା । ସେ ତ ସହଜେ ବହୁରୂପୀ ଥିଲା, ସେତେବେଳେ ସେ ଶୁଣିଲା ଯେ ରୁକ୍ମିଣୀଙ୍କର ପୁତ୍ର ଉତ୍ପନ୍ନ ହୋଇଛି, ସେତେବେଳେ ସେ ଅତି ସୁନ୍ଦରୀ ଧାଈ ବେଶରେ ଅନ୍ତଃପୁରରେ ପ୍ରବେଶ କରି ପ୍ରସୂତି ଭବନରେ ପଶିଲା । ଯେଉଁଦିନ ଷଷ୍ଠ ଦିବସ (ଷଠୀ ଘର), ସେଦିନ ରାତିରେ ସେ ସେଠାକୁ ଚୁପ୍ ହୋଇ ଯାଇ ମା କୋଳରୁ ଶିଶୁକୁ ଉଠାଇ ନେଇ ଆସିଲା । ସ୍ତ୍ରୀ ବେଶ ହୋଇଥିବାରୁ କେହି ସନ୍ଦେହ କଲେ ନାହିଁ । ତେଣୁ ସେ ନିର୍ଭୟରେ ଅନ୍ତଃପୁର ବାହାରକୁ ଚାଲି ଆସିଲା ।

ସେ ଦେଖିଲା, ଶିଶୁଟି ଅତ୍ୟନ୍ତ ସୁନ୍ଦର । ଯେ ତାକୁ ଦେଖିବ ତାହାର ବଜ୍ରପରି କଠିନ ହୃଦୟ ହୋଇଥିଲେ ମଧ୍ୟ ତରଳି ଯିବ । କ୍ରୋଧ କର୍ପୂର ଭଳି ଉଡ଼ିଯିବ । ସମ୍ବରାସୁର ତାକୁ ଦେଖିବାମାତ୍ରେ ତାହାର ହୃଦୟ ମଧ୍ୟ ତରଳି ଗଲା । ସେ ଭାବିଲା, ଏଡ଼େ ସୁନ୍ଦର ଶିଶୁକୁ ମୁଁ ମାରିଦେବି ? ଏପରି କୁକର୍ମ କାରି ହେବ ? ମୋତେ ଶତଧିକ୍କାର । କିନ୍ତୁ ସେତେବେଳେ ନାରଦଙ୍କ କଥା ତା'ର ସ୍ମରଣ ହେଲା, ସେତେବେଳେ ତା' ହୃଦୟରୁ ଦୟା ଅନ୍ତର୍ହିତ ହୋଇଗଲା । ମୃତ୍ୟୁ ମୁଖରୁ ନିଜକୁ ବଞ୍ଚାଇବା ପାଇଁ ମନୁଷ୍ୟ

ସବୁ କିଛି କରିପାରେ । ସେ ଚିନ୍ତା କଲା, ଯାହା ହେବାର ହେବ, ଏ ଶିଶୁକୁ ମୁଁ ନିଶ୍ଚୟ ମାରିବି ।

ଏହା ଚିନ୍ତାକରି ସେ ଶିଶୁର ଗଳା ଚିପିବାକୁ ଉଦ୍ୟତ ହୁଅନ୍ତେ ତାହାର ବଡ଼ ବଡ଼ ଆଖିକୁ ଦେଖି ଓ ତାହାର ହସ ହସ ମୁଖକୁ ଦେଖି ତାକୁ ମାରିବାକୁ ତାହାର ସାହସ ହେଲାନାହିଁ । ତାହା ମନ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ହେବାକୁ ଲାଗିଲା । ଶେଷରେ ସେ ଚିନ୍ତାକଲା, ତାକୁ ନିଜ ହାତରେ ନ ମାରି ସମୁଦ୍ରରେ ଫିଙ୍ଗି ଦେବି ଓ ସେଠାରେ ସେ ନିଶ୍ଚୟ ବୁଡ଼ି ମରିଯିବ । ଏହା ଚିନ୍ତା କରି ସେ ଶିଶୁକୁ ସମୁଦ୍ର ମଝିକୁ ଫିଙ୍ଗି ଦେଇ ନିଜ ଘରକୁ ଚାଲିଗଲା ।

ଏଣେ ଯେତେବେଳେ ରୁକ୍ମିଣୀଙ୍କର ଆଖି ଖୋଲିଲା, ସେ ଦେଖିଲେ ଯେ, ତାଙ୍କ ପାଖରେ ଶିଶୁ ନାହିଁ । ସେ ସଙ୍ଗେ ସଙ୍ଗେ ଦାସୀମାନଙ୍କୁ ଉଠାଇଲେ । ଘରିଆଡ଼େ ଶିଶୁକୁ ଖୋଜାଗଲା । ଅନ୍ତଃପୁରରେ କାନ୍ଦବୋବାଳି ପଡ଼ିଗଲା । ରୁକ୍ମିଣୀ କୁରରୀ ପକ୍ଷୀ ପରି ବିଳାପ କରିବାକୁ ଲାଗିଲେ । ଛଅଦିନ ହେବ ଯେଉଁ ଧୁମ୍‌ଧାମରେ ଆନନ୍ଦ ଉତ୍ସବ ହେଉଥିଲା, ତାହା ଶୋକରେ ପରିଣତ ହେଲା । ସର୍ବତ୍ର ହାହାକାର ପଡ଼ିଗଲା । ଭଗବାନ ଏକଥା ଶୁଣି ସେଠାରେ ଆସି ପହଞ୍ଚିଲେ । ସେ ତ ସର୍ବଜ୍ଞ; କିନ୍ତୁ ଲୋକ ଦେଖାଣିଆ ହୋଇ ସେ ମଧ୍ୟ କ୍ରନ୍ଦନ କରିବାକୁ ଲାଗିଲେ । ସମସ୍ତେ ଆଶ୍ଚର୍ଯ୍ୟ ହେଉଥାଆନ୍ତି, ଅନ୍ତଃପୁରରୁ ଶିଶୁ ଗଲା କୁଆଡ଼େ ? କିନ୍ତୁ କେହି ତାହାର ସନ୍ଧାନ ପାଇ ପାରୁ ନ ଥାନ୍ତି । ଶେଷକୁ ସମସ୍ତେ ନିରାଶ ହୋଇ ପଡ଼ିଲେ ।

ପ୍ରଦ୍ୟୁମ୍ନ ତ ଚତୁର୍ବ୍ୟୂହ ମଧ୍ୟରୁ ଏକ ବ୍ୟୂହ । ଚତୁର୍ବ୍ୟୂହ ହେଉଛନ୍ତି, ବାସୁଦେବ ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ । ଏମାନଙ୍କ ମଧ୍ୟରେ ଚିନ୍ତାଧିଷ୍ଠାତୃ ଦେବ ହେଉଛନ୍ତି ପ୍ରଦ୍ୟୁମ୍ନ । ତାଙ୍କୁ ଅଗ୍ନି, ଜଳ, କାଳ, କେହି ହେଲେ ନାଶ କରିପାରିବେ ନାହିଁ । ପୁନଶ୍ଚ ଯାହାର ମୃତ୍ୟୁକାଳ ନ ହୋଇଥାଏ, ତାକୁ କାଳମୁଖରେ ପକାଇ ଦେଲେ ମଧ୍ୟ ସେ ବଞ୍ଚି ଆସେ । ଯାହାର ମୃତ୍ୟୁକାଳ ଉପସ୍ଥିତ ହୋଇଥାଏ, ତାକୁ ଯେତେ ଯତ୍ନରେ ରକ୍ଷା କରିବାକୁ ଚେଷ୍ଟା କଲେ ମଧ୍ୟ ସେ ମୃତ୍ୟୁବରଣ କରେ । ପ୍ରଦ୍ୟୁମ୍ନଙ୍କର ମୃତ୍ୟୁଯୋଗ ନ ଥିଲା । ତେଣୁ ସମୁଦ୍ରରେ ସେ ପଡ଼ିବାମାତ୍ରେ ଏକ ବଡ଼ ମାଛ ତାଙ୍କୁ ଉଦରସ୍ଥ କରିନେଲା । ସେତେବେଳେ ଅନେକ କେଉଟ ସମୁଦ୍ରରୁ ମାଛ ଧରୁଥିଲେ । ଜାଲରେ ଅନ୍ୟ ମାଛ ସହିତ ସେହି ମାଛଟି ମଧ୍ୟ ଧରାପଡ଼ିଲା । ଏତେବଡ଼ ମାଛକୁ ଜାଲରେ ପଡ଼ିବାର ଦେଖି କେଉଟମାନେ ଆନନ୍ଦରେ ବିଭୋର ହୋଇ ଭାବିଲେ, ଆମେ ଏ ମାଛକୁ ନେଇ ବଜାରରେ ବିକଲେ ଆମକୁ ମାତ୍ର ଅଳ୍ପ ଅର୍ଥ ମିଳିବ; କିନ୍ତୁ ଆମେ ଯଦି ତାହା ଆମ ରାଜା ସମ୍ବରାସୁରଙ୍କୁ ବିକିଦେଉ, ତେବେ ସେ ଆମକୁ ବହୁ ପାରିତୋଷିକ ଦେବେ । ସେ ମାଛ, ମାଂସ ଖାଇବାକୁ ଭାରି ଭଲପାଆନ୍ତି । ଏହା ଭାବି

ସେମାନେ ସେହି ମାଛଟିକୁ ନେଇ ସମ୍ବରାସୁର ସମ୍ମୁଖରେ ପହଞ୍ଚିଲେ ଓ ତାକୁ ଉପହାର ସ୍ୱରୂପ ଦେଲେ । ସମ୍ବରାସୁର ମଧ୍ୟ କେଉଟମାନଙ୍କୁ ବହୁତ ଧନ ଦେଇ ବିଦାକଲା ।

ଏହାପରେ ମାଛଟିକୁ ରୋଷେଇ ଘରକୁ ପଠାଗଲା । ରୋଷେଇଆ ତୀକ୍ଷ୍ଣ ଛୁରୀରେ ମାଛର ପେଟ ଚିରଲେ । ଚିରୁ ଚିରୁ ତା' ପେଟ ମଧ୍ୟରୁ ଏକ ସୁନ୍ଦର ବାଳକ ବାହାରି ପଡ଼ିଲା । ସମ୍ବରାସୁରର ଅନ୍ତଃପୁରରେ ଯେଉଁ ରତିଦେବୀ ମାୟାବତୀ ନାମରେ ରହିଥିଲେ, ତାକୁ ନେଇ ରୋଷେଇଆ ମାୟାବତୀଙ୍କୁ ଦେଇଦେଲେ । ମାଛପେଟରୁ ଏଡ଼େ ସୁନ୍ଦର ଶିଶୁ ବାହାରିଥିବାର ଦେଖି ମାୟାବତୀ ଶଙ୍କାରେ ପଡ଼ିଗଲେ । ତାଙ୍କୁ ବାରମ୍ବାର ଏହି ସନ୍ଦେହ ହେଲା ଯେ, ଏହି ହିଁ ମୋର ପତି । ସେ ଏହିପରି ଚିନ୍ତା କରୁଥିବା ସମୟରେ ନାରଦ ବୀଣା ବଜାଇ ବଜାଇ ସେଠାରେ ଆସି ଉପସ୍ଥିତ ହେଲେ । ନାରଦଙ୍କୁ ଦେଖି ମାୟାବତୀ ଉଠିପଡ଼ିଲେ ଓ ତାଙ୍କର ସ୍ୱାଗତ ସମ୍ବର୍ଦ୍ଧନା କଲେ । କୁଶଳ ପ୍ରଶ୍ନ ପଚାରି ସାରି ନାରଦ ତାଙ୍କୁ ପଚାରିଲେ—"ରାଣି ! ଆପଣ ଆଜି ଏତେ ଚିନ୍ତିତ କାହିଁକି ? ଚିନ୍ତା କରିବାର କାରଣ କ'ଣ ?"

ମାୟାବତୀ କହିଲେ—"ବ୍ରହ୍ମନ୍ ! ଆପଣ ତ ସର୍ବଜ୍ଞ । ମୁଁ ଆପଣଙ୍କ ଆଗରେ ଲୁଚାଇବି କ'ଣ ? ଆଜି ରୋଷେଇ ଘରକୁ ଗୋଟିଏ ବଡ଼ ମାଛ ଅଣାଯାଇ ଚିରା ଯାଉଥିବାବେଳେ ତାହାର ଉଦରରୁ ଏକ ସୁନ୍ଦର ଶିଶୁ ବାହାରିଲା । ମୁଁ ତାହାରି କଥା ହିଁ ଚିନ୍ତା କରୁଛି ଯେ, ସେ କିଏ ?"

ନାରଦ କହିଲେ—"ରାଣି ! ଏଥିରେ ଚିନ୍ତା କରିବାର କିଛି ନାହିଁ । ଆପଣ ଏଥିରେ ଅତି ଆନନ୍ଦ ପ୍ରକାଶ କରିବାର କଥା । ଆପଣ ତ ସ୍ୱୟଂ ରତି ଓ ଶିଶୁଟି ଆପଣଙ୍କର ପୂର୍ବଜନ୍ମର ପତି କାମଦେବ ଅଟନ୍ତି । ସେ ଭଗବାନ ଶ୍ରୀକୃଷ୍ଣଙ୍କ ଔରସରୁ ରୁକ୍ମିଣୀଙ୍କ ଗର୍ଭରୁ ଜାତ ହୋଇଛନ୍ତି । ମୋ ଠାରୁ ଶୁଣି ସମ୍ବରାସୁର ତାକୁ ସୂତିକାଘରୁ ନେଇ ଆସି ସମୁଦ୍ରକୁ ଫିଙ୍ଗିଦେଇ ଚାଲି ଆସିଲା । ସେତେବେଳେ ଏହି ମାଛଟି ତାକୁ ଗିଳି ଦେଇଥିଲା ଓ କେଉଟମାନେ ଆଣି ତାକୁ ଏଠାରେ ପହଞ୍ଚାଇ ଅଛନ୍ତି । ସେ ବଡ଼ ହେବା ପର୍ଯ୍ୟନ୍ତ ତୁମେ ତାକୁ ଯତ୍ନରେ ଲାଳନପାଳନ କର । ସେ ଯେତେବେଳେ ବଡ଼ ହୋଇଯିବ, ତାକୁ ସେତେବେଳେ ମାୟା ଶିକ୍ଷା ଦେବ ଓ ଏହି ସମ୍ବରାସୁରକୁ ମାରି ତାକୁ ନେଇ ଦ୍ୱାରକା ଚାଲିଯିବ ।

ସୂତ କହିଲେ—"ମୁନିଗଣ ! ନାରଦଙ୍କ କଥା ଶୁଣି ମାୟାବତୀ ଗୁପ୍ତ ରୂପରେ ପ୍ରଦ୍ୟୁମ୍ନଙ୍କୁ ପାଳନ କଲେ । ପ୍ରଦ୍ୟୁମ୍ନଙ୍କର ପାଳନ ପୋଷଣ ଯତ୍ନ ସହକାରେ ହେବାକୁ ଲାଗିଲା । ଏବେ ଆପଣମାନେ ଭଗବାନଙ୍କର ଅନ୍ୟାନ୍ୟ ବିବାହ ସମ୍ପର୍କରେ ସମସ୍ତ କଥା ଶୁଣନ୍ତୁ ।"

ସମ୍ବର ତହିଁ ରିପୁ ସମୁଝି ସୂତିକା ଘରମଧ୍ୟୁଁ ଆଣିଲା ।
ଶିଶୁଙ୍କୁ କରିକେଁ କପଟ ଧାଇ ବନି ଘର ତେଜି ଗଲା ॥
ଫେଙ୍କିଲା ସାଗର ବକ୍ଷ ମତ୍ସ୍ୟ ନେ ନିଗଳିଲା ଜୀବନ୍ତ ।
ମଚ୍ଛୁଆ ତାହିଁ ଫାଶରେ ଧରନ୍ତି ଶମ୍ବରକୁ ଦେଲା ଦ୍ୱିତ ॥
ନିର୍ବାସିତ ରତି ଶମ୍ବର ମହଲ, ମତ୍ସ୍ୟ ଉଦରମଧ୍ୟୁଁ ମିଳିଲା ପତି ।
ନାରଦ ମୁନି ପରିଚୟ ଦେଲା, ପାଳନ୍ତି ପତି ହୋଇ ମୁଦିତ ଅତି ॥

—※—

# ସ୍ୟମନ୍ତକୋପାଖ୍ୟାନ

ସତ୍ରାଜିତଃ ସ୍ୱତନୟାଂ କୃଷ୍ଣାୟ କୃତକିଲ୍ବିଷଃ ।
ସ୍ୟମନ୍ତକେନ ମଣିନା ସ୍ୱୟମୁଦ୍ୟମ୍ୟ ଦତ୍ତବାନ୍ ॥ ※

( ଶ୍ରୀ ଭା: ୧୦ମ ସ୍କନ୍ଧ, ୫୬ ଅ: ୧ ଶ୍ଲୋକ )

## ଉପକ୍ରମ

ପ୍ରଥମ କୃଷ୍ଣଙ୍କୋ ବ୍ୟାହ ପୁତ୍ର ଉତପତ୍ତି ସୁନାଇ ।
ମଣି ସ୍ୟମନ୍ତ କୀ କଥା ସୁନୋ ଅବ ଅତି ସୁଖଦାଇ ॥
ସତ୍ୟଭାମା ଅରୁ ଜାମବତୀ ଜିହ୍ନି କାରନ ପାଈ ॥
ହରିନେ ଲୀଲା ଲୋଭ ମୋହକୀ ଦୁଖଦ ଦିଖାଈ ॥
ସତ୍ରାଜିତ ଯାଦବ ପରମ, ସୂର୍ଯ୍ୟଭକ୍ତ ଲୋଭୀ ସରଲ ।
ହୋକେ ପ୍ରସନ୍ନ ତାକୁଁ ଦଇ, ସୂର୍ଯ୍ୟ ସ୍ୟମନ୍ତକ ମଣି ଅମଲ ॥

---

※ ଯଦୁନଗରେ ସତ୍ରାଜିତ । କୃଷ୍ଣରେ କଲ ଦ୍ରୋହଚିତ୍ତ ॥
ନିଜ ଦୁହିତା ସତ୍ୟଭାମା । ଅଶେଷ ସମ୍ଭୂତ ଯେହୁ ରମା ॥
ଅମୂଲ୍ୟ ସ୍ୟମନ୍ତକ ମଣି । ନିଜ ଦୁହିତା ସଙ୍ଗେ ଆଣି ॥
କୃଷ୍ଣ ଚରଣେ ଦେଲା ନେଇ । ଆପ୍ତ ଅପରାଧ ଛଡ଼ାଇ ॥
(ଭାଗବତ : ଜଗନ୍ନାଥ ଦାସ : ୧୦ ସ୍କ, ଅ ୬୦.)

ଜୀବ ଓ ଭଗବାନଙ୍କ ମଧ୍ୟରେ ଏତିକି ପାର୍ଥକ୍ୟ ଯେ ଜୀବ ଅଳ୍ପଜ୍ଞ ଓ ଭଗବାନ ସର୍ବଜ୍ଞ । ଜୀବର ସଙ୍କଳ୍ପ ବିକଳ୍ପ ଅଛି, କିନ୍ତୁ ଭଗବାନ ସତ୍ୟ-ସଙ୍କଳ୍ପ । ଜୀବ ମାୟାଦ୍ୱାରା ଆବଦ୍ଧ, ଭଗବାନ ମାୟିକ ବନ୍ଧନ ବାହାରେ । ଜୀବ ଆନୁମାନିକ ଆଧାର ଉପରେ ଚିନ୍ତା କରେ । କିନ୍ତୁ ଭଗବାନଙ୍କ ପାଇଁ ସବୁକିଛି ଘଟଣା ହସ୍ତାମଳକ ଭଳି । ଜୀବ କ୍ଷୁଦ୍ର, ଭଗବାନ ମହାନ୍ । ଜୀବ ଏକ ସୀମାରେ ଆବଦ୍ଧ, ଭଗବାନ ସମସ୍ତ ସୀମାର ଊର୍ଦ୍ଧ୍ୱରେ । ଜୀବର ଯଦି ମାୟା ସହିତ ସମ୍ପର୍କ ନ ହୁଅନ୍ତା, ତାହାହେଲେ ସେ ତ ଶିବ ହୋଇଯାଆନ୍ତା, ତାହାର ଅଉ ସାଧନାନୁଷ୍ଠାନ କରିବାର ବା ମୋକ୍ଷ ପ୍ରାପ୍ତିର ଆବଶ୍ୟକତା ପଡ଼ନ୍ତା ନାହିଁ । ବଦ୍ଧ ହୋଇଥିବା ହେତୁ ତ ତା'ର ମୁକ୍ତି ହେବାର ଇଚ୍ଛା ହୁଏ । ମାୟାରେ ବନ୍ଧନ ହୁଏ । ମାୟାର ସମ୍ପର୍କରୁ ହିଁ ତାହାର ଜୀବ ସଞ୍ଜ୍ଞା । ତାମିସ୍ର, ଅନ୍ଧତାମିସ୍ର, ମୋହ, ମହାମୋହ ଓ ତମ ଏହାକୁ ପଞ୍ଚପର୍ବା ଅବିଦ୍ୟା କୁହାଯାଏ । ଏଗୁଡ଼ିକ ଜୀବର ବିଶୁଦ୍ଧ ଜ୍ଞାନକୁ ଗ୍ରାସ କରିଦିଅନ୍ତି । ଏ ଗୁଡ଼ିକରେ ବଶୀଭୂତ ହୋଇ ଜୀବ ଝଗଡ଼ା ଆଦି କରେ, ଜଣେ ଅନ୍ୟଜଣକୁ ସନ୍ଦେହ କରେ, ଲାଞ୍ଛନା କରେ, ଝଗଡ଼ା ଲଢ଼େଇ କରିଥିବା ଓ ଛଳକପଟ କରେ ଓ ନାନାପ୍ରକାର ପ୍ରପଞ୍ଚ ରଚନା କରେ ।

ଭଗବାନ ଯେତେବେଳେ ଧରାବକ୍ଷରେ ଅବତୀର୍ଣ୍ଣ ହୋଇ ଲୋକମାନଙ୍କ ମଧ୍ୟରେ କ୍ରୀଡ଼ା କରନ୍ତି, ହସନ୍ତି ଓ ନର ଭଳି ନାଟ୍ୟ ପ୍ରଦର୍ଶନ କରନ୍ତି, ସେତେବେଳେ ସର୍ବ ସାଧାରଣ ଅଳ୍ପଜ୍ଞ ଜୀବ ତାଙ୍କୁ ନିଜ ଭଳି କର୍ମ ବନ୍ଧନରେ ଆବଦ୍ଧ ବୋଲି ମନେ କରନ୍ତି । ତାଙ୍କ କାର୍ଯ୍ୟରେ ଶଙ୍କା ମଧ୍ୟ କରନ୍ତି, ତାଙ୍କୁ ଦୋଷ ଦିଅନ୍ତି, ଲାଞ୍ଛନା କରନ୍ତି ଓ ସମାଲୋଚନା କରନ୍ତି । ଭଗବାନଙ୍କୁ ତ ନରଭଳି ଲୀଳା କରିବାକୁ ପଡ଼ିବ, ତେଣୁ ସେହି ଅବସରରେ ନିଜର ଭଗବତ୍ତା ପ୍ରଦର୍ଶନ କରନ୍ତେ ଅବା କାହିଁକି ? ସାଧାରଣ ଲୋକଙ୍କ ଭଳି ସବୁକିଛି ସହି ଯାଆନ୍ତି । ସତ୍ୟ କଦାପି ଲୁଚି ରହି ପାରେ ନାହିଁ । କୌଣସି ନା କୌଣସି ଦିନ ତାହା ପ୍ରକାଶ ପାଏ । ଯେତେବେଳେ ସତ୍ୟ ପ୍ରକାଶ ହୋଇଯାଏ, ସେତେବେଳେ ଜୀବ ତାଙ୍କ ମହିମା ଜାଣିପାରନ୍ତି ଓ ତାଙ୍କ ଗୁଣ ଗାନ କରି ଏ ସଂସାର ସାଗରକୁ ତରି ଯାଆନ୍ତି । ଯଦି ଦୁଷ୍ଟଲୋକ ସଜ୍ଜନଙ୍କୁ ଲାଞ୍ଛନା ନ କରି ଛାଡ଼ି ଦିଅନ୍ତେ, ତାହା ହେଲେ ଏ ସଂସାରକୁ ହେୟ, ଦୁଃଖମୟ ଓ ତ୍ୟାଜ୍ୟ ବୋଲି ଶାସ୍ତ୍ରକାରଗଣ କହନ୍ତେ କାହିଁକି ? ଯେତେବେଳେ ଗଙ୍ଗାଜଳପରି ନିର୍ମଳ ଜଗଜ୍ଜନନୀ ଭଗବତୀ ସୀତାଙ୍କୁ ଖଳଲୋକମାନେ ଲାଞ୍ଛିତ ନ କରି ଛାଡ଼ି ନାହାନ୍ତି, ଯେଉଁ କାରଣରୁ କି ଭଗବାନ୍ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ମଧ୍ୟ ଅତ୍ୟନ୍ତ କଷ୍ଟର ସହିତ, ନିର୍ଦ୍ଦୋଷ ବୋଲି ଜାଣୁଥିଲେ ମଧ୍ୟ ସୀତାଙ୍କୁ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ, ସେତେବେଳେ ସାଧାରଣ ଲୋକଙ୍କ ସମ୍ବନ୍ଧରେ କ'ଣ ବା କୁହାଯାଇ ପାରେ ? ଏହି ଲୋଭ ଏପରି ଝଗଡ଼ା ବସ୍ତୁ ଯେ, ତାହା ଯୋଗୁଁ ନିଜର ଲୋକ ମଧ୍ୟ ପର ହୋଇ ଯାଆନ୍ତି ଓ ମିତ୍ର ଶତ୍ରୁରେ ପରିଣତ

ହୁଅନ୍ତି । ଭାଇ ଭାଇଙ୍କ ମଧ୍ୟରେ ଦ୍ୱେଷ ହୁଏ । ଏହି ସବୁ ପ୍ରଦର୍ଶନ କରିବା ନିମନ୍ତେ ଭଗବାନ୍ ସ୍ୟମନ୍ତକ ମଣି ଲୀଳା ରଚନା କରିଥିଲେ ।

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କୁ ଭଗବାନଙ୍କ ପ୍ରଥମ ବିବାହ ଓ ପ୍ରଥମ ପୁତ୍ର ପ୍ରଦ୍ୟୁମ୍ନଙ୍କ ଜନ୍ମ କଥା କହିଲି, ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଇଚ୍ଛା କରୁଛନ୍ତି ?"

ଶୌନକ କହିଲେ—"ହେ ସୂତ ! ଆପଣ ଭଗବାନଙ୍କର ଷୋଳହଜାର ଏକଶହ ଆଠ ବିବାହ କଥା କହିବେ ବୋଲି କହିଥିଲେ ଓ ଏହା ଆଶ୍ୱାସନା ଦେଇ କହିଥିଲେ ଯେ ଅନ୍ତତଃ ଆଠ ବିବାହ କଥା ସମ୍ପୂର୍ଣ୍ଣ ଶୁଣାଇ ଅବଶିଷ୍ଟ ବିବାହ କଥା ସଂକ୍ଷେପରେ ପରେ ଶୁଣାଇବେ, ତେଣୁ ଆପଣ ଆମ୍ଭମାନଙ୍କୁ ଭଗବାନଙ୍କର ଅନ୍ୟ ବିବାହ କଥା ଶୁଣାନ୍ତୁ ।"

ସୂତ ହସି ହସି କହିଲେ—"ମୁନିଗଣ ! ଆପଣମାନେ ତ ଜନ୍ମରୁ ହିଁ ଗୃହତ୍ୟାଗୀ ବାବାଜୀ, ତେଣୁ ଏ ବିବାହ ସିବାହ ବୃତ୍ତାନ୍ତ ଶୁଣିବା ପାଇଁ କାହିଁକି ଏତେ ଆଗ୍ରହ ପ୍ରକାଶ କରୁଛନ୍ତି ? ଏହା ତ କେବଳ ଗୃହୀ ଲୋକ ଶୁଣିବା କଥା । ଆପଣମାନେ ଏଥିରେ ଏତେ ଅନୁରାଗ କାହିଁକି ପ୍ରଦର୍ଶନ କରୁଛନ୍ତି ?"

ଏହା ଶୁଣି ଶୌନକ ଗମ୍ଭୀର ହୋଇଗଲେ ଓ କହିଲେ—"ହେ ସୂତ ! ଦେଖନ୍ତୁ, ମନୁଷ୍ୟ ଯେଉଁଠାରୁ ଉତ୍ପନ୍ନ ଓ ଯେଉଁଥିପାଇଁ ଉତ୍ପନ୍ନ, ସେଥିରେ ତା'ର କିଛି ନା କିଛି ସଂସ୍କାର ବାକି ରହି ଯାଇଥାଏ । ଆମ୍ଭମାନଙ୍କର ପିତା, ପିତାମହ ଓ ପ୍ରପିତାମହ ପ୍ରତ୍ୟେକ ବିବାହ କରିଥିଲେ । ପ୍ରତ୍ୟେକଙ୍କର ମଧ୍ୟ ପୁତ୍ର ଉତ୍ପନ୍ନ ହୋଇଥିଲେ । ସମସ୍ତଙ୍କର ପୁତ୍ରୋତ୍ପନ୍ନ ହେବାରେ ପ୍ରସନ୍ନତା ହୋଇଥିଲା ଓ ସମସ୍ତେ ଅତି ଉତ୍ସାହ ଉଲ୍ଲାସରେ ସେହି ଉତ୍ସବ ପାଳନ କରିଥିଲେ । ସେହି ସମସ୍ତ ସଂସ୍କାର ଆମ୍ଭମାନଙ୍କ ଭିତରେ ସୂକ୍ଷ୍ମରୂପେ ବିଦ୍ୟମାନ । ଏଥିପାଇଁ ପ୍ରାଣୀମାନଙ୍କର ସ୍ୱାଭାବିକ ଇଚ୍ଛା ବିବାହ କରିବା ଓ ପୁତ୍ରୋତ୍ପନ୍ନ କରିବା । ଜୀବମାନଙ୍କର ଏହି କାମନାରେ ସ୍ୱତଃ ପ୍ରବୃତ୍ତି ହୁଏ । ଏବେ ଆମ୍ଭେମାନେ ନିଜ ନିଜର ସର୍ବସ୍ୱ ଭଗବାନଙ୍କ ପାଇଁ ଅର୍ପଣ କରି ଦେଇଛୁ । ନିଜ ନିଜର ଇଚ୍ଛାକୁ ଭଗବାନଙ୍କ ଇଚ୍ଛାରେ ମିଳାଇବା ପାଇଁ ସତତ ଯତ୍ନ କରୁଛୁ । ଏଥିପାଇଁ ନିରନ୍ତର ଯାଗ, ଯଜ୍ଞ, କଥା କୀର୍ତ୍ତନ, ଆଦି ଭଗବାନଙ୍କ ସମ୍ବନ୍ଧୀୟ କାର୍ଯ୍ୟରେ ନିଜ ନିଜର ମନକୁ ଲଗାଇ ଦେଇଛୁ । ମନର ସ୍ୱାଭାବିକୀ ପ୍ରବୃତ୍ତି ବିଷୟ ଆଡ଼କୁ ଯାଉଥିଲେ ମଧ୍ୟ ତାକୁ ବିଷୟରେ ନ ଲଗାଇ ଭଗବାନଙ୍କଠାରେ ଅର୍ପଣ କରୁଛୁ । ଯଦି ଆମ୍ଭେମାନେ ସର୍ବତୋଭାବରେ ଭଗବାନଙ୍କର ଦାସ ହୋଇଛୁ, ତାହା ହେଲେ ଦାସଙ୍କୁ ନିଜ ପାଇଁ କିଛି ହେଲେ କରିବାର ଅଧିକାର ନାହିଁ, ଯଦି ସେହି ପ୍ରଭୁଙ୍କୁ ଭୁଲି ନିଜ ପାଇଁ କିଛି କରୁଁ, ତାହାହେଲେ ତାହା ବ୍ୟଭିଚାର ବୋଲି କୁହାଯିବ । ପାପ ହେବ । ତାଙ୍କୁ ତ

ପ୍ରଭୁଙ୍କ ଭଲ ପ୍ରସନ୍ନ କରିବା ଆବଶ୍ୟକ । ସ୍ୱାମୀଙ୍କ ସୁଖକୁ ନିଜ ନିଜର ସୁଖ ବୋଲି ମନେ କରିବା ଆବଶ୍ୟକ । ଏଥିପାଇଁ ଭଗବତ୍ ଭକ୍ତ ଯେଉଁ ଉତ୍ସବ କରନ୍ତୁ ନା କାହିଁକି, ଭଗବାନଙ୍କ ସମ୍ବନ୍ଧରେ ହିଁ କରନ୍ତି । ଭଗବାନଙ୍କର ଜନ୍ମୋତ୍ସବ କରନ୍ତି, ଯେପରିକି ନିଜ ଘରେ ପୁତ୍ର ଜନ୍ମୋତ୍ସବ କରାଯାଏ । ତୁଳସୀ ଶାଳଗ୍ରାମଙ୍କ ବିବାହ କରାଯାଏ, ଭଗବାନଙ୍କ ବିବାହ କଥା ଶୁଣିବାକୁ ହୁଏ । ଭଗବାନଙ୍କର ଯେଉଁ ଯେଉଁ ସଂସ୍କାର ସବୁ ରହିଛି, ତାହା ଭଗବାନଙ୍କ ସମ୍ବନ୍ଧରେ ହିଁ କରାଯାଏ । ଭଗବାନଙ୍କ ରାସ-ଲୀଳା ଶ୍ରଦ୍ଧା ପୂର୍ବକ ଶୁଣିବା ଦ୍ୱାରା କାମଜ୍ୱରର ନିବୃତ୍ତି ହୁଏ । ଭଗବାନଙ୍କ ସମସ୍ତ ଲୀଳା ଆମ୍ଭମାନଙ୍କ ହୃଦୟରେ ଭକ୍ତିଭାବ ସଂଗ୍ରହ କରାଏ । ତେଣୁ ସଂସାରୀ ଲୋକଙ୍କ ବିବାହ କଥା ଶୁଣିବା ତ ଉଚିତ୍ ନୁହେଁ; କିନ୍ତୁ ଭଗବାନଙ୍କ ବିବାହ କଥା ଶୁଣିବାରେ ତ ଆମ୍ଭମାନଙ୍କ ସାଧନା ପଥରେ ପରମ ହିତକାରୀ ।”

ଏହା ଶୁଣି ସୂତ ହସି ହସି କହିଲେ—“ହେ ମହାରାଜ ! ତାହା ଠିକ୍ କଥା । ଏଥିପାଇଁ ଭଗବାନ୍ ଅବତୀର୍ଣ୍ଣ ହୋଇ ଲୋକଙ୍କ ଭଲ ଲୀଳା କରନ୍ତି, ଯଦ୍ଦ୍ୱାରା ନିତ୍ୟ, ମୁକ୍ତ, ବଦ୍ଧ ଓ ମୁମୁକ୍ଷୁ ପ୍ରତ୍ୟେକ ଶ୍ରେଣୀର ଜୀବଙ୍କୁ ସୁଖ ମିଳିଥାଏ । ହଁ ତାହାହେଲେ ମୁଁ ଭଗବାନଙ୍କର ଦ୍ୱିତୀୟ ଓ ତୃତୀୟ ବିବାହ ବିଷୟ କହୁଛି । ସତ୍ରାଜିତ ନାମକ ଏକ ଯାଦବ ଥିଲା । ସେ ଶ୍ରୀକୃଷ୍ଣଙ୍କ ଉପରେ ଯେଉଁ ମିଥ୍ୟା କଳଙ୍କ ଲଗାଇ ଥିଲା, ସେହି କଳଙ୍କକୁ ଧୌତ କରିବା ପାଇଁ ସେ ସ୍ୟମନ୍ତକ ମଣି ସହିତ ନିଜର କନ୍ୟାକୁ ଭଗବାନଙ୍କୁ ଦାନ କରିଥିଲା” ।

ଏହା ଶୁଣି ଶୌନକ ପଚାରିଲେ—“ହେ ସୂତ ! କିଷ୍ଟଲଙ୍କ ଭଗବାନଙ୍କୁ ସତ୍ରାଜିତ୍ କାହିଁକି କଳଙ୍କାରୋପ କରିଥିଲା ? ସ୍ୟମନ୍ତକ ମଣି ତାକୁ କେଉଁଠାରୁ ମିଳିଥିଲା ଓ ସ୍ୟମନ୍ତକ ମଣି ସହିତ କନ୍ୟାର କି ସମ୍ବନ୍ଧ ? ଏହିସବୁ କଥା କୃପାକରି ଆପଣ ପ୍ରଥମେ କୁହନ୍ତୁ, ତାହାପରେ ବିବାହ କଥା କହିବେ” ।

ସୂତ କହିଲେ—“ମହାରାଜ ! ଆପଣ ତ ବହୁତ ବଡ଼ ପ୍ରଶ୍ନ ପଚାରିଲେ, ତେବେ ଠିକ୍ ଅଛି, ପ୍ରଥମେ ମୁଁ ସ୍ୟମନ୍ତକ ମଣି ଉପାଖ୍ୟାନ ସଂକ୍ଷେପରେ କହୁଛି ।

“ଯଦୁବଂଶରେ ସାତ୍ୱତ ନାମରେ ଏକ ପ୍ରତାପୀ ରାଜା ଥିଲେ । ତାଙ୍କର ନାମ ଅନୁସାରେ ସେହି ରାଜାଙ୍କ ବଂଶର ନାମ ସାତ୍ୱତ ବଂଶ ରଖା ଯାଇଥିଲା । ତାଙ୍କର ସାତ ପୁତ୍ର ଥିଲେ ସେମାନଙ୍କ ମଧ୍ୟରେ ଚତୁର୍ଥ ପୁତ୍ରର ନାମ ବୃଷ୍ଣି ଥିଲା । ସେ ମଧ୍ୟ ବଡ଼ ପ୍ରତାପୀ ଥିଲେ, ତାଙ୍କ ନାମରେ ତାଙ୍କ ବଂଶର ନାମକରଣ ହୋଇଥିଲା ବୃଷ୍ଣିବଂଶ । ତେଣୁ ଯଦୁ ବଂଶୀକୁ ବୃଷ୍ଣିବଂଶୀ ବୋଲି ମଧ୍ୟ କୁହାଯାଏ । ତାଙ୍କର ବଂଶ ଅନୁସାରେ ଭଗବାନ କୃଷ୍ଣଙ୍କର

ଏକ ନାମ ବାର୍ଷ୍ଣେୟ । ଏହି ବୃଷ୍ଣିଙ୍କର ଦୁଇପୁତ୍ର ସୁମିତ୍ର ଓ ଯୁଧାଜିତ ଓ ଅନ୍ୟ ଏକ ପୁତ୍ରର ନାମ ଥିଲା ଅନମିତ୍ର । ଅନମିତ୍ରଙ୍କ ପୁତ୍ରର ନାମ ନିମ୍ନ । ଏହି ନିମ୍ନଙ୍କର ଦୁଇପୁତ୍ର ଥିଲେ, ଜ୍ୟେଷ୍ଠ ପୁତ୍ରର ନାମ ସତ୍ରାଜିତ ଓ କନିଷ୍ଠ ପୁତ୍ରର ନାମ ଥିଲା ପ୍ରସେନ ।

"ସତ୍ରାଜିତ ଧର୍ମାତ୍ମା ଥିଲେ । ସେ ସର୍ବଦା ସୂର୍ଯ୍ୟଙ୍କ ଉପାସନା କରୁଥିଲେ । ତାଙ୍କ ଉପାସନାରେ ସନ୍ତୁଷ୍ଟ ହୋଇ ସୂର୍ଯ୍ୟଦେବ ତାଙ୍କର ଅତ୍ୟନ୍ତ ମିତ୍ର ହୋଇଗଲେ ଓ ତାଙ୍କ ସହିତ ମିତ୍ରତା କରିବାକୁ ଲାଗିଲେ । ଜଣେ ଅନ୍ୟଜଣେ ମିତ୍ରକୁ କୌଣସି ଏକ ଭଲ ଉପହାର ଦେବାକୁ ଇଚ୍ଛା କରିବା ସ୍ୱାଭାବିକ । ସୂର୍ଯ୍ୟଦେବ ମଧ୍ୟ ଚିନ୍ତା କଲେ,'ଏ ମୋର ଭକ୍ତ ଓ ମିତ୍ର । ଏହାଙ୍କୁ ମୁଁ ଏପରି ଏକ ଅପୂର୍ବ ବସ୍ତୁ ଉପହାର ଦେବି ଯାହାକି କାହାରି ପାଖରେ ନ ଥିବ ଓ ଏହାଙ୍କର କାହାକୁ କିଛି ମାଗିବାର ମଧ୍ୟ ଆବଶ୍ୟକତା ପଡ଼ିବ ନାହିଁ' । ଏହି କଥା ଚିନ୍ତାକରି ସୂର୍ଯ୍ୟ ଭଗବାନ୍ ତାଙ୍କୁ ଏକ ସ୍ୟମନ୍ତକ ନାମକ ମଣି ପ୍ରଦାନ କଲେ । ଏହି ମଣି ଥିଲା ଏକ ଦିବ୍ୟମଣି । ଏହାର ଏପରି ଗୁଣ ଥିଲା ଯେ, ପୂରଣ ପାଖରେ ରଖିଲେ ସେହି ମଣି ପ୍ରତିଦିନ ଆଠଭାର ସୁବର୍ଣ୍ଣ ଦେଉଥିଲା ।

ଶୌନକ ପଚାରିଲେ—"ହେ ସୂତ ! ଭାରକର ପରିମାଣ ଅନ୍ତତଃ କେତେ ହେବ ?"

ସୂତ କହିଲେ—"ମହାରାଜ ! ଗୁରୁ ଧାନରେ ଏକ ରତି ହୁଏ, ପାଞ୍ଚ ରତି ବା ଗୁଞ୍ଜାରେ ଏକ ପଣ ହୁଏ (ଅଧ ମଶାରୁ କିଛି ଅଧିକ) । ଆଠପଣରେ ଏକ ଧରଣ ହୁଏ, ଆଠ ଧରଣରେ ଏକ କର୍ଷ ହୁଏ (ଅଧ ଛଟାଙ୍କିରୁ ଅଧିକ) । ଗୁରୁ କର୍ଷରେ ଏକ ପଲ ହୁଏ (ଅଢ଼ାଇ ଛଟାଙ୍କି ସଙ୍ଗେ ପ୍ରାୟ ସମାନ) । ଶହେ ପଲରେ ଏକ ତୁଳା ହୁଏ (ପ୍ରାୟ ଷୋଳ ସେର ଓଜନ) । କୋଡ଼ିଏ ତୁଳାରେ ଏକ ଭାର ହୁଏ ଅର୍ଥାତ୍ ଆଠ ମହଣରେ ଏକ ଭାର । ସେହି ହିସାବରେ ଆଠଭାର ସୁବର୍ଣ୍ଣ ସେହି ମଣି ପ୍ରତିଦିନ ଦେଉଥିଲା ।"

ଶୌନକ କହିଲେ—"ହେ ସୂତ ! ତାହାହେଲେ କ'ଣ ସେହି ମଣି ସୁବର୍ଣ୍ଣର ଖଣି ଥିଲା ?"

ସୂତ କହିଲେ—"କେବଳ ସେତିକି ନୁହେଁ ମହାରାଜ ! ତାହା ଯେଉଁ ସ୍ଥାନରେ ବିଧି ବିଧାନରେ ପୂଜିତ ହୋଇ ରହୁଥିଲା, ସେଠାରେ କେବେହେଲେ ଦୁର୍ଭିକ୍ଷ ପଡୁନଥିଲା କିମ୍ବା ମହାମାରୀ ଓ ଅନ୍ୟାନ୍ୟ ଗ୍ରହପୀଡ଼ା ହେଉନଥିଲା । ତାହା ରଖିବା ଦ୍ୱାରା ସର୍ପଭୟ, ଶାରୀରିକ ପୀଡ଼ା, ମାନସିକ ସନ୍ତାପ ଓ ମାୟାବୀମାନଙ୍କ ଉପଦ୍ରବ୍ୟ ଆଦି କୌଣସି ଅନିଷ୍ଟକାରକ ବିପତ୍ତି ପଡୁନଥିଲା । ଏପରି ଦିବ୍ୟମଣିକୁ ସ୍ନେହବଶତଃ ସୂର୍ଯ୍ୟଦେବ ସତ୍ରାଜିତଙ୍କୁ ପ୍ରଦାନ କରିଥିଲେ । ସେହି ଦିବ୍ୟମଣିକୁ ପାଇ ସତ୍ରାଜିତ ଅତି ଆନନ୍ଦରେ

ଥିଲା । ସେହି ମଣି ଦୂରରୁ ସୂର୍ଯ୍ୟଙ୍କ ଭଳି ତେଜ ବିକୀରଣ କରୁଥିଲା । ସେହି ମଣିକୁ ପାଇ ସେ ଆନନ୍ଦ ମନରେ ତାହା କଣ୍ଠରେ ଧାରଣ କରି ସମୁଦ୍ର କୂଳେ କୂଳେ ଦ୍ୱାରକାପୁରୀକୁ ଆସିଥିଲେ । ତାହାର ତେଜରେ ସତ୍ରାଜିତର ଶରୀରତ ସହଜେ ଦେଖା ଯାଉ ନ ଥିଲା, କେବଳ ଦୂରରୁ ମଣିର ଦେଦୀପ୍ୟମାନ କିରଣ ଚତୁର୍ଦ୍ଦିଗ ଆଲୋକିତ କରୁଥିଲା । ଦ୍ୱାରକାପୁରୀ ନିବାସୀ ତାହା ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ଯେ, ଏପରି କେଉଁ ତେଜସ୍ୱୀପୁରୁଷ ଏଆଡ଼େ ଆସୁ ଅଛନ୍ତି ? ପୁରୁଷଙ୍କୁ ତ କେହି ଦେଖି ପାରୁନଥାନ୍ତି, କେବଳ ତେଜ ପୁଞ୍ଜର ଆଗମନ ହିଁ ସେମାନଙ୍କୁ ଦେଖାଯାଉଥାଏ । ''

କେହି କେହି ବାହାଦୂରୀ ଦେଖାଇ କହିଲା —'' ଆରେ ! ତୁମେସବୁ ଏତିକି ଜାଣିପାରୁ ନାହଁ କିମ୍ବା କିରଣରୁ ବି ଅନୁମାନ କରିପାରୁ ନାହଁ ଯେ ଏ ହେଉଛନ୍ତି ଭଗବାନ ମରୀଚମାଳୀ ସୂର୍ଯ୍ୟଦେବ । ଚତୁର୍ଦ୍ଦିଗ ଏହାଙ୍କର କିରଣ ବିଚ୍ଛୁରିତ ହେଉଅଛି । ''

ଲୋକେ ସୂର୍ଯ୍ୟଙ୍କ ଭଳି ସେହି ଦେଦୀପ୍ୟମାନ ପ୍ରଚଣ୍ଡ ତେଜ ପୁଞ୍ଜକୁ ଦେଖି ତ ବିସ୍ମିତ ହୋଇପଡ଼ିଥିଲେ. ତାଙ୍କ ଆଖି ଆଗରେ ଚକ୍ଷପରି ଛାୟା ମଧ୍ୟ ଘୂରି ଯାଉଥିଲା । ସେହି ବୁଦ୍ଧିମାନ୍ ବ୍ୟକ୍ତିର କଥା ଶୁଣି ସମସ୍ତେ ଶଙ୍କା କରିବାକୁ ଲାଗିଲେ ଯେ, 'ସୂର୍ଯ୍ୟଦେବ ତ ଆକାଶଚାରୀ,ସେ ଧରାବକ୍ଷକୁ କାହିଁକି ଅବତରଣ କରିଛନ୍ତି ? ସେ ତ ନିଜ ରଥରେ ଚଢ଼ି ତ୍ରିଭୁବନକୁ ଆଲୋକ ପ୍ରଦାନ କରିବା ନିମିତ୍ତ ଘୂରୁଥାନ୍ତି, ସେ ଏଠାରେ ଏପରି ଭାବରେ ପାଦରେ ଚାଲିଚାଲି ଆସିବେ କାହିଁକି ?'

ଏହା ଶୁଣି ସେହି ବୁଦ୍ଧିମାନ ବ୍ୟକ୍ତିଟି କହିଲା,—'ଦେଖ ଭାଇ, ସୂର୍ଯ୍ୟ ମଧ୍ୟ ଏକ ଦେବତା । ତାଙ୍କର ଏକ ମୂର୍ତ୍ତିମାନ୍ ସ୍ୱରୂପ ମଧ୍ୟ ଅଛି, ଯଦିଚ ସେ ସେହି ସାଧାରଣ ରୂପରେ ସର୍ବଦା ପୃଥିବୀ ପୃଷ୍ଠରେ ବିଚରଣ କରନ୍ତି ନାହିଁ, ତଥାପି କେବେ କେବେ ନିଜ ଇଚ୍ଛା ଅନୁସାରେ ସେହି ରୂପ ଧାରଣ କରି ବି ଅବତୀର୍ଣ୍ଣ ହୋଇଥାନ୍ତି । ପୁନଶ୍ଚ ଦ୍ୱାରକା ଭଳି ସ୍ଥାନକୁ ସେ ଆସିବାରେ ଆଶ୍ଚର୍ଯ୍ୟ ହେବାରେ କ'ଣ ଅଛି ? ଆଜି ଯଦୁକୁଳରେ ସମସ୍ତ ଦେବତାଙ୍କର ଆରାଧ୍ୟ ଦେବ କମଳ ନୟନ, ଶଙ୍ଖଚକ୍ରଧାରୀ ବନମାଳୀ ଗୁପ୍ତ ଭାବରେ ବିରାଜମାନ ତଥା ନିବାସ କରୁଛନ୍ତି । ତିନି ଲୋକର ବଡ଼ ବଡ଼ ଦେବତା ତାଙ୍କ ମାର୍ଗକୁ ନିରନ୍ତର ଖୋଜୁଛନ୍ତି; କିନ୍ତୁ ଖୁବ୍ କମ୍ ଦେବତା ତାଙ୍କୁ ପାଇ ପାରୁଛନ୍ତି । ସୂର୍ଯ୍ୟଦେବ ତ ସର୍ବକର୍ମର ସାକ୍ଷୀ ଅଟନ୍ତି, ସେ ବୋଧହୁଏ ଜାଣି ପାରିଛନ୍ତି ଯେ, ସର୍ବେଶ୍ୱର ଦ୍ୱାରକାରେ ଯଦୁବଂଶରେ ଗୋପନରେ ଲୁଚି ରହିଛନ୍ତି । ସେଥିପାଇଁ ସେ ତାଙ୍କୁ ଦର୍ଶନ କରିବାକୁ ବୋଧହୁଏ ଆସୁ ଅଛନ୍ତି ?'

ଅନ୍ୟ ଲୋକମାନେ ସେହି ବ୍ୟକ୍ତିର ଏପ୍ରକାର ଯୁକ୍ତି ଯୁକ୍ତ କଥାକୁ ସ୍ୱୀକାର କଲେ ଓ ସମସ୍ତେ ଅତି ଆଗ୍ରହରେ କହିବାକୁ ଲାଗିଲେ, ଯଦି ଏହା ବାସ୍ତବ କଥା ହୋଇଥାଏ,

ତାହାହେଲେ ଆମେ ସମସ୍ତେ ପ୍ରଥମେ ଯାଇ ଭଗବାନଙ୍କୁ ଏହା ଜଣାଇଦେବା ଉଚିତ୍ ।" ଏ କଥାକୁ ସମସ୍ତେ ସମର୍ଥନ କଲେ । କାରଣ ସମସ୍ତଙ୍କ ପାଇଁ ଏହା ଏକ କୌତୂହଳ-ପୂର୍ଣ୍ଣ ଘଟଣା ଥିଲା । ସେମାନେ ଧାଇଁ ଧାଇଁ ଶୀଘ୍ର ଭଗବାନଙ୍କ ପାଖକୁ ଗଲେ । ସେତେବେଳେ ଭଗବାନ୍ ଅନ୍ତଃପୁରରେ ନିଜର ପ୍ରିୟା ସହିତ "ଗୈଁସର" ଖେଳ ଖେଳିବାରେ ବ୍ୟସ୍ତ ଥିଲେ । ଦ୍ୱାରପାଳ ଲୋକମାନଙ୍କୁ ବାରଣ କଲେ ସୁଦ୍ଧା ସେମାନେ ତାହା କଥା ନମାନି ଅତି ଉତ୍ସାହର ସହିତ ସିଧା ସଳଖ ଅନ୍ତଃପୁରକୁ ଯାଇ ଦ୍ୱାରଦେଶରେ ପହଞ୍ଚିଲେ ଓ କୋଳାହଳ କରି କହିଲେ—'ହେ ଦେବ ! ହେ ଜଗତ୍‌ପତେ ! ହେ ନାରାୟଣ ! ଆପଣଙ୍କ ପାଦପଦ୍ମରେ ଆମ୍ଭମାନଙ୍କର ବାରମ୍ବାର ପ୍ରଣାମ ।'

ଭଗବାନ ବଡ଼ ଭ୍ରମରେ ପଡ଼ିଲେ । କିଣ ଘଟଣା ଘଟିଲା ? ଲୋକମାନଙ୍କ ଉପରେ କି ବିପଦ ଆପଦ ପଡ଼ିଲା ? ଏମାନେ କାହିଁକି ଏତେ କୋଳାହଳ କରୁଛନ୍ତି ? ମୋତେ କାହିଁକି ଏତେ ନାମ ଧରି ଡ଼ାକୁଛନ୍ତି ? ଏହି କଥାସବୁ ଚିନ୍ତାକରି 'ଗୈଁସର' ଖେଳ ଛାଡ଼ି ସେ ବାହାରକୁ ଆସିଲେ ଓ ହସି ହସି କହିଲେ -'କୁହ ଭାଇମାନେ ! ତୁମ୍ଭମାନଙ୍କର କ'ଣ ହୋଇଛି ? ଘଟଣା କ'ଣ ? ତୁମ୍ଭେମାନେ ଏତେ ବିସ୍ମିତ ହେଉଛ କାହିଁକି ? ଦ୍ୱାରକାରେ କୌଣସି ନୂତନ ଘଟଣା ଘଟିଗଲା କି ? '

ଲୋକମାନେ କହିଲେ—"ଭଗବାନ ! ଆପଣ ତ ସର୍ବଜ୍ଞ । ଆପଣଙ୍କ ନିକଟରେ କୌଣସି କଥା ଆଶ୍ଚର୍ଯ୍ୟଜନକ ନୁହେଁ । କିନ୍ତୁ ଆମ୍ଭମାନଙ୍କ ପାଇଁ ତ ଆଜି ଏହା ନୂଆ ଘଟଣା ।"

ଭଗବାନ ପଚାରିଲେ—"କି ନୂଆ ଘଟଣା, କହୁନା କାହିଁକି ?"

ଲୋକମାନେ କହିଲେ—"ଭଗବାନ ! ପ୍ରଚଣ୍ଡ ରଶ୍ମି ଭଗବାନ ଭୁବନଭାସ୍କର ନିଜର କିରଣଜାଲ ଦ୍ୱାରା ଦ୍ୱାରକାବାସୀ ନରନାରୀଙ୍କର ନେତ୍ରକୁ ଝଲସାଇ ଆପଣଙ୍କୁ ଦର୍ଶନ କରିବାପାଇଁ ଆସୁଅଛନ୍ତି । କାହିଁକି ବା ନ ଆସନ୍ତେ, ଆପଣ ତ ସମସ୍ତ ଦେବତାଙ୍କର ପୂଜନୀୟ । ଆମ୍ଭେମାନେ ଏହିକଥା ଆପଣଙ୍କୁ ଜଣାଇବା ପାଇଁ ଧାଇଁ ଆସିଲୁ ।"

ଭଗବାନ ହସି ହସି କହିଲେ—"କାହାନ୍ତି ସେ ସୂର୍ଯ୍ୟ ଦେବତା ?"

ଲୋକମାନେ ହାତର ସଙ୍କେତ ଦ୍ୱାରା ସମ୍ମୁଖରେ ଆସୁଥିବା ସତ୍ରାଜିତଙ୍କୁ ଦେଖାଇ ଦେଲେ । ଭଗବାନ୍ ତାଙ୍କୁ ଦେଖି ଖିଲିଖିଲି ହସି କହିଲେ—"ତୁମେ ସବୁ ପାଗଳ

ହୋଇଗଲା ନା କ'ଣ ? ଆରେ ! ସୂର୍ଯ୍ୟନାରାୟଣ କ'ଣ ଏପରି ଚାଲିଚାଲି ପୃଥିବୀ ଉପରେ ଆସନ୍ତି ?''

ଲୋକମାନେ କହିଲେ—''ମହାରାଜ ! ସେ ସୂର୍ଯ୍ୟନାରାୟଣ ନୁହନ୍ତି ତ ଆଉ କିଏ ? ତାଙ୍କ ତେଜ ତ ସୂର୍ଯ୍ୟତେଜ ଭଳି ।''

ସର୍ବଜ୍ଞ ଭଗବାନ୍ କହିଲେ—''ଭାଇମାନେ ! ସେ ହେଉଛି ସତ୍ରାଜିତ । ସେ ସୂର୍ଯ୍ୟଦେବଙ୍କୁ ବହୁଦିନ ଧରି ଉପାସନା କରିଆସିଛି । ସୂର୍ଯ୍ୟଦେବ ପ୍ରସନ୍ନ ହୋଇ ତାକୁ ଦିବ୍ୟ ମଣି ପ୍ରଦାନ କରିଛନ୍ତି । ସେ ତାହା ଗଳାରେ ପିନ୍ଧି ଏଆଡ଼େ ଆସୁଅଛି । ସେହି ମଣି ତେଜରେ ତାକୁ ତୁମ୍ଭେମାନେ ଦେଖିପାରୁ ନାହିଁ । ସେ ପ୍ରକୃତ ସୂର୍ଯ୍ୟଦେବ ନୁହେଁ, ମଣି ତେଜରେ ଦେଦୀପ୍ୟମାନ ସତ୍ରାଜିତ ।''

ଏହା ଶୁଣି ଲୋକମାନଙ୍କର କୁତୂହଳ ଶାନ୍ତ ହୋଇଗଲା । ସେମାନେ ନିଜ ନିଜ ଘରକୁ ଚାଲିଗଲେ । ଭଗବାନ ମଧ୍ୟ ପୁନଶ୍ଚ ପ୍ରିୟାଙ୍କ ସଙ୍ଗେ ଚୌପର ଖେଳିବାରେ ମଜ୍ଜିଗଲେ ।

ଏଣେ ସତ୍ରାଜିତ ଘରକୁ ଆସି ଏକ ବିରାଟ ଉତ୍ସବର ଆୟୋଜନ କଲେ । ମଣି ପାଇଁ ଏକ ସୁବର୍ଣ୍ଣ ମନ୍ଦିର ନିର୍ମାଣ କରାଇଲେ । ସୁବର୍ଣ୍ଣ ସିଂହାସନ ଉପରେ ତାହା ବ୍ରାହ୍ମଣଦ୍ୱାରା ପ୍ରତିଷ୍ଠା କରାଇ ସ୍ଥାପନ କରାଇଲେ ।

ଭଗବାନ୍ ଦେଖିଲେ, ଏ ମଣି ତ ଅତି ଅଦ୍ଭୁତ ମଣି । ଏହା ପ୍ରତ୍ୟହ ଆଠଭାର ସୁବର୍ଣ୍ଣ ପ୍ରଦାନ କରେ । ଏ ସତ୍ରାଜିତର କୌଣସି ପୁଣ୍ୟ ବି ନାହିଁ । ଏହା ପାଖରେ ରହିଲେ ମଣିର ଦୁରୁପଯୋଗ ହେବ, ଯଦି ମହାରାଜ ଉଗ୍ରସେନଙ୍କୁ ଏହା ଦିଆଯାଏ, ତାହାହେଲେ ଏହାର ପୂଜା ପ୍ରତିଷ୍ଠା ଉତ୍ତମ ଭାବରେ ହୋଇପାରିବ ଓ ଏହାଦ୍ୱାରା ପ୍ରଦତ୍ତ ସୁବର୍ଣ୍ଣ ମଧ୍ୟ ଧର୍ମାଦି ଶୁଭ କାର୍ଯ୍ୟରେ ବ୍ୟୟ ହୋଇ ପାରିବ ।

ଏହା ଚିନ୍ତା କରି ଭଗବାନ ଦିନେ ସତ୍ରାଜିତକୁ ଡକାଇ ତା ସହିତ ବିଭିନ୍ନ ପ୍ରସଙ୍ଗ ଆଲୋଚନା କରି ଶେଷକୁ କହିଲେ ''ହେ ସତ୍ରାଜିତ ! ମୁଁ ତୁମକୁ ଗୋଟିଏ କଥା କହିବି, ତୁମେ ତାହା ମାନିବ କି ନାହିଁ କହ ?''

ସତ୍ରାଜିତ ଶଙ୍କିତ ଚିତ୍ତରେ କହିଲା—''ହଁ, ମହାରାଜ ! ଆଦେଶ କରନ୍ତୁ । ଆପଣଙ୍କର ଆଦେଶକୁ କିଏ ବା ଏଡ଼ାଇ ଦେଇ ପାରିବ ?''

ଭଗବାନ୍ କହିଲେ—''ନା, ଏଡ଼ାଇବାର କଥା ମୁଁ କହୁ ନାହିଁ, କିମ୍ବା ଏହା ମୋର କୌଣସି ଆଦେଶ ନାହିଁ । ମୁଁ ତ କେବଳ ତୁମ ଅନୁମତି ଚାହୁଁଛି । ତୁମ ପାଖରେ ଯେଉଁ ସୂର୍ଯ୍ୟପ୍ରଦତ୍ତ ମଣି ଅଛି, ତାହା ତ ତୁମର କୌଣସି ବିଶେଷ କାର୍ଯ୍ୟରେ ଆସୁ

ନାହିଁ । ତାହା ମହାରାଜ ଉଗ୍ରସେନଙ୍କ ତତ୍ତ୍ୱାବଧାନରେ ଦେଲେ ସେ ଭଲ ଭାବରେ ତାହା ପ୍ରତିଷ୍ଠା କରି ବିଧି ବିଧାନରେ ପୂଜା କରି ପାରିବେ, ଏଥିରେ ତୁମର କୌଣସି ଆପତ୍ତି ନ ଥିବ ବୋଲି ମୁଁ ମନେକରୁଛି । ତୁମର ସମସ୍ତ ଭରଣପୋଷଣ ଦାନଧର୍ମାଦିର ଭାର ରାଜ୍ୟ ବହନ କରିବ । ତୁମେ ଯେତେ ବ୍ୟୟ କରିବାକୁ ଚାହିଁବ, ଯେତେ ଦାନ ଧର୍ମ କରିବାକୁ ଚାହିଁବ ତାହା କରିପାରିବ ।''

ସତ୍ରାଜିତ ତ ବଡ଼ ଅର୍ଥଲୋଲୁପ ଥିଲା । ଲୋଭୀକୁ ଯଦି କେହି ଧନ ମାଗେ, ତାହାହେଲେ ତା ପ୍ରାଣ ଶୁଖି ଆସେ । ଯେଉଁ ମଣି ପ୍ରତ୍ୟହ ଆଠଭାର ସୁବର୍ଣ୍ଣ ଦେଉଛି, ତାହା ସେ କପରି ଅବା ଦେଇ ପାରନ୍ତା ? ତେଣୁ ସେ କହିଲା—''ମହାରାଜ ! ମୋତେ ସୂର୍ଯ୍ୟ ଏହା ପ୍ରଦାନ କରିଛନ୍ତି । ମୁଁ ଘରେ ତାହା ପ୍ରତିଷ୍ଠା କରାଇ ଅଛି । ମୋର ଭାଇ ଏ ପ୍ରସ୍ତାବରେ କଦାପି ସମ୍ମତ ହେବ ନାହିଁ । ତେଣୁ ଆପଣ ମୋତେ କ୍ଷମାକରନ୍ତୁ ।''

ଭଗବାନ୍ କହିଲେ—''ଆରେ ଭାଇ ! ଏଥିରେ ଆପତ୍ତି କରିବାର ତ କୌଣସି କାରଣ ନାହିଁ । ତୁମ୍ଭମାନଙ୍କର ସମସ୍ତ ଭାର'ତ ରାଜ୍ୟ ବହନ କରିବ ।''

ଏତେ କହିଲା ପରେ ମଧ୍ୟ ସେହି ଲୋଭୀ ସତ୍ରାଜିତ ଭଗବାନଙ୍କର ଆଜ୍ଞା ପାଳନ ନ କଲେ ଯେ କି ଭୟଙ୍କର ପରିଣାମ ହେବ, ତାହା ଚିନ୍ତା ନ କରି ସ୍ପଷ୍ଟ କହିଦେଲା ଯେ—''ହେ ଯଦୁନନ୍ଦନ ! ଆପଣ ଆଉ ଏ ବିଷୟରେ ମୋତେ ବାଧ କରନ୍ତୁ ନାହିଁ । ଏହା ମୋ ଶକ୍ତିର ବାହାରେ ।''

ଭଗବାନ ଏହା ଶୁଣି ଚୁପ୍ ହୋଇଗଲେ । ସତ୍ରାଜିତ ସେଠାରୁ ଉଠି ଚାଲିଗଲା । କଥା ଏଇଠି ରହିଲା । ଭଗବାନଙ୍କ ମନରେ ତ କୌଣସି ଲୋଭ ନଥିଲା, ତାଙ୍କର ସେ ମଣି ବା କ'ଣ ହୁଅନ୍ତା ? ସାଧାରଣ ଭାବରେ ସେ ଏପରି ପରାମର୍ଶ ଦେଇଥିଲେ । ସତ୍ରାଜିତ ମନା କରିବାରେ ମଧ୍ୟ ସେ କିଛି ଭାବିଲେ ନାହିଁ । କିଛିଦିନ ପରେ ଏ କଥା ପୁରୁଣା ହୋଇଗଲା । ଭଗବାନ ମଧ୍ୟ ଭୁଲିଗଲେ । କିନ୍ତୁ ସତ୍ରାଜିତ ମନରେ ଅବଶୋଷ ରହିଗଲା ଯେ, ''ମୁଁ ଭଗବାନଙ୍କ ଆଜ୍ଞା ମାନିଲି ନାହିଁ, ସେ ଆଉ ମୋର କୌଣସି ଅନିଷ୍ଟ କରିବେ ନାହିଁ ତ ?''

ସୂତ କହିଲେ—''ମୁନିଗଣ ! ପାପୀର ହୃଦୟ ସର୍ବଦା ଶଙ୍କାକୁଳ ରହେ । ବଡ଼ ଲୋକମାନେ ସ୍ୱଭାବତଃ କୌଣସି ଘଟଣା ଦେଖି ହସିଦିଅନ୍ତି, ସମୟ ସମୟରେ ସେମାନେ କୌଣସି ଲୋକକୁ ଦଣ୍ଡିତ ମଧ୍ୟ କରିଥାଆନ୍ତି । ସେମାନେ ସେହି ବ୍ୟକ୍ତି ସମ୍ବନ୍ଧରେ ଭଲଭାବରେ ଜାଣି ନ ଥିଲେ ମଧ୍ୟ ନିଜ ନିଜର ସ୍ୱଭାବବଶତଃ ସେମାନଙ୍କୁ ଏପରି କରନ୍ତି । କିନ୍ତୁ କ୍ଷୁଦ୍ର ପୁରୁଷ (ନୀଚମନା) ସେମାନଙ୍କୁ ନିଜର ଶତ୍ରୁ ବୋଲି ଭାବନ୍ତି ।''

## ଛପ୍ପୟ

ସତ୍ରାଜିତ ମଣି ପହିନ ଦ୍ୱାରକାମହଁ ଜବ ଆୟୌ ।
ସମୁଝି ସୂର୍ଯ୍ୟ ନର ଉଠେ କୃଷ୍ଣ ସବ ଭେଦ ବତାୟୌ ॥
ଆଠ ଭାର ନିତ କନକ ଦେହି ଦୁଖ ଶୋକ ନଯାବୈ ।
ହରି ଯୋଚେଂ ମଣି ଦିବ୍ୟ ସ୍ୱଜ ମହଲନି ମେ ଆବୈ ॥
ମାଁଗୀ ହରି ପରଂ ନହିଂ ଦଈ, ସତ୍ରାଜିତ ଲୋଭୀ ପରମ ॥
ଲୋଭ ମୋହ ମହଁ ଫଁସି ପୁରୁଷ, ଖୋବେ ସବ ଗୁଣ ନିଜ ଧରମ ॥



## "ଗୋବଧ କଲେ ଏଡ଼େ କର୍ମ ?"

ପ୍ରାୟଃ କୃଷ୍ଣେନ ନିହତୋ ମଣିଗ୍ରୀବୋ ବନଂ ଗତଃ ।
ଭ୍ରାତା ମମେତ ତଚ୍ଛ୍ରୁତ୍ୱା କର୍ଣ୍ଣେ କର୍ଣ୍ଣେଽଜପଞ୍ଜନାଃ ॥ *

(ଶ୍ରୀ ଭା : ୧୦ମ ସ୍କନ୍ଧ ୫୬ ଅ: ୧୬ ଶ୍ଳୋକ)

---

* କୃଷ୍ଣ ମାଗିଲେ ମୋତେ ମଣି । ନ ଦେଇ ହୋଇଛି ମୁଁ ଊଣ ॥
ସେ ଅବା ମୋତେ ମାୟା କଲ । ପ୍ରସେନ ମାରି ମଣି ନେଲ ॥
ସେ କଥା ଶୁଣି ସର୍ବଜନେ । ମିଳି କହନ୍ତି କାନେ କାନେ ॥
ଗୋବଧ କଲେ ଏଡ଼େ କର୍ମ । ଲୋକରେ ଶୁଭିଲା ଲାଞ୍ଛନ ॥

( ଭାଗବତ : ଜଗନ୍ନାଥ ଦାସ : ସ୍କ, ୧୦ମ, ୬୦ଅ. )

## ଛପ୍‌ପୟ

ସତ୍ରାଜିତ ଲଘୁ ବନ୍ଧୁ ପ୍ରାନ ସମ ପ୍ରିୟ ପ୍ରସେନ ବର ।
ଧାରି କଂଠ ମଣି ଚଳ୍ୟୋ କରନ ମୃଗୟା ଲୈ ଧନୁ ସର ।।
ବନମହିଁ ପହୁଁଚେ୍ୟା ଆଇ ସିଂହ ନେ ହୟ ସଁଗ ମାରେ୍ୟା ।
ଲୈ ମଣି ଭଗେ୍ୟା ସିଂହ ରୀଚ୍ଛ ନେ ତାହି ପଚ୍ଛାରେ୍ୟା ।।
ଜାମ୍ବୁବାନ ମଣି ଗ୍ରହଣ କରି, ଘୁରେ୍ୟା ଗୁଫାମହିଁ ମୁଦିତ ମନ ।
ଜବ ପ୍ରସେନ ଆୟେ୍ୟା ନହୀଂ, ସତ୍ରାଜିତ୍ ଲଗେ୍ୟା କହନ ।।

ଯେଉଁ ଲୋକ ଯେପରି ସ୍ୱଭାବର ହୋଇଥାଏ, ସେ ଅନ୍ୟମାନଙ୍କୁ ସେହିପରି ସ୍ୱଭାବର ବୋଲି ମନେକରେ । ଯୁଗ ପ୍ରଭାବରେ ଲୋକମାନଙ୍କର ମନ ଆଜି ମଳିନ ହୋଇ ଯାଇଛି । ସେମାନଙ୍କ ମନରେ କାମ, କ୍ରୋଧ ତଥା ଲୋଭର ଭାବନା ଅଧିକ ବୃଦ୍ଧି ପାଇଛି । କେହି ଯଦି କାହାକୁ ଧର୍ମାତ୍ମା, ସତ୍ୟବାଦୀ, ଭଗବଦ୍ ଭକ୍ତ କିମ୍ବା ଗୁଣୀ ବୋଲି ପ୍ରଶଂସା କରେ, ତାହା ହେଲେ ଆମର ତାହା ବିଶ୍ୱାସ ହୁଏ ନାହିଁ । ଏହାର ବିପରୀତରେ କୌଣସି ସତ୍‌ପୁରୁଷଙ୍କୁ କେହି ଯଦି ମିଥ୍ୟାଚାରରେ ନିନ୍ଦିତ କରେ, ତାହା ହେଲେ ଆମେ ତାହା ଶୀଘ୍ର ବିଶ୍ୱାସ କରିଥାଉଁ । ଯାହା ହୃଦୟ ପାପଯୁକ୍ତ, ସେ ସର୍ବତ୍ର ପାପକୁ ହିଁ ଦେଖେ । ଦୁଇ ସହୋଦର ଭାଇଭଉଣୀ ଶୁଦ୍ଧ ଚିତ୍ତରେ ଏକାନ୍ତରେ ହାସ କୌତୁକରେ ଯଦି ମଜ୍ଜି ଯାଇ ଥାଆନ୍ତି, ତାହାହେଲେ ତାହା ଦେଖିବା ମାତ୍ରେ ସର୍ବପ୍ରଥମେ ଆମେ ତାଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଁ ଓ ନିନ୍ଦା କରୁ । ନିଜେ ଦୋଷୀ ହୋଇଥିବାରୁ ଆମେ ଶୀଘ୍ର ଅନ୍ୟର ଦୋଷାଦୋଷ ନ ବୁଝି ଅନ୍ୟକୁ ଦୋଷୀ ସାବ୍ୟସ୍ତ କରୁଁ । କାହାଠାରେ କୌଣସି ଦୋଷଥିଲେ ଓ ତାହା କେହି ପ୍ରକାଶ କଲେ ଆମକୁ ତାହା ଖରାପ ଲାଗେ । ପୁନଶ୍ଚ ବିନା ଦୋଷରେ ଯଦି ମିଥ୍ୟା ଦୋଷାରୋପ କରାଯାଏ, ତାହା ଅତ୍ୟନ୍ତ ଖରାପ ଲାଗେ । କିନ୍ତୁ ନିନ୍ଦାକାରୀ ସ୍ୱାର୍ଥପର ଲୋକମାନଙ୍କର ଏତେ ଆବଶ୍ୟକ କ'ଣ ଯେ, ସେମାନେ ସତ୍ୟାସତ୍ୟକୁ ଏତେ ଘଣ୍ଟାଚକଟା କରନ୍ତି, ସେମାନେ ତ କୌଣସି ଘଟଣାକୁ କେବଳ ଦେଖି ଅନୁମାନ କରନ୍ତି ଓ ଅନ୍ୟଠାରୁ ଶୁଣି ସତ୍ୟ ବୋଲି ତାହା ପ୍ରଚାର କରନ୍ତି । ପ୍ରବାଦ ଅଛି ଯେ ଏହି ଅପଯଶ ପୂର୍ବଜନ୍ମର କୌଣସି ଅପକର୍ମ ଯୋଗୁଁ ମିଳିଥାଏ ।

ସୂତ କହିଲେ—"ମୁନିଗଣ ! ଯେତେବେଳେ ଭଗବାନ୍ ସତ୍ରାଜିତଙ୍କୁ ମଣି ମାଗିଲେ ଓ ସତ୍ରାଜିତ ନିଜ ଘରକୁ ଆସି ନିଜର ସାନ ଭାଇ ପ୍ରସେନଙ୍କୁ ସେ ବିଷୟ କହିଲେ ଯେ, 'ଭାଇ ! ଯଦି ତୁ ସମ୍ମତି ପ୍ରଦାନ କରିବୁ, ତାହା ହେଲେ ଏହି ମଣିକୁ ମୁଁ

ଉଗ୍ରସେନଙ୍କୁ ଦେଇ ଦେବ, ଆମର ଏହା କଣ ହେବ ? ଆମର ଭରଣ ପୋଷଣ ଓ ଦାନ ପୁଣ୍ୟାଦିର ସମସ୍ତ ଭାର ରାଜ୍ୟ ବହନ କରିବ'' ।

ଏହା ଶୁଣି ପ୍ରସେନ କୁପିତ ହୋଇ କହିଲା- ''ଭାଇ ! ଆପଣ କି କଥା କହୁଛନ୍ତି ? ନିଜ ଉପାର୍ଜିତ କୌଣସି ଅତି ମୂଲ୍ୟବାନ ବସ୍ତୁକୁ କ'ଣ କେହି କେବେ ଅନ୍ୟକୁ ଦେଇ ପାରେ ? ଶ୍ରୀକୃଷ୍ଣ କହନ୍ତୁ, ବଳରାମ କହନ୍ତୁ ଅଥବା ସ୍ୱୟଂ ମହାରାଜ ଉଗ୍ରସେନ କହନ୍ତୁ ନା କାହିଁକି, ଆମେ ନିଜର ମଣିକୁ କଦାପି ଦେବା ନାହିଁ ।''

ସତ୍ରାଜିତ କହିଲା—''ତାହା ହେଲେ ଠିକ୍ ଅଛି, ତୁମର ଯାହା ଇଚ୍ଛା, ତାହା ହେଉ । ମୁଁ ମଧ୍ୟ ଶ୍ରୀକୃଷ୍ଣଙ୍କୁ ମନା କରି ଦେଇଛି'' । ଏହା କହି ସତ୍ରାଜିତ ଚୁପ୍ ହୋଇଗଲା ।

ଏବେ ପ୍ରସେନ ସନ୍ଦେହରେ ପଡ଼ିଲା । ସେ ଯେତେବେଳେ ଯେଉଁ ଆଡ଼େ ଗଲା, ସେହି ମଣିକୁ ସଙ୍ଗରେ ନେଇ ଗଲା । ଥରେ ସେ ନିଜର ବଡ଼ଭାଇ ସତ୍ରାଜିତର ଅନୁମତି ନେଇ ସେହି ମଣିକୁ ଗଳାରେ ପିନ୍ଧି ଅଶ୍ୱ ଆରୋହଣ କରି ବନକୁ ମୃଗୟା କରିବା ପାଇଁ ଗଲା । ସେ ଶିକାର କରିବାକୁ ବହୁ ଦୂରକୁ ଚାଲିଗଲା । ଦୁର୍ଯୋଗକୁ ସେ ଏକ ବିରାଟ ସିଂହ ହାବୁଡ଼ରେ ପଡ଼ିଲା । ପୂର୍ବ ଜନ୍ମରେ ସେହି ସିଂହ କଳିଙ୍ଗ ରାଜ୍ୟ ରାଜାଙ୍କର ପୁଅ ଥିଲା । ସେ କ୍ରୋଧରେ ଜଣେ ବ୍ରାହ୍ମଣଙ୍କୁ ଅପମାନ ଦେଇଥିଲା । ବ୍ରାହ୍ମଣ ଶାପ ଦେଇଥିଲେ ଯେ—''ଯା, ତୁ ସିଂହ ହୋଇ ଯା'' । ସେହି ଦିନଠାରୁ ସେ ସେହି ବନ ମଧ୍ୟରେ ସିଂହ ହୋଇ ରହିଥିଲା । ପୂର୍ବ ଜନ୍ମରେ ପ୍ରସେନ ସହିତ ତାହାର ବୈରତା ଥିଲା । ଯେଉଁ ଘଟଣା ଇହ ଜନ୍ମରେ ଘଟେ, ସେଥିରେ ପୂର୍ବ ଜନ୍ମର ସଂସ୍କାର ବିଦ୍ୟମାନ ଥାଏ । ପୂର୍ବ ଜନ୍ମର ସମ୍ବନ୍ଧ ବିନା ପ୍ରେମ ବା ଦ୍ୱେଷ ଜନ୍ମେ ନାହିଁ । ଆମେ ମନ ମଧ୍ୟରେ ବହୁତ ଇଚ୍ଛା କରୁ ଯେ, ଅମୁକକୁ ସ୍ନେହ କରିବୁ ନାହିଁ, କିନ୍ତୁ ଈଶ୍ୱର ତାଡ଼ନାରେ ଆମେ ତା ଆଡ଼କୁ ଆକର୍ଷିତ ହୋଇ ଥାଉ । ସେହିପରି ଆମେ କାହା ସହିତ ଶତ୍ରୁତା କରିବାକୁ ନ ଚାହୁଁଥିଲେ ମଧ୍ୟ ତାଙ୍କୁ ଦେଖିବାମାତ୍ରେ ଏପରି କ୍ରୋଧ ଜାତ ହୁଏ ଯେ, ଈଶ୍ୱର ଚାହେଁ ତାହାର ପ୍ରାଣ କିପରି ନାଶ କରି ଦିଅନ୍ତି ।

ସିଂହକୁ ଦେଖି ପ୍ରସେନ ତା ପଛରେ ନିଜର ଅଶ୍ୱ ଉପରେ ବସି ଧାଇଁଲା । ସିଂହ ମଧ୍ୟ ତା ଉପରକୁ ଲମ୍ଫ ପ୍ରଦାନ କଲା । ଉଭୟଙ୍କ ମଧ୍ୟରେ ଅନେକ ସମୟ ଧରି ଯୁଦ୍ଧ ହେଲା । ଶେଷରେ ସିଂହ ପ୍ରସେନ ଓ ଅଶ୍ୱଙ୍କୁ ମାରି ଦେଲା । ପ୍ରସେନ ମରିଯିବାରୁ ସିଂହ ସେହି ଝଲସି ଉଠୁଥିବା ମଣିକୁ ନେଇ ସେଠାରୁ ଚାଲିଗଲା । ଦୈବ ଯୋଗକୁ ସେତେ-ବେଳେ ''ଋକ୍ଷ'' ରାଜ୍ୟର ରାଜା ଚିରଂଜୀବୀ ଜାମ୍ବବାନ ନିଜ ଗୁମ୍ଫା ମଧ୍ୟରୁ ବାହାରି ଏଣେତେଣେ ବୁଲୁଥାଏ । ଗିରି ଗୁହାକୁ ଯାଉଥିବା ସିଂହ ନିକଟରେ ଥିବା ସେହି ମଣି

ଉପରେ ତାହାର ଦୃଷ୍ଟି ପଡ଼ିଲା । ଏପରି ତେଜୋମୟ ମଣିକୁ ଦେଖି ସେ ଇଚ୍ଛାକଲା, ଏହା ତ ମୋ ପିଲାଙ୍କ ପାଇଁ ଅତି ସୁନ୍ଦର ଖେଳନା ହେବ । ଏହା ଭାବି ସେ ସିଂହଠାରୁ ତାହା ଛଡ଼ାଇ ଆଣିବାକୁ ଚାହିଁଲା । ସିଂହ କିନ୍ତୁ ତାହା ଦେବାକୁ ଚାହୁଁ ନ ଥିଲା । ତେଣୁ ଦୁଇ ଜଣଙ୍କ ମଧ୍ୟରେ ଯୁଦ୍ଧ ହେଲା । ବୃଦ୍ଧ ଜାମ୍ବବାନ କବଳରୁ ଅବା ସାମାନ୍ୟ ସିଂହ କିପରି ରକ୍ଷା ପାଆନ୍ତା ? ଋକ୍ଷରାଜ (ଭାଲୁକ) ସେହି ସିଂହରାଜକୁ ମାରିଦେଲା ଓ ସ୍ୟମନ୍ତକ ମଣିକୁ ନେଇ ନିଜର ଦିବ୍ୟ ଗୁମ୍ଫା ମଧ୍ୟରେ ପ୍ରବେଶ କଲା ।

ଗୁହା ଭିତରେ ପ୍ରବେଶ କରି ଜାମ୍ବବାନ୍ ସେହି ମଣିଟିକୁ ନିଜର ଶ୍ରେଷ୍ଠ ପିଲାଙ୍କୁ ଖେଳିବାପାଇଁ ଦେଲା । ଧାଇ ସେହି ମଣିକୁ ଧରି ପ୍ରେମପୂର୍ବକ ଶ୍ରେଷ୍ଠ ପିଲାଙ୍କୁ ଖେଳାଇଲା । ଘୋର ଅନ୍ଧକାରମୟ ସେହି ଗୁହା ମଣି ଯୋଗୁଁ ଆଲୋକିତ ହୋଇ ଉଠିଲା ।

ଏଣେ ଯେତେବେଳେ ସନ୍ଧ୍ୟା ସୁଦ୍ଧା ପ୍ରସେନ ନ ଫେରିଲା ସତ୍ରାଜିତ ଅତ୍ୟନ୍ତ ଚିନ୍ତିତ ହେଲା । ପରଦିନ ମଧ୍ୟ ସେ ନ ଆସିବାରୁ ନିଜେ ବନ ମଧ୍ୟକୁ ତାକୁ ଖୋଜିବା ପାଇଁ ଗଲା । କିନ୍ତୁ ଭାଇର ସନ୍ଧାନ କେଉଁଠାରେ ପାଇଲା ନାହିଁ । ସେ ପ୍ରଥମରୁ ସନ୍ଦେହ କରୁ ଥିଲା ଯେ, "ଶ୍ରୀକୃଷ୍ଣ ମାଗିବା ସତ୍ତ୍ୱେ ମୁଁ ତାଙ୍କୁ ମଣି ଦେଇ ନାହିଁ, ତେଣୁ ସେ ମୋର କୌଣସି ନା କୌଣସି ଅନିଷ୍ଟ କରିବେ ।" ଏହି ଘଟଣାରୁ ସେ ନିଶ୍ଚିତ ହେଲା ଯେ ଏହା ଶ୍ରୀକୃଷ୍ଣଙ୍କର କାର୍ଯ୍ୟ । ଲୋକମାନେ ତ ଅନ୍ୟର ନିନ୍ଦା ଶୁଣିଲେ ଆନନ୍ଦିତ ହୁଅନ୍ତି, ମିଥ୍ୟା ସହାନୁଭୂତି ପ୍ରକାଶ କରି ଲୋକମାନେ କହିବାକୁ ଲାଗିଲେ—"ସତ୍ରାଜିତ ! କ'ଣ ହେଲା ? ଏ ପର୍ଯ୍ୟନ୍ତ କ'ଣ ତୁମ ଭାଇ ଫେରି ନାହିଁ ?"

ସତ୍ରାଜିତ ଦୁଃଖ ପ୍ରକାଶ କରି କହିଲା—"ସେ ଆଉ କ'ଣ କେବେ ଫେରିବ ? ତାକୁ ତ କେହି ଏପରି ସ୍ଥାନରେ ପହଞ୍ଚାଇ ଦେଇଛି, ଯେଉଁଠାରୁ କେହି କେବେ ଫେରି ଆସନ୍ତି ନାହିଁ ।"

ଏହାଶୁଣି ଲୋକମାନେ କହିଲେ—"କିଏ ତାଙ୍କ ପ୍ରାଣନାଶ କଲା ? ଆପଣଙ୍କର ତ କାହାରି ସହିତ ଶତ୍ରୁତା ନାହିଁ ? ଆପଣ ତ କାହାରି କେବେ ଅନିଷ୍ଟ କରିନାହାନ୍ତି ? ଅନ୍ୟକୁ ସର୍ବଦା ଯଥାଶକ୍ତି ସାହାଯ୍ୟ କରନ୍ତି ?"

ସତ୍ରାଜିତ କହିଲା —"ଏ ଧନ ଏପରି ଖରାପ ଜିନିଷ ଯେ, ତାହା ଯୋଗୁଁ ଭଲ ଭଲ ଲୋକଙ୍କର ମନ ବଦଳିଯାଏ । ଆମର ତ କାହାରି ସହିତ ବୈରଭାବ ନାହିଁ । କିନ୍ତୁ ସେ କଣ୍ଠରେ ମଣି ପିନ୍ଧି ଯାଇଥିଲା । ମୁଁ ତାକୁ ମନା କରି କହିଥିଲି ଯେ—ଭାଇ ! ଏପରି ବହୁମୂଲ୍ୟ ବସ୍ତୁକୁ ଏକାହୋଇ ସଙ୍ଗରେ ନେଇଯାଆନ୍ତି ନାହିଁ; କିନ୍ତୁ ସେ ମାନିଲା ନାହିଁ । ସେ କହିଲା—ଭାଇ ! ଏ ମଣିତେଜରେ ମୃଗ ଜଳକା ହୋଇଯିବ, ତେଣୁ

ତାଙ୍କୁ ମାରିବା ପାଇଁ ମୋତେ ସୁବିଧା ହେବ । ମୁଁ ଜାଣିପାରୁଛି, କେହି ମଣି ଲୋଭରେ ତା' ପିଛା ଧରି ତାଙ୍କୁ ମାରି ଦେଇଛନ୍ତି । ପ୍ରସେନ ଏକା ହୋଇ ବନକୁ ଯାଇଥିଲା, ତେଣୁ ତାଙ୍କୁ ଏକୁଟିଆ ଦେଖି ମାରିଦେଇ କେହି ମଣିଟିକୁ ବୋଧହୁଏ ନେଇଯାଇଛି । ଏବେ ସେ ଘୋର ଅରଣ୍ୟ ମଧ୍ୟରେ ତାଙ୍କୁ ଖୋଜିବାକୁ ଯିବ କିଏ ?"

ଲୋକମାନେ ପଚାରିଲେ—"ଆପଣ ତ କାହାକୁ ହେଲେ ସନ୍ଦେହ କରୁଥିବେ ?"

କିନ୍ତୁ ସମସ୍ତ ଶତ୍ରାଜିତ ସେ ଗମ୍ଭୀର ଭାବରେ କହିଲେ—"ଭାଇ ! ଆଖିରେ ନ ଦେଖି, କାହା ନାମ ମୁଁ କହିବି କିପରି ? ଦିନେ ଶ୍ରୀକୃଷ୍ଣ ମୋତେ ଡକାଇ ଅତି ଆଗ୍ରହରେ କହିଥିଲେ—'ସେ ମଣିକୁ ମୋତେ ଦେଇ ଦେ ।' ମୁଁ ତାଙ୍କୁ ମନାକରିଥିଲି । ମୁଁ ଭାବୁଥିଲି ଯେ ବଳବାନ୍ ବ୍ୟକ୍ତି ସହିତ ବୈରତା କରିବା ଉଚିତ୍ ନୁହେଁ । କିନ୍ତୁ ପ୍ରସେନ କୌଣସି ପ୍ରକାରେ ଏଥିରେ ରାଜି ହେଲାନାହିଁ । ତାହାର ପରିମାଣ ସ୍ୱରୂପ ହୁଏ ତ ତାଙ୍କୁ ମୃତ୍ୟୁବରଣ କରିବାକୁ ପଡ଼ିଥିବ ।"

ଲୋକମାନେ ରହସ୍ୟମୟ ଢଙ୍ଗରେ ମୁଣ୍ଡହଲାଇ କହିଲେ—"ହଁ, କଥାଟା ଏଇଠି ଥିଲା । ଭାଇ ! ବଡ଼ ଲୋକଙ୍କର ବଡ଼ କଥା ।"

ଏହି କଥା ଜଣକଠାରୁ ଅନ୍ୟ ଜଣେ ଓ ତାଠାରୁ ଅନ୍ୟମାନେ ଶୁଣି ଦ୍ୱାରକା-ସାରା ଏହା ପ୍ରଘଟ ହୋଇଗଲା ଓ ସମସ୍ତେ ଫୁସ୍‌ଫାସ ହେବାକୁ ଲାଗିଲେ । ଲୋକମାନେ ହାଟ, ବାଟ ଘରଅଡ଼େ ଏହି ବିଷୟ ଆଲୋଚନା କରୁ କରୁ ଧୀରେ ଧୀରେ କଥା ପ୍ରଘଟ ହେବାକୁ ଲାଗିଲା । କେହି କହିଲା—"ଆପଣ କିଛି ଶୁଣିଛନ୍ତି ?" ଅନ୍ୟଜଣେ କହିଲା—"କାହିଁ, ନାହିଁ ତ ! ମୁଁ କିଛି ଶୁଣିନାହିଁ ।" "ଅରେ ଭାଇ ! ଶ୍ରୀକୃଷ୍ଣ ପ୍ରସେନକୁ ବନ ମଧ୍ୟରେ ମାରିଦେଲେ ।" ସେ ପୁନଶ୍ଚ ପଚାରିଲା—"ପ୍ରସେନ ସହିତ ଶ୍ରୀକୃଷ୍ଣଙ୍କର କ'ଣ ବୈରତା ଥିଲା ?" ସେ ଲୋକଟି କହିଲା—"ଅରେ ନାହିଁରେ ଭାଇ ! ପଇସା ସବୁ-କିଛିର କାରଣ ହୁଏ । ମଣି ଲୋଭରେ କୃଷ୍ଣ ତାଙ୍କୁ ମାରିଦେଲେ ।" ଏହିପରି ଭାବରେ ବାୟୁବେଗରେ ଏହି କଥା ସମଗ୍ର ଦ୍ୱାରକା ପୁରୀରେ ପ୍ରଚାର ହୋଇଗଲା । ଉଦ୍ଧବ ମଧ୍ୟ ଏ କଥା ଶୁଣିବାକୁ ପାଇଲେ । ସମସ୍ତେ କେବଳ ଏହି କଥା ଚର୍ଚ୍ଚା କରିବାକୁ ଲାଗିଲେ । ଉଦ୍ଧବ ଯାଇ ଭଗବାନଙ୍କୁ କହିଲେ—"ପ୍ରଭୋ ! ଆପଣଙ୍କର ଅପକୀର୍ତ୍ତି ବର୍ତ୍ତମାନ ଦ୍ୱାରକାସାରା ପ୍ରଚାର ଚାଲିଛି ।"

ଭଗବାନ କହିଲେ—"ଭାଇ ! ମୁଁ ତ ଏପରି କୌଣସି ମନ୍ଦକାର୍ଯ୍ୟ କରି ନାହିଁ ଯେ, ଲୋକମାନେ ମୋର ନିନ୍ଦା କରିବେ ?"

ଉଦ୍ଧବ କହିଲେ—"ଭଗବାନ୍ ! ସେହି ସ୍ୟମନ୍ତକ ମଣିକୁ ଗଳାରେ ପିନ୍ଧି ସତ୍ରାଜିତଙ୍କ ଭାଇ ପ୍ରସେନ କାଲି ବନକୁ ମୃଗୟା କରିବାପାଇଁ ଯାଇଥିଲା । ସେ ଏ

ପର୍ଯ୍ୟନ୍ତ ଫେରିନାହିଁ । ସମସ୍ତେ କହୁଛନ୍ତି—ଶ୍ରୀକୃଷ୍ଣ ବନକୁ ଯାଇ ତାକୁ ମାରିଦେଇ ମଣିଟିକୁ ତା'ଠାରୁ ନେଇ ଆସିଛନ୍ତି । ସତ୍ରାଜିତ କହୁଛି ଯେ, ଶ୍ରୀକୃଷ୍ଣ ମୋତେ ତାହା ମାଗିଥିଲେ, ମୁଁ ମନା କରି ଦେବାରୁ ଏ ପ୍ରକାର ଦୁଃଖଦ ଘଟଣା ଘଟିଲା ।"

ଭଗବାନ କହିଲେ—"ଉଦ୍ଧବ ! ଜଣେ ନିଏ, କିନ୍ତୁ ଅନ୍ୟଜଣକ ନାଁ ହୁଏ । ଏ ମିଥ୍ୟା କଳଙ୍କ ବୃଥାଟାରେ ମୋ ଉପରେ ଲଦି ଦିଆ ହେଉଛି । ମୁଁ ତ ପ୍ରସେନକୁ ଆଦୌ ଦେଖିନାହିଁ । ମାରିବା କଥା କହିଲା କିଏ ?"

ଉଦ୍ଧବ କହିଲେ—"ମହାରାଜ ! ଆପଣ ମୋତେ କ'ଣ ଏ କଥା କହୁଛନ୍ତି, ମୁଁ କ'ଣ ଜାଣେ ନାହିଁ ଯେ ଆପଣଙ୍କ ନିକଟରେ ମଣି କେତେ ନଗଣ୍ୟ ବସ୍ତୁ ? ଆପଣଙ୍କ ସଙ୍କଳ୍ପ ମାତ୍ରେ ଏହିପରି ଅସଂଖ୍ୟ ମଣି ଆସିଯାଇ ପାରେ । କିନ୍ତୁ ଲୋକଙ୍କ ମୁହଁରେ ତ ବାଡ଼ ବତା ନାହିଁ, ଲୋକମାନେ ସାଧାରଣତଃ ନିନ୍ଦାପ୍ରିୟ । ବିଶେଷ କରି କୌଣସି ସମ୍ଭ୍ରାନ୍ତ ପୁରୁଷଙ୍କର ନିନ୍ଦା ଯଦି ହୁଏ, ତାହାହେଲେ ସେମାନେ ବଡ଼ ଆନନ୍ଦିତ ହୁଅନ୍ତି ।"

ଭଗବାନ କହିଲେ "ତାହାହେଲେ ମୋର ବର୍ତ୍ତମାନ୍ କର୍ତ୍ତବ୍ୟ କ'ଣ ?"

ଉଦ୍ଧବ କହିଲେ—"ମହାରାଜ ! ଏବେ ଆପଣଙ୍କୁ ଯେପରି ହେଉ ସେହି ମଣିର ଅନୁସନ୍ଧାନ କରିବାକୁ ହେବ । ତେବେ ଯାଇ ଆପଣଙ୍କର ଏହି କଳଙ୍କ ଦୂର ହୋଇପାରିବ । ତା' ନ ହେଲେ ଲୋକମାନଙ୍କର ବିଶ୍ୱାସ ହେବ ଯେ ଆପଣ ସେହି ମଣି ଲୋଭରେ ତାକୁ ମାରିଛନ୍ତି ।"

ଭଗବାନ କହିଲେ—"ଅଚ୍ଛା ଠିକ୍ ଅଛି, କିନ୍ତୁ ମୁଁ ଏକୁଟିଆ ଯିବି ନାହିଁ । ଏକୁଟିଆ ଯାଇ ଯଦି ମଣିଟିକୁ ପାଇଯାଏ, ତାହାହେଲେ ଲୋକମାନେ ପୁନଶ୍ଚ କହିପାରନ୍ତି ଯେ, ମଣିଟି ତାଙ୍କ ପାଖରେ ରଖି ମିଛଟାରେ ଖୋଜୁଥିଲେ । ବହୁତ ଅପଯଶ ହେବାର ଦେଖି ସେ ଏହା ବାହାର କଲେ । ତେଣୁ ବହୁ ସଂଖ୍ୟାରେ ନଗରବାସୀ, ପ୍ରସେନଙ୍କର ଅନ୍ତରଙ୍ଗ ଏବଂ ସମ୍ବନ୍ଧୀୟ ଲୋକଙ୍କୁ ସଙ୍ଗରେ ନେଇ ମୁଁ ତାହା ଖୋଜିବା ପାଇଁ ଯିବି ।"

ଉଦ୍ଧବ ଏ କଥାକୁ ସମର୍ଥନ କଲେ । ନଗରର ପ୍ରତିଷ୍ଠିତ ବିଶିଷ୍ଟ ଲୋକମାନଙ୍କୁ ଡକାଗଲା । ପ୍ରସେନର ବହୁତ ଆତ୍ମୀୟ ଓ ବନ୍ଧୁବାନ୍ଧବଙ୍କୁ ସଙ୍ଗରେ ନିଆଗଲା । ଏମାନଙ୍କୁ ନେଇ ନିଜ ଉପରେ ଲଦାଯାଉଥିବା ବୃଥା କଳଙ୍କକୁ ପରିମାର୍ଜିତ କରିବା ପାଇଁ ଭଗବାନ ଶ୍ରୀକୃଷ୍ଣ ପ୍ରସେନକୁ ଖୋଜିବା ପାଇଁ ବନକୁ ଗଲେ । ଅଶ୍ୱର ଟାପୁଚିହ୍ନ ଦେଖି ଦେଖି ସେମାନେ ବହୁତ ଦୂର ପର୍ଯ୍ୟନ୍ତ ଚାଲିଗଲେ । ଘୋର ଅରଣ୍ୟ ମଧ୍ୟରେ ଅଶ୍ୱ ଓ ପ୍ରସେନ ମରି ପଡ଼ିଥିବାର ସମସ୍ତେ ଦେଖିଲେ । ଭଗବାନ୍ କହିଲେ—"ଦେଖ,

ଭାଇମାନେ ! ଅଶ୍ୱ ଓ ପ୍ରସେନ ତ ଏଠାରେ ମରି ପଡ଼ିଛନ୍ତି । ପରୀକ୍ଷା ନିରୀକ୍ଷା କରି ଭଲ ଭାବରେ ସମସ୍ତେ ଦେଖ ଯେ, ସେ କୌଣସି ଅସ୍ତ୍ରଶସ୍ତ୍ରରେ ମରି ନାହାନ୍ତି । ସିଂହ ପଞ୍ଝାର ନଖଚିହ୍ନ ଏମାନଙ୍କ ଶରୀରରେ ସ୍ପଷ୍ଟ ଦେଖାଯାଉଛି । ବସୁଧା ଉପରେ ସିଂହର ପଞ୍ଝାଚିହ୍ନ ମଧ୍ୟ ପଡ଼ିଛି । ଏଥିରୁ ଜଣା ପଡ଼ୁଛି, କୌଣସି ଏକ ସିଂହ ଏହାଙ୍କୁ ମାରି ଦେଇଛି । ପୁନଶ୍ଚ ଚାଲ ଦେଖିବା, ମଣି ନିଶ୍ଚୟ ଏହି ନିକଟରେ କୌଣସି ସ୍ଥାନରେ ପଡ଼ିଥିବ ।''

ସମସ୍ତେ ପ୍ରସେନର ପୋଷାକ ପତ୍ର ଅଡ଼େଇ ଦେଖିଲେ; କିନ୍ତୁ ମଣି ସେଠାରେ ପାଇଲେ ନାହିଁ । ଭଗବାନ କହିଲେ—''ଅଚ୍ଛା, ଆଗକୁ ଚାଲ । ସମ୍ଭବତଃ ଆଗକୁ ଖୋଜିଲେ ମିଳିଯାଇ ପାରେ ।'' ଏହା ଶୁଣି ସମସ୍ତେ ସିଂହର ପାଦ ଚିହ୍ନ ଦେଖି ଦେଖି ଅଗକୁ ଚାଲିଲେ । ଆଗକୁ ଯାଇ ସେମାନେ ଗିରିଗୁହା ସମ୍ମୁଖରେ ସିଂହ ମରି ପଡ଼ିଥିବାର ଦେଖିଲେ । ଭଗବାନ୍ କହିଲେ—''ଏହି ସିଂହ ନିଶ୍ଚୟ ପ୍ରସେନକୁ ମାରିଛି । ସେ ମଣିକୁ ନେଇ ଅସିଥିବ ଓ ମଣି ଲୋଭରେ ଅନ୍ୟ କେହି ବୋଧହୁଏ ଏ ସିଂହକୁ ମାରି ଦେଇଛି । ହେଇ ଦେଖ, ଏଠାରେ ଭାଲୁର ପାଦଚିହ୍ନ ଓ ବାଳ ପଡ଼ିଛି । ଏଥିରୁ ଜଣାପଡ଼ୁଛି ଭାଲୁ ଏ ସିଂହ ସହିତ ଯୁଦ୍ଧ କରି ଏହାକୁ ମାରି ଦେଇଛି ଓ ମଣିକୁ ନେଇ କେଉଁଆଡ଼େ ପଳାଇଛି । ଚାଲ, ଭାଲୁର ମଧ୍ୟ ସନ୍ଧାନ ନେବା ।''

ଏହାଶୁଣି ସମସ୍ତେ ଭାଲୁର ପାଦଚିହ୍ନ ଉଣ୍ଡି ଉଣ୍ଡି ଆଗେଇ ଚାଲିଲେ । ସମ୍ମୁଖରେ ସେମାନେ ଭଲ୍ଲୁକରାଜ ଜାମ୍ବବାନର ରାଜଧାନୀ (ଜମ୍ବୁ ନଗରୀ) ଦେଖି ପାରିଲେ । ତାହାର ଚତୁର୍ଦ୍ଦିଗ ପର୍ବତ ବେଷ୍ଟିତ । ବଡ଼ ବଡ଼ ବୃକ୍ଷ ତା ମଧ୍ୟରେ ବିରାଜମାନ । ପର୍ବତର ଏକ ବିରାଟ ଗୁହା ସେମାନେ ମଧ୍ୟ ସେଠାରେ ଦେଖିବାକୁ ପାଇଲେ ।

ଭଗବାନ କହିଲେ—''ଭଲ୍ଲୁକରାଜ ସେହି ମଣିକୁ ନେଇ ବୋଧହୁଏ ଏହି ଗୁହା ମଧ୍ୟରେ ଅଛି । ଜଣାପଡ଼ୁଛି, ଏହି ଗୁହା ଖୁବ୍ ବଡ଼ ଓ ବହୁଦୂର ପର୍ଯ୍ୟନ୍ତ ବିସ୍ତାରିତ । ଏହା ଭିତରକୁ ଚାଲ ପ୍ରବେଶ କରିବା ।''

ପ୍ରସେନର ମିତ୍ର ଓ ଆତ୍ମୀୟସ୍ୱଜନ କହିଲେ –''ଯଦୁନନ୍ଦନ ! ଏହା ଭିତରକୁ ପ୍ରବେଶ କରିବାପାଇଁ ଆମ୍ଭମାନଙ୍କର ତ ସାହସ ହେଉନାହିଁ । ଲୋକମାନେ ଆପଣଙ୍କ ଉପରେ ଯେଉଁ ମିଥ୍ୟା କଳଙ୍କ ଲଦି ଦେଇଥିଲେ, ତାହା ତ ଦୂର ହୋଇଗଲା । ପ୍ରସେନକୁ ସିଂହ ମାରିଛି ଓ ସିଂହକୁ ଭାଲୁ ମାରିଛି, ଏହିକଥା ତ ପ୍ରମାଣିତ ହେଲା, ଏବେ ତ ମଣି ମିଳୁ ବା ନ ମିଳୁ ସେଥିରେ ଆମ୍ଭମାନଙ୍କର କିଛି ଯାଏ ଅସେ ନାହିଁ ।

ଆମ୍ଭମାନଙ୍କର ପ୍ରାର୍ଥନା ଯେ, ଏ ଘୋର ଅନ୍ଧକାରମୟ ମହା ଭୟଙ୍କର ଗୁହା ମଧ୍ୟକୁ ଆପଣ ପ୍ରବେଶ କରନ୍ତୁ ନାହିଁ । ଚାଲନ୍ତୁ ଦ୍ୱାରକା ଫେରିଯିବା ।"

ଭଗବାନ୍ କହିଲେ -"ନା ଭାଇମାନେ ! ମୁଁ ମଣିକୁ ନ ନେଲେ ଦ୍ୱାରକା କଦାପି ଫେରିବି ନାହିଁ । ଆପଣମାନେ ଏହି ଦ୍ୱାରଦେଶରେ ରହି ମୋତେ ଅପେକ୍ଷା କରିଥାଆନ୍ତୁ । ମୁଁ ଭିତରକୁ ଯାଉଛି ।"

ସମସ୍ତେ ତ ରାଜି ହେଉ ନ ଥିଲେ; କିନ୍ତୁ ଭଗବାନଙ୍କର ଆଜ୍ଞାକୁ ଲଙ୍ଘନ କରିବାର ସାମର୍ଥ୍ୟ ଅବା କାହାର ? ସମସ୍ତେ ବାଧ୍ୟ ହୋଇ ଦ୍ୱାର ଦେଶରେ ରହିଲେ ଓ ପୀତାମ୍ବରଧାରୀ ଭଗବାନ ଏକା ସାହସ କରି ସେହି ଗୁହା ଭିତରକୁ ପ୍ରବେଶ କଲେ । ଯେତେବେଳେ ବାରଦିନ ପର୍ଯ୍ୟନ୍ତ ପ୍ରତୀକ୍ଷା କରି କରି ସେମାନେ ଭଗବାନଙ୍କୁ ଗୁହା ଭିତରୁ ନ ବାହାରିବାର ଦେଖିଲେ, ସେତେବେଳେ ସମସ୍ତେ ଭୟଭୀତ ହୋଇ ପଡ଼ିଲେ । ସେମାନେ ଭାବିବାକୁ ଲାଗିଲେ—"ଯେଉଁ ଜୀବ ଏତେ ବଳବାନ୍ ଶ୍ରୀକୃଷ୍ଣଙ୍କୁ ଯୁଦ୍ଧରେ ମାରିଥିବ, ସେ କେତେ ବଳବାନ୍ ନ ହୋଇଥିବ ? ସେ ଗୁହାରୁ ବାହାରି ଆମ୍ଭମାନଙ୍କୁ ଯେପରି ନ ମାରୁ ।" ଏହା ଭାବିବା କ୍ଷଣି ସେମାନେ ଭୟରେ ଥରିବାକୁ ଲାଗିଲେ । ସେମାନଙ୍କ ପାଖରେ ଭୋଜନ ସାମଗ୍ରୀ ମଧ୍ୟ ସରି ଯାଇଥିଲା । ଭଗବାନଙ୍କର ତାହାହିଁ ଇଚ୍ଛା ଥିଲା ଯେ, ସେମାନେ ଯେପରି ଦ୍ୱାରକାକୁ ଫେରି ଯାଆନ୍ତୁ । ସେମାନେ ଭଗବାନଙ୍କୁ ନ ଦେଖି ଦ୍ୱାରକାପୁରୀକୁ ମଧ୍ୟ ଫେରି ଗଲେ । ଭଗବାନ ଶ୍ରୀକୃଷ୍ଣଙ୍କୁ ନ ଫେରିବାର ଦେଖି ବସୁଦେବ, ଦେବକୀ, ବଳରାମ, ରୁକ୍ମିଣୀ ଓ ଅନ୍ୟାନ୍ୟ ସମସ୍ତ ବନ୍ଧୁବାନ୍ଧବ ଦୁଃଖାଭିଭୂତ ହୋଇ ପଡ଼ିଲେ । ସମସ୍ତେ ସତ୍ରାଜିତକୁ ନିନ୍ଦାକରି ଗାଳିଦେବାକୁ ଲାଗିଲେ । ସେମାନେ କହିଲେ ଯେ, ସେ ମିଥ୍ୟାକଳଙ୍କ ଆରୋପ କରିଥିବା ଯୋଗୁଁ ଏ ସବୁଘଟଣା ଘଟିଲା । ସମସ୍ତେ ମହାମାୟା ଦୁର୍ଗାଦେବୀଙ୍କୁ ଆରାଧନା କରିବାକୁ ଲାଗିଲେ ଓ ଭଗବାନ ଶ୍ରୀକୃଷ୍ଣ କୁଶଳରେ ଫେରି ଆସିବାପାଇଁ ପ୍ରାର୍ଥନା, ଜପ, ତପ, ଦେବ-ଆରାଧନା ଆଦି କରିବାକୁ ଲାଗିଲେ ।

ଶୌନକ ପଚାରିଲେ—"ହେ ସୂତ ! ଭଗବାନ ଗୁହା ଭିତରୁ କାହିଁକି ଫେରିଲେ ନାହିଁ ? ସେଠାରେ ସେ କ'ଣ କଲେ ?"

ସୂତ କହିଲେ -"ହଁ, ମହାରାଜ ! ଭଗବାନଙ୍କର ସେତେବେଳେ ଆଉ କାମ କ'ଣ ଥିଲା ? ସେ ତ ସେତେବେଳେ କେବଳ ବିବାହ କରିବାରେ ବ୍ୟସ୍ତ ଥିଲେ । ଗୁହା ମଧ୍ୟରେ ବସି ବସି ନିଜ ବିବାହର ଆୟୋଜନ କରୁଥିଲେ । ସେ ଅନ୍ଧକାର ଗୁହା ମଧ୍ୟରୁ ସେ ଯେପରି ଏକ ଅତ୍ୟନ୍ତ ସୁନ୍ଦରୀ ବୋହୂ ପ୍ରାପ୍ତ ହେଲେ, ସେ ପ୍ରସଙ୍ଗରେ ମୁଁ ଆଗକୁ କହିବି, ତାହା ଆପଣମାନେ ମନଯୋଗ ପୂର୍ବକ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ହରି ମୁଁ ଗୀ ମଣି ନହୀଂ ଦଈ ଭାଈ ମମ ମାରେ୍ୟା ।
ଘର ଘର ଫୈଲୀ ବାତ୍ ଶ୍ୟାମ ମନ ମାହିଁ ବିସୂରେ୍ୟା ॥
ମିଥ୍ୟା ଲଗେ୍ୟା କଲଙ୍କ କହୁଁ ହୋଁ ମାର୍ଜନ ଅବହୀଂ ।
ସଂଗ ଲୟେ୍ୟ ବହୁ ଲୋଗ ଚଲେ ମଣି ଖୋଜନ ତବହୀଂ ॥
ହୟ ପ୍ରସେନ ନିରଖେ୍ୟା ମୃତକ, ପୁନି ଖୋଜତ ଆଗେ ଗୟେ ।
ମରେ୍ୟା ସିଂହ ଲଖି ପୁନି ଗୁହା, ଦେଖି ରୀଛକୀ ଘୁସି ଗୟେ ॥



## ଜାମ୍ବବତୀ ଓ ଭଗବାନଙ୍କ ବିବାହ

ଉପଲଭ୍ୟ ହୃଷୀକେଶଂ ମୃତଂ ପୁନରିବାଗତମ୍ ।
ସହ ପତ୍ନ୍ୟା ମଣିଗ୍ରୀବଂ ସର୍ବେ ଜାତମହୋତ୍ସବାଃ ॥ ※

( ଶ୍ରୀ ଭା: ୧୦ସ୍କ, ୫୬ ଅ, ୩୬ ଶ୍ଳୋକ )

---

※ କନ୍ୟା ସହିତ ଭଗବାନ । ଘେନାଇ ଅମୂଲ୍ୟ ରତନ ॥
ହରଷ କରି ସୁରନର । ବିଜୟ କଲେ ଚକ୍ରଧର ॥
ଦେଖି ସାନନ୍ଦ ସର୍ବଜନେ । ମିଳିଲେ କୃଷ୍ଣ ଦରଶନେ ॥
ମଲ୍ଲ ପୁରୁଷ ଯେତେ ଅଛି । କହନ୍ତି କୃଷ୍ଣଙ୍କ ପ୍ରଶଂସି ॥
କନ୍ୟା ସହିତେ ଦାମୋଦର । ପ୍ରବେଶ ଆପଣା ମନ୍ଦିର ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦ମ : ୬୦ଅ)

## ଛପ୍‌ପୟ

**ଅଠାଇଶ ଦିନ** ଲଢ଼େୟା ରୀଛ ପରି ହରି ନହିଁ ହାରେ ।
ନିଜ ସ୍ୱାମୀ ରଘୁନାଥ ସମୁଝି ପୂନି ଚପେର ପଶ୍ଚାତରେ ।।
କନ୍ୟା ଦଈ ବିବାହି ଜାମ୍ବବନ୍ତ ଚଲେ ହରି ନିକସେ ।
ବାରହ ଦିନ ଲଖେଁ ବାଟ ଶ୍ୟାମ କେ ସାଥୀ ଖିସକେ ।।
ଦୁଃଖିତ ଦ୍ୱାରକାମହଁ ସକଲ, ମିଲି ଦୁର୍ଗା ପୂଜନ କରହିଁ ।
କୋହତ ପ୍ରଭୁ କୀ ବାଟ ନିତ, ସତ୍ରାଜିତ୍ କୁଁ ସବ ଶପହିଁ ।।

ଭକ୍ତ ଭଗବାନଙ୍କୁ ଭୁଲି ଯାଇ ପାରେ; କିନ୍ତୁ ଭଗବାନ ଭକ୍ତକୁ କଦାପି ଭୁଲି ପାରନ୍ତି ନାହିଁ, କିମ୍ବା ତା ସହିତ କରିଥିବା ପ୍ରତିଜ୍ଞାକୁ ବି ଭୁଲନ୍ତି ନାହିଁ । ଭୁଲିଯିବା ହେଉଛି ଜୀବର ସ୍ୱଭାବ । ସର୍ବଦା ସ୍ମରଣ ରଖିବା ଭଗବାନଙ୍କର ସ୍ୱଭାବ । ଭଗବାନ ଯାହା କିଛି କରନ୍ତି, ତାହା ଜୀବକୁ ସ୍ମରଣ କରାଇ ଦେବାପାଇଁ ହିଁ କରନ୍ତି । ଯିଏ ଭଗବାନଙ୍କର ମାଡ଼ ସହ୍ୟ କରି ତାଙ୍କୁ ଭଲ ପାଆନ୍ତି, ସେ ଉତ୍ତମ ଭକ୍ତ । ଯେ ତାଙ୍କଠାରୁ ମାଡ଼ ଖାଇ ମଧ୍ୟ ତାଙ୍କୁ ଜାଣି ପାରନ୍ତି ନାହିଁ, ସେ ହେଉଛନ୍ତି ସାଧାରଣ କୋଟିର ଭକ୍ତ । ଭଗବାନଙ୍କୁ ଜାଣିପାରି ଯିଏ ନିଜର ସର୍ବସ୍ୱ ତାଙ୍କୁ ସମର୍ପିତ କରିଦିଏ, ସେ ଅକ୍ଳେଶରେ ସଂସାର ସାଗରରୁ ଚିରଦିନ ପାଇଁ ପାର ହୋଇଯାଏ !

ସୂତ କହିଲେ—"ମୁନିଗଣ ! ମଣିପାଇଁ ଭଗବାନ ଜାମ୍ବବାନଙ୍କ ଗୁହା ମଧ୍ୟକୁ ପ୍ରବେଶ କରି ଦେଖିଲେ ଯେ, ଯେଉଁ ମଣିଟି ଦିନକୁ ଆଠଭାର ସୁବର୍ଣ୍ଣ ଦେଉଥିଲା, ଭାଲୁ ବିଲ ମଧ୍ୟରେ ତାହା ଆଜି ଭାଲୁ ଛୁଆଙ୍କର ଖେଳନା ରୂପେ ବ୍ୟବହୃତ ହେଉଅଛି । ଭଗବାନ ତ ଚୋରି ବିଦ୍ୟାରେ ନିପୁଣ । ବ୍ରଜରେ ଥିଲାବେଳେ ତ ସେତେ ପାଠଶାଠ ପଢ଼ୁ ନ ଥିଲେ, କେବଳ ଚୋରିବୃତ୍ତି କରୁଥିଲେ, ସେଥିପାଇଁ ସେ ଚୋରଙ୍କ ଭଳି ଚୁପ୍‌ଚାପ୍ ଯାଇ ଦେଖିଲେ ଯେ, ଏହା ସେହି ସ୍ୟମନ୍ତକ ମଣି, ସେ ସେଥିରେ ସୁନିଶ୍ଚିତ ହେବାପାଇଁ କିଛି ସମୟ ଲୁଚିଛପି ସେଠାରେ ଠିଆ ହେଲେ । ପିଲାମାନଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଯିବାରୁ ସେମାନେ ଭୟରେ ଚିତ୍କାର କରିବାକୁ ଲାଗିଲେ । ପିଲାମାନଙ୍କର ଧାଈ ଭାବିଲା ଯେ, ପିଲାମାନେ ମିଛଟାରେ କଳକଳ କାନ୍ଦୁଛନ୍ତି । ତେଣୁ ସେ ପିଲାଙ୍କ ପାଖକୁ ଧାଇଁ ଆସିଲା ଓ ସେମାନଙ୍କୁ କୋଳକୁ ନେଇ ପ୍ରେମରେ ଏହି ଶ୍ଳୋକଟି ବୋଲିଲା—

"ସିଂହଃ ପ୍ରସେନମବଧୀତ୍ ସିଂହୋ ଜାମ୍ବବତା ହତଃ ।
ସୁକୁମାର ମା ରୋଦୀସ୍ତବହ୍ୟେଷ ସ୍ୟମନ୍ତକଃ ॥"

ଅର୍ଥାତ୍—ହେ ମୋର ପ୍ରିୟ ଶିଶୁଗଣ ! ଦେଖ, ପ୍ରସେନକୁ ସିଂହ ମାରିଲା, ସିଂହକୁ ତୁମ ପିତା ଜାମ୍ବବାନ ମାରିଲେ ଓ ତା'ଠାରୁ ଏହି ମଣିକୁ ସେ ତୁମ୍ଭମାନଙ୍କପାଇଁ ନେଇ ଆସିଲେ । ଏବେ ଏହି ମଣି ନିଶ୍ଚିତଭାବେ ତୁମ୍ଭମାନଙ୍କର, ତୁମ୍ଭେମାନେ କାନ୍ଦନାହିଁ ।

ଏହି କଥା ଶୁଣି ଭଗବାନ ଦୃଢ଼ନିଶ୍ଚିତ ହେଲେ ଯେ ଏ ହେଉଛି ସେହି ମଣି । ତେଣୁ ସେ ଆଉ ଲୁଚିରହିଲେ ନାହିଁ । ସେ ଯେତେବେଳେ ଆଗେଇଯାଇ ପିଲାଙ୍କଠାରୁ ମଣିଟିକୁ ଛଡ଼ାଇ ଆଣିବାକୁ ବସିଲେ, ସେତେବେଳେ ଧାଈଟି ଡରିଗଲା । ସେ ଏପରି ପୁରୁଷ କେବେ କେଉଁଠି ଦେଖି ନ ଥିଲା । ଭଗବାନ ତା ଆଗରେ ସହସା ଆବିର୍ଭାବ ହୋଇଯିବାରୁ ସେ ଅତ୍ୟନ୍ତ ଭୟଭୀତ ହୋଇ ଖୁବ୍ ବଡ଼ପାଟିରେ ଚିତ୍କାର କଲା । ତାହାର ଚିତ୍କାର ଶୁଣି ସମ୍ମୁଖ ଗୁହାଗର୍ଭରେ ଘୁମାଉଥିବା ଜାମ୍ବବାନ୍ ଶୀଘ୍ର ସେଠାକୁ ଧାଇଁ ଆସିଲା । ସଙ୍ଗେ ସଙ୍ଗେ ସେ ତା ସମ୍ମୁଖରେ ପିତାମ୍ବରଧାରୀ ଏକ ବିଚିତ୍ର ପୁରୁଷଙ୍କୁ ଦେଖିଲା । ତାଙ୍କ ସମୀପରେ ଧାଈ ଓ ପିଲାଗୁଡ଼ିକ ଚିତ୍କାର କରୁଥିଲେ । ସେ ଅତ୍ୟନ୍ତ କୁପିତ ହୋଇ ଯିବାରୁ ତା'ର ବୁଦ୍ଧି ବିବେକ ନଷ୍ଟ ହୋଇଗଲା । ବିଚାର କରିବାର ଶକ୍ତି ରହିଲା ନାହିଁ । ଏଥିପାଇଁ ମହାବୁଦ୍ଧିମାନ ଜାମ୍ବବାନ ମଧ୍ୟ ଭଗବାନ ଶ୍ରୀକୃଷ୍ଣଙ୍କୁ ସାଧାରଣ ପ୍ରାକୃତ ପୁରୁଷ ବୋଲି ମନେକଲା । ସେ ତା ବଳ ଯୋଗୁଁ ଅତି ଅଭିମାନୀ ଥିଲା । ସେ ଭାବୁଥିଲା, ଏ ସଂସାରରେ ତା ପରି ବଳବାନ୍ ଅନ୍ୟ କେହି ନାହିଁ । ସେଥିପାଇଁ ଜଣେ ପ୍ରାକୃତ ପୁରୁଷର ଏପରି ଦୁଃସାହସ ହୋଇଥିବା ମନେକରି ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହେଲା । ଭଗବାନଙ୍କର ପ୍ରଭାବକୁ ଭୁଲି ସେ ତାଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲା । ଭଗବାନ ତ ଲଢ଼ିବାପାଇଁ ସର୍ବଦା ପ୍ରସ୍ତୁତ, ତେଣୁ ସେ ମଧ୍ୟ ତା ସହିତ ଯୁଦ୍ଧ କରିବାକୁ ଲାଗିଲେ । ଭୀଷଣ ଯୁଦ୍ଧ ଚାଲିଲା । ସେ ଭଗବାନଙ୍କୁ କାମୁଡ଼ିବାକୁ ବସିବାକ୍ଷଣି ଭଗବାନ ତା ବାଳଗୁଡ଼ିକୁ ଧରି ଝିଙ୍କି ଆଣୁଥିଲେ । ସେ ବୃକ୍ଷ ଉପାଡ଼ି ପିଟିବାକୁ ବସିବାକ୍ଷଣି ଭଗବାନ ତାହା ମଝିରୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ଦେଉଥିଲେ । ସେ ପଥର ଫିଙ୍ଗିବାକୁ ବସିବାରୁ ତାହା ଭଗବାନଙ୍କ ଉପରେ ଆଦୌ ବାଜୁ ନଥିଲା । ଉଭୟେ ମଧ୍ୟ ଅସ୍ତ୍ର ଶସ୍ତ୍ରରେ ନିପୁଣ ଥିଲେ ଓ ଉଭୟେ ବିଜୟ ଅଭିଳାଷୀ ଥିଲେ । ତେଣୁ ଉଭୟେ ଉଭୟଙ୍କ ପ୍ରହାରରୁ ବଞ୍ଚାଇ ଜଣେ ଅନ୍ୟ ଜଣକୁ ପ୍ରହାର କରି ମାରିଦେବାକୁ ଚାହୁଁଥିଲେ ।

ଏହିପରି ଭାବରେ ଉଭୟଙ୍କ ମଧ୍ୟରେ ନିରବଚ୍ଛିନ୍ନ ଯୁଦ୍ଧ ୨୮ ଦିନ ପର୍ଯ୍ୟନ୍ତ ଚାଲିଲା । ଶେଷକୁ ଜାମ୍ବବାନର ବଳ ହଟିବାକୁ ଲାଗିଲା । ତାହାର ଲଢ଼ିବାର ଉତ୍ସାହ କମି ଆସିଲା । ସତ୍ୟଯୁଗରୁ ଏପର୍ଯ୍ୟନ୍ତ ତାକୁ କେହି ଯୁଦ୍ଧରେ ପରାସ୍ତ କରି ପାରି ନଥିଲେ । କିନ୍ତୁ ଏବେ ତାକୁ ପ୍ରତୀତ ହେଲା ଯେ, ସେ ଆଜି ଯୁଦ୍ଧ କରିବାକୁ ଅସମର୍ଥ ।

ଏ ଲୋକ ଯେଉଁ ଘୁଷ୍ମା ମାରୁଛି, ତାହା ବଜ୍ର ଭଳି ପ୍ରହାର ହେଉଛି । ସେ ଅତିଶୟ ଆଶ୍ଚର୍ଯ୍ୟ ହେଲ ଯେ ଏପରି ବଳବାନ ପୁରୁଷ ତ ସେ ସଂସାରରେ କେବେ ହେଲେ ଦେଖି ନାହିଁ । କେବଳ ତାହାର ପ୍ରଭୁ ଶ୍ରୀ ରଘୁକୁଳତିଳକ ଭଗବାନ ରାଘବେନ୍ଦ୍ର ହିଁ ଏପରି ବଳବାନ୍ ପୁରୁଷ ଥିଲେ । ତାଙ୍କ ବଳ ଅପ୍ରମେୟ ଥିଲା । ଏ ମୋର ସେହି ପ୍ରଭୁ ସୀତାନାଥ ହେବେ କି ଆଉ ? ସେ ଯେତେବେଳେ ପ୍ରେମପୂର୍ଣ୍ଣ ନୟନରେ ଭଗବାନଙ୍କ ମୁଖକୁ ଚାହିଁଲା, ସେତେବେଳେ ତାକୁ ତାଙ୍କ ମୁଖରେ ତ୍ରେତାଯୁଗର ସେହି ଅବଧକୁଳ-ମଣ୍ଡନ ଜାନକୀ-ଜୀବନ ଭଗବାନ କୌଶଳ-କିଶୋରଙ୍କର ଛଟା ଦେଖାଗଲା । ଭଗବାନ୍ ତାହାର ଆନ୍ତରିକ ଭାବକୁ ବୁଝିପାରି ଟିକିଏ ହସିଦେଲେ । ଏହା ଦେଖି ଋକ୍ଷରାଜର ସ୍ମରଣ ଆସିଲା । ସେ ସଙ୍ଗେ ସଙ୍ଗେ ତାଙ୍କ ପାଦତଳେ ପଡ଼ିଗଲା ଓ ଦଣ୍ଡବତ ପ୍ରଣାମ କରି କହିଲା—"ପ୍ରଭୋ ! ମୁଁ ଏବେ ଆପଣଙ୍କୁ ଚିହ୍ନିପାରିଲି । ହେ କୃପାଳୋ ! ଆପଣ ମୋର ସ୍ୱାମୀ । କେବଳ ମୋ ସ୍ୱାମୀ ନୁହନ୍ତି, ଚରାଚର ବିଶ୍ୱର ସ୍ୱାମୀ ଅଟନ୍ତି । ସମସ୍ତଙ୍କର ପାଳନ କର୍ତ୍ତା ଅଟନ୍ତି । ପୁରାଣ ପୁରୁଷ, ଅବ୍ୟୟ, ସର୍ବାଧାର ଓ ସମସ୍ତଙ୍କଠାରୁ ଶ୍ରେଷ୍ଠ ଅଟନ୍ତି । ଆପଣହିଁ ପ୍ରତ୍ୟେକଙ୍କ ଶରୀରରେ ପ୍ରାଣ, ଓଜଃ ବଳ ଓ ଶକ୍ତି ରୂପରେ ବିରାଜମାନ କରୁଛନ୍ତି । ଆପଣ ସମଗ୍ର ବିଶ୍ୱର ରଚୟିତା ଅଟନ୍ତି, ବ୍ରହ୍ମାଦି ଦେବତାଗଣ ଆପଣଙ୍କଠାରୁ ସମ୍ଭୂତ । ଆପଣ ଏ ଚରାଚର ବିଶ୍ୱର ଉପାଦାନ କାରଣ । ଆପଣହିଁ କାଳ ରୂପରେ ପ୍ରତ୍ୟେକଙ୍କୁ ନିୟନ୍ତ୍ରଣ କରୁଅଛନ୍ତି । ଆପଣ ସମସ୍ତ ଆତ୍ମାର ଆତ୍ମା ପରମାତ୍ମା ଅଟନ୍ତି । ଆପଣ ସ୍ୱୟଂ ବିଶ୍ୱମ୍ଭର, ଜଗଦୀଶ୍ୱର ଓ ସର୍ବେଶ୍ୱର ଅଟନ୍ତି ।"

ଭଗବାନ୍ କହିଲେ—"ହେ ଜାମ୍ବବାନ୍ ! ଆପଣ ଏତେ କ'ଣ କହୁଛନ୍ତି, ଆପଣ ତ ହାରିଗଲେ, ତେଣୁ ପ୍ରଥମେ ହାର ମାନି ନିଅନ୍ତୁ । ଏତେ ଅନୁନୟ ବିନୟ ହୋଇ ଅଯଥା ଏଣୁ ତେଣୁ କଥା କହୁଛନ୍ତି କାହିଁକି ?"

ଜାମ୍ବବାନ କହିଲେ—"ଭଗବାନ ! ଆପଣଙ୍କୁ କିଏ ଭଲା ଜିତି ପାରିବ ? ଲଙ୍କା ବିଜୟ ସମୟରେ ମୁଁ ଆପଣଙ୍କ ପୁରୁଷକାର ଦର୍ଶନ କରିଥିଲି । ସମୁଦ୍ର ଆପଣଙ୍କୁ ମାର୍ଗ ଦେଉ ନଥିଲା, ତାକୁ ଆପଣ କିଞ୍ଚିତ୍ କୋପଦୃଷ୍ଟିରେ ଚାହିଁଦେବା ମାତ୍ରେ ତାହାର ଉଦ୍ବେଳିତ ଜଳ ଶାନ୍ତ ହୋଇଗଲା ଓ ଶୁଷ୍କ ହେବାକୁ ଲାଗିଲା । ସେଥିରେ ଥିବା ମତ୍ସ୍ୟ, ମକର, କଚ୍ଛପ, ସର୍ପ ଓ ତିମିଙ୍ଗିଳାଦି ଜଳଚର ପ୍ରାଣୀମାନେ କ୍ଷୁବ୍ଧ ହେଲେ । ଆପଣ ବାଣ ଉଠାଇବା ମାତ୍ରେ ସମୁଦ୍ର ନିଜର ରୂପଧରି ଆପଣଙ୍କ ସମ୍ମୁଖରେ ହାତଯୋଡ଼ି ଆସି ଦଣ୍ଡାୟମାନ ହେଲା ଓ ସେ ଆପଣଙ୍କୁ ଲଙ୍କା ଯିବାର ଉପାୟ ବତାଇ ଦେଲା । ଆପଣ ମଧ୍ୟ ସମୁଦ୍ରର କହିବା ଅନୁସାରେ ତା ଉପରେ ସେତୁ ବାନ୍ଧିଲେ । ସେହି ସେତୁ ଆପଣଙ୍କ ଯଶର କ୍ଷୁଦ୍ର ପ୍ରତୀକ ମାତ୍ର । ଆପଣ ନିଜର ବାଣ ବର୍ଷା କରି ଲଙ୍କାପୁରୀକୁ ବିଧ୍ୱସ୍ତ କରି ଦେଲେ ଓ ରାକ୍ଷସମାନଙ୍କର ଶିରଚ୍ଛେଦ କରି ପର୍ବତ ଆକାରରେ ସେମାନଙ୍କୁ ଗଦାକରି

ଦେଲେ । ଅପଣ ସେହି ରାବଣାଦି ରାକ୍ଷସକୁଳ-ସଂହାରୀ, ବିଭୀଷଣର ଶରଣଦାତା ରାଘବେନ୍ଦ୍ର ଅଟନ୍ତି ।''

ଭଗବାନ ଯେତେବେଳେ ଦେଖିଲେ ଯେ ଜାମ୍ବବାନ ତାଙ୍କୁ ଚିହ୍ନି ପାରିଲେଣି, ସେତେବେଳେ ସେ ହସି ହସି କୃପାପୂର୍ଣ୍ଣ ଦୃଷ୍ଟିରେ ଋକ୍ଷରାଜଙ୍କ ଆଡ଼କୁ ଚାହିଁ ନିଜ କଲ୍ୟାଣକାରୀ କରକମଳ ଦ୍ୱାରା ତା ଅଙ୍ଗକୁ ଆଉଁସି ଦେଲେ । ଭଗବାନଙ୍କ କୃପା ସ୍ପର୍ଶ ମାତ୍ରେ ଋକ୍ଷରାଜଙ୍କର ସମସ୍ତ ପୀଡ଼ା ନାଶ ହୋଇଗଲା । ସେ ପୂର୍ବପରି ସୁସ୍ଥ ହୋଇଗଲେ । ସେତେବେଳେ ଭଗବାନ କୃଷ୍ଣ ଅତ୍ୟନ୍ତ କୃପା ପ୍ରଦର୍ଶନ କରି ନିଜର ପରମଭକ୍ତ ଜାମ୍ବବାନଙ୍କୁ କହିଲେ—''ଋକ୍ଷରାଜ ! ଦେଖ, ମୋ ଉପରେ ମିଥ୍ୟା କଳଙ୍କ ଲଦି ଦିଆଯାଇଛି । ଲୋକମାନେ ମୋତେ ଏହି ସ୍ୟମନ୍ତକ ମଣିର ଅପହରଣକାରୀ ବୋଲି ଭାବି ଦୋଷୀ ସାବ୍ୟସ୍ତ କରୁଛନ୍ତି । ତାହା ଖୋଜି ଖୋଜି ତୁମ ଉପରେ କୃପା କରିବା ଉଦ୍ଦେଶ୍ୟରେ ମୁଁ ତୁମ ଗୁହା ମଧ୍ୟରେ ପ୍ରବେଶ କରିଅଛି ।''

ଏହା ଶୁଣି ଶୌନକ କହିଲେ—''ହେ ସୂତ ! ଭଗବାନ ଯେତେବେଳେ ଜାଣିଥିଲେ ଯେ, ଏ ହେଉଛନ୍ତି ତାଙ୍କ ଭକ୍ତ ଋକ୍ଷରାଜ ଜାମ୍ବବାନ୍ ସେତେବେଳେ ତାଙ୍କୁ ସେ କାହିଁକି ଅଜ୍ଞାନ ମଧ୍ୟରେ ରଖିଲେ ଓ ତାଙ୍କ ସହିତ କାହିଁକି ଅଯଥା ୨୮ ଦିନ ପର୍ଯ୍ୟନ୍ତ ଯୁଦ୍ଧ କଲେ ! ଏହା କ'ଣ ଭଗବାନଙ୍କ କୃପାର ନିଦର୍ଶନ ?''

ସୂତ କହିଲେ—''ହେ ଶୌନକ ! ଭଗବାନ ଯାହା କିଛି କରନ୍ତି, ଭକ୍ତଙ୍କର ଇଚ୍ଛା ପୂର୍ତ୍ତି କରିବା ପାଇଁ ହିଁ କରନ୍ତି । ତାଙ୍କ ଭକ୍ତଙ୍କ ମନରେ ଯେଉଁ ସଙ୍କଳ୍ପ ଜାଗ୍ରତ ହୁଏ, ସେ ତାକୁ କୌଣସି ନା କୌଣସି ରୂପେ ନିଶ୍ଚିତ ଭାବରେ ପୂର୍ତ୍ତି କରନ୍ତି । ଦେଖନ୍ତୁ, ଭଗବାନଙ୍କୁ ଦେଖି ସୂର୍ପଣଖା ଇଚ୍ଛା କରିଥିଲା ଯେ ତାଙ୍କ ସଙ୍ଗରେ ସେ କ୍ରୀଡ଼ା କରିବ । ତେଣୁ ସେ କୁବ୍ଜା ରୂପରେ ଜନ୍ମ ଗ୍ରହଣ କରିବା ପରେ ଭଗବାନ୍ ତାହାର ଇଚ୍ଛା ପୂର୍ତ୍ତି କରିଥିଲେ । ଦଣ୍ଡକାରଣ୍ୟର ମୁନିଋଷିଗଣ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ରୂପକୁ ଦର୍ଶନ କରି ମୁଗ୍ଧ ହୋଇ ଯାଇଥିଲେ । ସେମାନଙ୍କ ମନରେ ସଙ୍କଳ୍ପ ଜାତ ହୋଇଥିଲା ଯେ ଭଗବାନଙ୍କ ସହିତ ନାରୀ ରୂପରେ କିପରି ରମଣ କରିବେ । ଭଗବାନ ସେମାନଙ୍କୁ ଗୋପୀ ରୂପ ପ୍ରଦାନ କରି ଏହି ଯୁଗରେ ତାଙ୍କ ସହିତ ରମଣ କରି ତାଙ୍କ ଇଚ୍ଛା ପୂର୍ତ୍ତି କରିଥିଲେ । ଭଗବଦ୍ ଭକ୍ତଙ୍କ ହୃଦୟରେ ପ୍ରଥମେ ତ କୌଣସି କାମନା ନଥାଏ, ସେମାନେ ଭଗବାନଙ୍କୁ ଭଜନ କରି ତୃପ୍ତ ହେଉ ଥାଆନ୍ତି ; କେବେ ଯଦି କୌଣସି ଇଚ୍ଛା ଜାତହୁଏ ତାହାହେଲେ ଭଗବାନ୍ କୌଣସି ନା କୌଣସି ରୂପରେ ତାହା ପୂର୍ତ୍ତି କରନ୍ତି । ଭଗବାନ ନିଜେ ଯେପରି ସତ୍ୟସଙ୍କଳ୍ପ, ନିଜର ଭକ୍ତମାନଙ୍କୁ ସେହିପରି ସତ୍ୟ ସଙ୍କଳ୍ପ କରି ଗଢ଼ନ୍ତି । ନିଜର ଇଚ୍ଛା ପଛକେ ଅରିକ ପାଇଁ ପୂର୍ତ୍ତି ନ କରନ୍ତୁ, ସେ ଭକ୍ତର ଇଚ୍ଛାକୁ ସର୍ବଦା ପୂର୍ତ୍ତି କରୁ ଥାଆନ୍ତି ।'

"ଯେଉଁ ଜାମ୍ବବାନ ଚିରଞ୍ଜୀବୀ, ଭଗବାନ ବାମନ ରୂପରେ ବଳିର ସର୍ବସ୍ୱ ହରଣ କରି ଯେତେବେଳେ ତାଙ୍କୁ ପାତାଳକୁ ପଠାଇ ଦେଇଥିଲେ, ସେତେବେଳେ ଏହି ଜାମ୍ବବାନ ଯୁବାବସ୍ଥାରେ ପଦାର୍ପଣ କରିଥିଲେ । ଦୁଇ ଘଣ୍ଟା ମଧ୍ୟରେ ସେ ସାତଥର ବ୍ରହ୍ମାଣ୍ଡ ପରିକ୍ରମା କରି ପାରିଥିଲେ । ତାଙ୍କ ଭଳି ଶୀଘ୍ର ଗତିଶୀଳ ଗରୁଡ଼ ମଧ୍ୟ ହୋଇ ନ ପାରନ୍ତି । ଶ୍ରୀ ରାମାବତାରରେ ସେ ବୃଦ୍ଧ ହୋଇ ଯାଇଥିଲେ, ତଥାପି ତାଙ୍କ ସମ ବୁଦ୍ଧିମାନ୍ ଓ ବଳବାନ୍ କୌଣସି ବାନର ବା ଭାଲୁ ନଥିଲେ । ଲଙ୍କା ବିଜୟରେ ସେ ଶ୍ରୀରାମଙ୍କର ପ୍ରଧାନମନ୍ତ୍ରୀ ଥିଲେ । ସେ ଯେପରି ପରାମର୍ଶ ଦେଉଥିଲେ, ସେହିପରି ଯୁଦ୍ଧ କରାଯାଉଥିଲା । ତାଙ୍କରି ବୁଦ୍ଧିବଳରୁ ହିଁ ଶ୍ରୀ ରାମଚନ୍ଦ୍ର ଲଙ୍କା ଜୟ କରି ପାରିଥିଲେ । ଶେଷରେ ଭଗବାନ ଶ୍ରୀ ରାମଚନ୍ଦ୍ର ପ୍ରସନ୍ନ ହୋଇ ସମସ୍ତଙ୍କ ଇଚ୍ଛାନୁସାରେ ବର ପ୍ରଦାନ କରିଥିଲେ । ଜାମ୍ବବାନଙ୍କୁ ପଚାରିବାରୁ ସେ କହିଥିଲେ, 'ଏ ଲଙ୍କା ବିଜୟ କାଳରେ ତ ମୋ ବୁଦ୍ଧି କିଛି କିଛି କାମରେ ଲାଗିଲା, କିନ୍ତୁ ମୋ ବଳ କୌଣସି କାର୍ଯ୍ୟରେ ଆସିଲା ନାହିଁ । ତେଣୁ ମୋର ଇଚ୍ଛା, ମୁଁ କାହାରି ସହିତ ଯୁଦ୍ଧ କରନ୍ତି, ଯୁଦ୍ଧରେ ମୋର ତୃପ୍ତି ଆସି ନାହିଁ ।'

"ଭଗବାନ ଶ୍ରୀ ରାମଚନ୍ଦ୍ର ହସି ହସି ପଚାରିଥିଲେ—'ତୁମ ସହିତ କିଏ ଯୁଦ୍ଧ କରିବ ? ତୁମଭଳି ବଳବାନ୍ ତ ଏ ବିଶ୍ୱରେ ମୁଁ କାହାରିକୁ ଦେଖୁନାହିଁ ? ହଁ ମୁଁ ନିଜେ ହିଁ କେବଳ ତୁମ ସହିତ ଯୁଦ୍ଧ କରି ତୁମକୁ ଯୁଦ୍ଧରେ ସନ୍ତୁଷ୍ଟ କରି ପାରିବି ।"

"ଜାମ୍ବବାନ ହାତଯୋଡ଼ି କହିଥିଲେ—'ହଁ ମହାରାଜ ! ଆପଣ ତ ମୋର ସ୍ୱାମୀ ଅଟନ୍ତି, ମୁଁ ଭଲା ଆପଣଙ୍କ ସହିତ କିପରି ଯୁଦ୍ଧ କରିବାର ସାହସ କରିବି ?"

"ଭଗବାନ ଶ୍ରୀ ରାମଚନ୍ଦ୍ର ହସି ହସି କହିଥିଲେ—'ସ୍ୱାମୀ ଓ ସେବକଙ୍କ ମଧ୍ୟରେ ବି ଯୁଦ୍ଧ ହୋଇଥାଏ । ଏ ଅବତାରରେ ନୁହେଁ, ଆଗାମୀ ଅବତାରରେ ମୁଁ ତୁମ ଇଚ୍ଛା ପୂର୍ଣ୍ଣ କରିବି । ତୁମେ ଜାଣିକରି ତ ମୋ ସହିତ ଲଢ଼ିବ ନାହିଁ, ମୁଁ ତୁମର ସ୍ମୃତି ନାଶ କରି ଦେଇଥିବି, ତେଣୁ ତୁମେ ମୋତେ ଭୁଲିଯାଇ ମୋ ସହିତ ଯୁଦ୍ଧ କରିବ । ଯେତେବେଳେ ତୁମେ ଯୁଦ୍ଧରେ ସନ୍ତୁଷ୍ଟ ହୋଇଯିବ, ସେତେବେଳେ ତୁମର ପୂର୍ବ କଥା ସ୍ମରଣ ଆସିବ ।"

ସୂତ କହିଲେ---"ମୁନିଗଣ ! ଏହି କାରଣରୁ ଭଗବାନଙ୍କର ପରମ ଭକ୍ତ ଜାମ୍ବବାନ ତାଙ୍କୁ ଚିହ୍ନି ପାରିଲେ ନାହିଁ । ଭଗବାନ ନିଜର ଭକ୍ତଙ୍କୁ କେବେ କେବେ ଅଜ୍ଞାନ ମଧ୍ୟ କରି ଦେଇଥାଆନ୍ତି । କେବଳ କୌଣସି ଜନ୍ମର କୌଣସି ଇଚ୍ଛା ପୂର୍ଣ୍ଣ କରିବା ପାଇଁ ହିଁ ଏପରି କରିବାକୁ ବାଧ୍ୟ ହୁଅନ୍ତି । ନାରଦ ଭଗବାନଙ୍କୁ ଭୁଲି ତାଙ୍କୁ ଶାପ ମଧ୍ୟ ଦେଇଥିଲେ । ଏ ସବୁ ଭଗବାନଙ୍କର ଲୀଳା । ସେ ନିଜର ଭକ୍ତଙ୍କ ସହିତ ବିଚିତ୍ର କ୍ରୀଡ଼ା

କରିଥାଆନ୍ତି । ଯିଏ ଥରେ ମାତ୍ର ଭଗବାନଙ୍କ ନିକଟରେ ଶରଣାପନ୍ନ ହୋଇଗଲା, ସେ ଚିରଦିନ ପାଇଁ କେବେହେଲେ ଭଗବାନଙ୍କୁ ଭୁଲିଯାଏ ନାହିଁ । ଅଠେଇଶ ଦିନପର୍ଯ୍ୟନ୍ତ ଦିନ ରାତି ଯୁଦ୍ଧ କରି ଭଗବାନ୍ ଜାମ୍ବୁବାନଙ୍କର ଯୁଦ୍ଧ କରିବାର ଇଚ୍ଛା ପୂର୍ଣ୍ଣ କରିଥିଲେ । ଯେତେବେଳେ ସେ ଶାନ୍ତ ହୋଇଗଲେ ତଥା ହାରିଗଲେ, ସେତେବେଳେ ଭଗବାନ ତାଙ୍କ ଅଜ୍ଞାନତାକୁ ଦୂର କରିଦେଲେ ଓ ନିଜର ଯଥାର୍ଥ ରୂପକୁ ଦେଖାଇ-ଦେଲେ । ନିଷ୍ଠୁରସ୍ଥର ହାର ହିଁ ଭରସା ।''

ଶୌନକ କହିଲେ—''ହେ ସୂତ ! ଭଗବାନ ବଡ଼ କୃପାଳୁ ଅଟନ୍ତି । ସେ ନିଜ ଭକ୍ତଙ୍କର ସମସ୍ତ କାମନା ପୂର୍ଣ୍ଣ କରନ୍ତି । ତେଣୁ ତାଙ୍କର ଏକ ନାମ ଭକ୍ତବାଞ୍ଛା-କଳ୍ପତରୁ । ଆଚ୍ଛା, ତାପରେ କ'ଣ ହେଲା କୁହନ୍ତୁ ?''

ସୂତ କହିଲେ—''ମହାରାଜ ! ଆଉ ହେବ କଣ ? ଭକ୍ତ ଓ ଭଗବାନ ମିଳିତ ହେଲେ ଯାହା ହେବାର କଥା, ତାହା ହିଁ ହେଲା । ଜାମ୍ବୁବାନ ପରମ ଆନନ୍ଦରେ, ବିଧି ବିଧାନରେ ଭଗବାନଙ୍କର ପୂଜାର୍ଚ୍ଚନା କଲେ, ଅର୍ଘ୍ୟ ପ୍ରଦାନ କଲେ ଫଳ ଓ ରତ୍ନଆଦି ଭେଟି ଅର୍ଘ୍ୟପ୍ରଦାନ ସମୟରେ ଦିଆଯିବା କଥା, ଜାମ୍ବୁବାନଙ୍କର ଅତ୍ୟନ୍ତ ସୁନ୍ଦରୀ କନ୍ୟାଟିଏ ଥିଲା, ସେହି କନ୍ୟାରତ୍ନକୁ ସେ ଅର୍ଘ୍ୟ ସହିତ ଭଗବାନଙ୍କୁ ଅର୍ପଣ କରି ଦେଲେ । ତାଙ୍କ ନିକଟରେ ଯେଉଁ ସ୍ୟମନ୍ତକ ମଣି ଥିଲା, ତାହା ଯୌତୁକ ଆକାରରେ ସେ ଭଗବାନଙ୍କୁ ଦେଲେ ।

''ଏହାପରେ ହାତଯୋଡ଼ି ସେ କହିଲେ—'ପ୍ରଭୋ ! ଆପଣ ଅତ୍ୟନ୍ତ କୃପା କରି ଏ ଦାସକୁ ଦର୍ଶନ ଦେଇଛନ୍ତି, ଆପଣଙ୍କ ପଦଧୂଳିରେ ମୋ ଘରକୁ ପବିତ୍ର କରିଛନ୍ତି ଓ ମୋତେ ସପରିବାର କୃତକୃତ୍ୟ କରି ଅଛନ୍ତି । ଏ ମୋର ପରମ ସୁଶୀଳା ଗୁଣବତୀ କନ୍ୟା, ଏହାକୁ ଆପଣ ପତ୍ନୀରୂପେ ଗ୍ରହଣ କରନ୍ତୁ ଓ ଏହି ମଣିକୁ ମଧ୍ୟ ଆପଣ ଗ୍ରହଣ କରନ୍ତୁ ।'

''ଭଗବାନ ଉପର ମନରେ କହିଲେ—'ଆରେ ଭାଇ ! ମୁଁ ତ ବିବାହ କରି-ସାରିଛି । ମୋ ପତ୍ନୀ ତ ଘରେ ଅଛନ୍ତି । କିନ୍ତୁ ଏବେ ତୁମେ ଶ୍ରଦ୍ଧାପୂର୍ବକ ପ୍ରଦାନ କରୁଛ, ମୋର ଉପାୟ କଣ ? ଯିଏ ଶ୍ରଦ୍ଧା ପୂର୍ବକ ପ୍ରଦତ୍ତ ଦ୍ରବ୍ୟକୁ ଗ୍ରହଣ ନ କରେ, ଶେଷରେ ତାହାର ଅପଯଶ ହୁଏ । ତୁମେ ଯେତେବେଳେ ଅତି ଶ୍ରଦ୍ଧାରେ ମୋତେ ପ୍ରଦାନ କରୁଛ, ତୁମ ନିକଟରେ ତ ବିବାହର କୌଣସି ଉପକରଣ ନାହିଁ । ପଣ୍ଡିତ, ପୁରୋହିତ, କୁଶ, ନାରକେଳ ଆଦି ତ ଏଠାରେ ମିଳିବା କଷ୍ଟ । ତେଣୁ ମୁଁ କନ୍ୟାକୁ ଢଙ୍ଗରେ ଦ୍ୱାରକା ନେଇ ଯାଉଛି, ସେଠାରେ ସମସ୍ତ ବ୍ୟବସ୍ଥା କରିବ ।'

''ଏହା କହି ଭଗବାନ୍ ଜାମ୍ବବତୀଙ୍କୁ ପତ୍ନୀରୂପେ ଗ୍ରହଣ କଲେ ଓ ତାଙ୍କୁ ସଙ୍ଗରେ ନେଇ ଗୁହା ମଧ୍ୟରୁ ବାହାରି ଆସିଲେ ।''

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଆମ୍ଭମାନଙ୍କର କିଛି ଶଙ୍କା ରହିଗଲା । ଆପଣ ଯଦି ଆମ୍ଭମାନଙ୍କୁ ଅଶ୍ରଦ୍ଧାଳୁ ବୋଲି ମନେ ନ କରନ୍ତି, ତାହାହେଲେ ମୋତେ ତାହା ପଚାରିବାକୁ ଅନୁମତି ଦିଅନ୍ତୁ ।"

ସୂତ କହିଲେ—"ନା ମହାରାଜ ! ଅଶ୍ରଦ୍ଧାଳୁ ବୋଲି ମନେ କରିବାର କୌଣସି କାରଣ ନାହିଁ । ଆପଣମାନଙ୍କର ଯାହା ସନ୍ଦେହ ହେଉଛି, ତାହା ପଚାରନ୍ତୁ ।"

ଶୌନକ କହିଲେ—"ହେ ସୂତ ! ପ୍ରଥମ କଥା ହେଲା, ଜାମ୍ବବାନ୍ ତ ଏତେ ବୃଦ୍ଧ ଥିଲେ, ସେ ପ୍ରଥମ ସତ୍ୟ ଯୁଗରେ ଥିଲେ, ତାଙ୍କର ପୁଣି ଏତେ ଛୋଟ ପିଲା ଥିଲେ, ଯେଉଁମାନେ କି ମଣିରେ ଖେଳୁଥିଲେ । ପୁନଶ୍ଚ ତାଙ୍କର ପନ୍ଦର-ଷୋଳ ବର୍ଷର କନ୍ୟା ମଧ୍ୟ ଥିଲା । ତେଣୁ ଆପଣ କୁହନ୍ତୁ, ସତ୍ୟ ଯୁଗରୁ ଏ ପର୍ଯ୍ୟନ୍ତ ତ ତାଙ୍କର ଅସଂଖ୍ୟ ପୁତ୍ର କନ୍ୟା ହୋଇଥିବେ ? ଦ୍ୱିତୀୟ କଥା ହେଲା, ସେ ତ ଭାଲୁଥିଲେ, ଭଗବାନ୍ ଭାଲୁର କନ୍ୟାକୁ କିପରି ବିବାହ କଲେ ? ଭଗବାନ କ'ଣ ଭାଲୁ ହୋଇଗଲେ ନା ଆଉ କ'ଣ ? କିମ୍ବା ତାକୁ ମାନବୀ-ସ୍ତ୍ରୀରେ ପରିଣତ କଲେ ?"

ଏହା ଶୁଣି ସୂତ ହସି ହସି କହିଲେ—"ମହାରାଜ ! ତାହାହେଲେ ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେଉଛି ଶୁଣନ୍ତୁ । ସେ ସାଧାରଣ ଜଙ୍ଗଲୀ ଭାଲୁ ନଥିଲେ । ସେ ଥିଲେ ଏକ ଉପଦେବ ଓ ବ୍ରହ୍ମାଙ୍କ ପୁତ୍ର । ସେ ଯେତେବେଳେ ଯେଉଁ ରୂପ ହେବାକୁ ଚାହୁଁଥିଲେ, ସେପରି ରୂପ ହୋଇ ପାରୁଥିଲେ । ଯେପରି ଜଟାୟୁ, ସମ୍ପାତି ଗୃଧ୍ର ଥିଲେ, କିନ୍ତୁ ସେ ଯେତେବେଳେ ଚାହୁଁଥିଲେ ମନୁଷ୍ୟରୂପ ହୋଇପାରୁଥିଲେ । ଜଟାୟୁ କହୁଥିଲେ ସେ ଦଶରଥଙ୍କର ମିତ୍ର । ସେହିପରି ଏ ଜାମ୍ବବାନ୍ ଚିରଂଜୀବୀ ଉପଦେବ ଅଟନ୍ତି । ସେ ବ୍ରହ୍ମଲୋକ ପର୍ଯ୍ୟନ୍ତ ମଧ୍ୟ ଯାଇ ପାରନ୍ତି । ସେ ଥିଲେ ଋକ୍ଷରାଜ । ବର ପାଇଥିବାରୁ ସେ ବୃଦ୍ଧ ହୋଇ ନଥିଲେ । ଯେଉଁ କ୍ଷେତ୍ରରେ ତାଙ୍କୁ ବୃଦ୍ଧ ବୋଲି କୁହାଯାଇଛି, ତାହାର ଅଭିପ୍ରାୟ ଏହି ଯେ, ସେ ଅତି ପୁରାତନ । ଦେବତାମାନେ ଯେପରି ବୃଦ୍ଧ ହୁଅନ୍ତି ନାହିଁ, ସେ ମଧ୍ୟ ସେହିପରି ବୃଦ୍ଧ ହୁଅନ୍ତି ନାହିଁ । ଗୁହା ମଧ୍ୟରେ ରହି ସେ ସବୁଯୁଗରେ ଭଗବାନଙ୍କ ଅବତାରକୁ ପ୍ରତୀକ୍ଷା କରୁଥିଲେ । ସେ ଯେତେବେଳେ ବୃଦ୍ଧ ନୁହନ୍ତି, ସେତେବେଳେ ତାଙ୍କର ପିଲା ହେବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତାଙ୍କ ବଳରୁ ଏହା ଜଣାପଡ଼ିଲା ଯେ ସେ ଅତ୍ୟନ୍ତ ବଳବାନ ଥିବାରୁ ୨୮ ଦିନ ପର୍ଯ୍ୟନ୍ତ ନଖାଇ ନପିଇ, ବିଶ୍ରାମ ନକରି, ଅନବରତ ଭଗବାନଙ୍କ ସହିତ ଯୁଦ୍ଧ କରି ପାରିଥିଲେ ।

"ତାଙ୍କର ଏ ଯେଉଁ କନ୍ୟା ଜାମ୍ବବତୀ, ସେ ମଧ୍ୟ ଦିବ୍ୟ ସ୍ତ୍ରୀ ଥିଲା । ରାମ ଅବତାର କାଳରେ ସେ ମଧ୍ୟ ଥିଲା । ଭଗବାନଙ୍କ ରୂପକୁ ଦେଖି ସେ ବିମୋହିତ ହୋଇଯାଇଥିଲା । ତାହାର ଅଭିପ୍ରାୟ ବୁଝିପାରି ଜାମ୍ବବାନ୍ ତାକୁ ଭଗବାନଙ୍କୁ ଅର୍ପଣ କରିବା ପାଇଁ ଇଚ୍ଛା କରିଥିଲେ । ସେତେବେଳେ ଭଗବାନ ଶ୍ରୀରାମଚନ୍ଦ୍ର କହିଥିଲେ—'ଦେଖ ଭାଇ ! ଏ

ଅବତାରରେ ତ ମୁଁ ଏକପତ୍ନୀ ବ୍ରତ କରିଛି, ତେଣୁ ମୁଁ ଏବେ ତାଙ୍କୁ ପତ୍ନୀରୂପେ ସ୍ୱୀକାର କରିବ ନାହିଁ । ଆଗାମୀ ଅବତାରରେ ତା ସହିତ ବିବାହ କରି ତାଙ୍କ ଇଚ୍ଛା ପୂର୍ଣ୍ଣ କରିବି ।'' ସେହିଦିନଠାରୁ ସେ ଭଗବାନଙ୍କୁ ପତିରୂପେ ପାଇବାପାଇଁ ଘୋର ତପସ୍ୟା କରୁଥିଲେ । ସେ ମାନବୀ-ସ୍ତ୍ରୀ ରୂପ ଧାରଣ କରିଥିଲେ ଓ ସେହି ରୂପରେ ଜାମ୍ବବାନ୍ ତାଙ୍କୁ ଭଗବାନଙ୍କୁ ସମର୍ପଣ କଲେ ।''

ଶୌନକ କହିଲେ—''ମହାରାଜ ! ଆମେ ଏବେ ବୁଝିଲୁ ଯେ, ତାଙ୍କର ସଂଜ୍ଞା ହିଁ ଋକ୍ଷ ଥିଲା । ସେ ଉପଦେବ ଥିଲେ । ଆଚ୍ଛା ତା'ପରେ କଣ ଘଟିଲା କହନ୍ତୁ ?''

ସୂତ କହିଲେ—''ମହାରାଜ ! ଜାମ୍ବବତୀଙ୍କୁ ନେଇ ଓ ସ୍ୟମନ୍ତକ ମଣିକୁ ନିଜ ଗଳାରେ ପିନ୍ଧି ଭଗବାନ ଗୁହା ମଧ୍ୟରୁ ବାହାରି ଆସିଲେ । ସେ ବାହାରକୁ ଆସି ଦେଖନ୍ତି ତ ତାଙ୍କର ଦୁଇଗୃହଜଣ ବିଶ୍ୱସ୍ତ ସେବକଙ୍କ ବ୍ୟତୀତ ଗୁହା ଦ୍ୱାରରେ ଆଉ କେହି ନାହାନ୍ତି । ଭଗବାନ ସେହି ଗୃହଜଣଙ୍କୁ ମଧ୍ୟ ସଙ୍ଗରେ ନେଇ ଦ୍ୱାରକା ଯାତ୍ରା କଲେ ।''

ଏଣେ ଭଗବାନ ଦ୍ୱାରକା ଫେରିଆସିନଥିବା କାରଣରୁ ଦ୍ୱାରକାସାରା ସମସ୍ତେ ଚିନ୍ତିତ ହେଉଥାଆନ୍ତି । ମହାମାୟା ଦୁର୍ଗାଙ୍କର ଆରାଧନାରେ ସମସ୍ତେ ଲାଗିଥାଆନ୍ତି । ପ୍ରତ୍ୟେକେ ଦେବୀଙ୍କୁ ଜଣାଉ ଥାଆନ୍ତି—''ହେ ଦେବି ! ହେ ଜଗନ୍ମାତା ! ଭଗବାନ ଶ୍ରୀକୃଷ୍ଣ ସକୁଶଳେ ଦ୍ୱାରକା ଫେରି ଆସନ୍ତୁ ।''

ଅନେକ ଲୋକ ସତ୍ରାଜିତଙ୍କୁ ନିନ୍ଦା କରୁ ଥାଆନ୍ତି ଓ ପ୍ରସେନ ଯେପରି ମୃତ୍ୟୁ-ବରଣ କଲା ଏ ବି ସେହିପରି ମୃତ୍ୟୁ ମୁଖରେ ପଡୁ ବୋଲି ଗାଳି ଦେଉ ଥାଆନ୍ତି । କାରଣ ତାହାରି ଯୋଗୁଁ ହିଁ ଭଗବାନଙ୍କ ଉପରେ ବୃଥା କଳଙ୍କ ଲଦିଦିଆଯାଇଥିଲା ଓ ଭଗବାନ ଭୟଙ୍କର ଗୁହା ମଧ୍ୟରେ ପ୍ରବେଶ କଲେ ।'' କେହି କେହି କହୁଥିଲେ—''ଆରେ ! ଭଗବାନଙ୍କର କେହି କିଛି କରିପାରିବେ ନାହିଁ । ସେ ଯାହା ଚାହିଁବେ, ତାହା କରି ପାରିବେ । ସେ ତ ସ୍ୱୟଂ ବିଶ୍ୱରକ୍ଷାକାରୀ ।'' କେହି କେହି ଦେବୀଙ୍କ ସମ୍ମୁଖରେ ତାଙ୍କ ପାଇଁ ଜପ, ତପ, ପୂଜାପାଠ ଆଦି କରୁଥିଲେ ।

ସମସ୍ତଙ୍କର ଉପାସନାରେ ପ୍ରସନ୍ନା ହୋଇ ଦୁର୍ଗାଦେବୀ ସେମାନଙ୍କ ଇଚ୍ଛିତ ବର ପ୍ରାପ୍ତିର ଶୁଭାଶୀର୍ବାଦ ଦେଲେ । ଯେତେବେଳେ ଦେବୀ ଭଗବାନ ସକୁଶଳ ଫେରି ଆସିବାପାଇଁ କହିଲେ, ସେତେବେଳେ ଲୋକମାନେ ଦେଖିଲେ ଯେ, ନୂତନ ଜଳଧର ଆଭାବିଶିଷ୍ଟ ପୀତାମ୍ବରଧାରୀ ବନମାଳୀ ଗଳାରେ ସ୍ୟମନ୍ତକମଣି ପିନ୍ଧି ନବବଧୂ ଜାମ୍ବବତୀଙ୍କୁ ସଙ୍ଗରେ ଧରି ଆସୁଅଛନ୍ତି । ଭଗବାନଙ୍କୁ ଦେଖି ସମସ୍ତେ ଏତେ ଆନନ୍ଦିତ ହେଲେ ଯେ, ସତେ ଯେପରି ତୃଷାର୍ତ୍ତଙ୍କୁ ଅମୃତ ମିଳିଯାଇଛି; ଓ ମୃତ ବ୍ୟକ୍ତି ପୁନର୍ଜନ୍ମ ପାଇ ଫେରି ଆସିଲେ ଯେପରି ପ୍ରିୟଜନ ଓ ପରିବାରବର୍ଗ ଅତି ଆନନ୍ଦରେ ବିଭୋର ହୋଇ ପଡ଼ନ୍ତି । ସମସ୍ତେ ଦେଖିଲେ, ଭଗବାନ ଏକରୁ ଦୁଇ ହୋଇ ଫେରି ଆସୁଛନ୍ତି । ତେଣୁ ସମସ୍ତ ପୁରବାସୀଙ୍କର ଆନନ୍ଦର ସୀମା ରହିଲା ନାହିଁ । ସମସ୍ତେ ପ୍ରେମବିହ୍ୱଳ

ହୋଇ ଅସି ତାଙ୍କୁ ସାକ୍ଷାତ୍ କଲେ । ଅନ୍ତଃପୁରରେ ନବବଧୂଙ୍କର ସ୍ୱାଗତ ସତ୍କାର କରାଗଲା । ଭଗବାନ ସମସ୍ତଙ୍କୁ ଏକତ୍ରିତ କରି ସେହି ମଣିର ସମସ୍ତ ବୃତ୍ତାନ୍ତ କହିଲେ ଓ ସମସ୍ତଙ୍କ ସମ୍ମୁଖରେ ତାହା ସତ୍ରାଜିତଙ୍କୁ ଫେରାଇ ଦେଲେ । ସତ୍ରାଜିତର ମସ୍ତକ ଉପରେ ସତେ ଯେପରି ସହସ୍ର ଗରା ପାଣି ଅଜାଡ଼ି ହୋଇ ପଡ଼ିଲା । ଲଜ୍ଜାବଶତଃ ତା' ଶିର ସେ ଆଉ ଉପରକୁ ଟେକି ପାରିଲାନାହିଁ । ସେ ମଣିକୁ ନେବାପାଇଁ ଶୁହୁଁ ନ ଥିଲା, କିନ୍ତୁ ସମସ୍ତଙ୍କ ସମ୍ମୁଖରେ ତାହା ପ୍ରକାଶ କରି ପାରିଲା ନାହିଁ । ସେପରି ସାହସ ମଧ୍ୟ ତାହାର ନଥିଲା । ସେ ଅତ୍ୟନ୍ତ କ୍ଷୀଣ ଓ ଉଦାସ ଭାବରେ ମଣିକୁ ନେଇ ଘରକୁ ଫେରିଗଲା । ସମସ୍ତ ପୁରବାସୀ ତାକୁ ଧିକ୍କାର କରିବାରେ ଲାଗିଲେ । ଲୋକମାନଙ୍କ ନିନ୍ଦା ଶୁଣି ତା ହୃଦୟ ବିଦୀର୍ଣ୍ଣ ହେଲା । ତାହାର ଆତ୍ମଗ୍ଲାନି ଘଟିଲା । ସେ ମନେ ମନେ ଅନୁତାପ କରି କହିଲା, 'ମୁଁ ଅଧମ ସର୍ବେଶ୍ୱରଙ୍କ ଉପରେ ଏପରି ବ୍ୟର୍ଥ ସନ୍ଦେହ କାହିଁକି କଲି ? କାହିଁକି ଲୋକ ମୁଖରେ ତାଙ୍କ ଉପରେ ବୃଥା କଳଙ୍କ ଲଗାଇଲି ? ମୁଁ ତାଙ୍କୁ କିପରି ପ୍ରସନ୍ନ କରିପାରିବି,' ଏହିପରି ଚିନ୍ତାରେ ସେ ବୁଡ଼ି ରହିଲା ।

ସୂତ କହିଲେ—"ମୁନିଗଣ ! ଭଗବାନ ଜାମ୍ବବତୀଙ୍କ ସହିତ ବିଧିବିଧାନ ପୂର୍ବକ ବିବାହ କଲେ । ଏହିପରି ଭଗବାନଙ୍କର ଦ୍ୱିତୀୟ ବିବାହ ତ ହେଲା, ଏବେ ଆପଣମାନେ ତାଙ୍କର ତୃତୀୟ ବିବାହର ଶୁଭବୃତ୍ତାନ୍ତ ଶ୍ରବଣ କରନ୍ତୁ ।"

ଶୌନକ କହିଲେ—"ହେ ସୂତ ! ବିଚରା ସତ୍ରାଜିତର ତ ଖୁବ୍ ଅପକୀର୍ତ୍ତି ହେଲା, ସେ ଲୋକଙ୍କ ସମ୍ମୁଖରେ କିପରି ମୁହଁ ଦେଖାଇ ଥିଲା ? କୃପାକରି ପ୍ରଥମେ ଆମ୍ଭମାନଙ୍କୁ ସେହି ସତ୍ରାଜିତ ବୃତ୍ତାନ୍ତ ଶୁଣାନ୍ତୁ, ତାହାପରେ ଭଗବାନଙ୍କ ତୃତୀୟ ବିବାହ କଥା କହିବେ ।"

ସୂତ କହିଲେ—"ଭଗବାନଙ୍କର ତୃତୀୟ ବିବାହ ସେହି ସତ୍ରାଜିତର କନ୍ୟା ସହିତ ହିଁ ହୋଇଥିଲା । ଏହି ପ୍ରସଙ୍ଗରେ ଉଭୟ କଥା ମଧ୍ୟ ଆସିଯିବ । ଆପଣମାନେ ଧୀରସ୍ଥିର ହୋଇ ତାହା ଶୁଣନ୍ତୁ ।"

## ଛପ୍ପୟ

ଜାମ୍ବବତୀ ସଁଗ ଶ୍ୟାମ ନିରଖି ସବ ଲୋଗ ସିହାୟେ ।
ପୁରବାସୀ ହ୍ୱୈଂ ମୁଦିତ ମୃତକ ଜ୍ୟୋଂଘର ଫିରି ଆୟେ ॥
ମଣି ଲୈ ସୁନି ସବ ବୃତ୍ତ ଭୟୋ ଦୁଃଖିତ ସତ୍ରାଜିତ ।
ହରି ମଣି ସାଦର ଦଈ ଲଈ ତାନେଂ ହ୍ୱୈ ଲଜ୍ଜିତ ॥
ସୋଚତ ସତ୍ରାଜିତ୍ ସତତ, ଯହ ଅପଯଶ କୈସେ ସହୁଁ ।
ହୋହି ତୋଷ ଯଦି ମଣି ସହିତ, ସତଭାମା ହରିକୂଁ ଦଉଁ ॥

—※—

# ସତ୍ୟଭାମା ଓ ଭଗବାନଙ୍କ ବିବାହ

ତାଂ ସତ୍ୟଭାମାଂ ଭଗବାନୁପୟେମେ ଯଥାବିଧି ।
ବହୁଭିର୍ଯାଚିତାଂ ଶୀଲରୂପୌଦାର୍ଯ୍ୟଗୁଣାନ୍ୱିତାମ୍ ॥ ※

( ଶ୍ରୀ ଭା: ୧୦ମ ସ୍କନ୍ଧ, ୫୬ ଅ: ୪୪ ଶ୍ଳୋକ )

## ଛପ୍ପୟ

ଶତଧନ୍ୱା ସଁଗ କରି ସଗାଇ ସତଭାମାକୀ ।
ତଉ କୃଷ୍ଣକୁଁ ଦଈ ନ ଚିନ୍ତା କୀନ୍ହୀ ତାକୀ ॥
ତୀନ ବ୍ୟାହ କରି ଗୟେ ବନ୍ଧୁ ଦେଖନ ହସ୍ତିନାପୁର ।
କୁନ୍ତୀ ପାଣ୍ଡବ ଜରେ ସୁନତ ପହୁଁଚେ ତହଁ ସତ୍ୱର ॥
ଜାନତ ସବ ଘନଶ୍ୟାମ ପରି, ଲୋକ ଦିଖାବୋ କରତ ହେଂ ।
ନର କ୍ରୀଡ଼ା କରି ସବନିକେ, ଚଂଚଲ ଚିତକୁଁ ହରତ ହେଂ ॥

କାମିନୀ ଓ କାଞ୍ଚନ ଏ ଦୁଇଟି ହେଉଛୁ କଳହର ମୂଳ କାରଣ । କାଞ୍ଚନରେ ଭୂମି, ଧନ, ଅନ୍ନ ତଥା ଅନ୍ୟ ସମସ୍ତ ଜୀବନୋପଯୋଗୀ ବସ୍ତୁଗୁଡ଼ିକର ସମାବେଶ ହୋଇଥାଏ । ଏକ ବସ୍ତୁକୁ ଦୁଇଜଣ ଚାହାନ୍ତି, ଦୁଇଜଣ ଏହାକୁ ନିଜ ନିଜର ସ୍ୱତ୍ୱ ବୋଲି ଜ୍ଞାନ କରନ୍ତି । ଏହା ଉପରେ ବିବାଦ ଉପୁଜେ, ମାଡ଼ଗୋଳ ଲାଗେ ଓ ପ୍ରାଣ ଦେବାକୁ ମଧ୍ୟ ପଡ଼ିଥାଏ । ଯେଉଁଠାରେ ଧନ ଅଛି ଓ ସୁନ୍ଦରୀ ସ୍ତ୍ରୀ ଅଛି, ସେଠାରେ ମନୋମାଳିନ୍ୟ,

---

※ ଆନନ୍ଦ ମନେ ଦେବଦେବା । ସତ୍ୟଭାମାକୁ ହେଲେ ବିଭା ॥
ଅଂଶେ କମଳା ଅବତାର । ଜ ଅବା ଦେବା ପଟାନ୍ତର ॥
ସୁନ୍ଦର ରୂପ ଦେଖି ତାର । ଅନେକ ହୋଇଥିଲେ ବର ॥
(ଭାଗବତ : ଜଗନ୍ନାଥ ଦାସ :ସ୍କ ୧୦, ଅ ୬୦)

କଳହ ଓ ମାଡ଼ଗୋଳ ହେବା ବିଚିତ୍ର କଥା ନୁହେଁ । ପ୍ରାଚୀନ ଓ ଅର୍ବାଚୀନ ସବୁ ଇତିହାସରେ ଯୁଦ୍ଧର ପ୍ରମାଣ ମିଳେ । ଆମେ ଯେଉଁ ବସ୍ତୁକୁ ଗ୍ରହୁଁ, ତାହା ଯଦି ଅନ୍ୟକେହି ନେଇଯାଏ ତାହାହେଲେ ଆମ ମନରେ ଈର୍ଷା ଜାତ ହୁଏ । ଶକ୍ତି ଅଧିକା ହୋଇଥିଲେ ଅମେ ଅନ୍ୟଠାରୁ ସେହି ବସ୍ତୁ ଛଡ଼ାଇ ଆଣିବାକୁ ଚେଷ୍ଟା କରୁଁ । ଶକ୍ତି କମ୍ ହୋଇଥିଲେ ତାହାର କିଛି ନା କିଛି ଅନିଷ୍ଟ କରିବାକୁ ଚିନ୍ତାକରୁଁ । ଯଦି କାହାକୁ କିଛି ଦେବାକୁ କହି ନ ଦେଇପାରୁ, ତେବେ ସେ ଶତ୍ରୁ ହୋଇଯାଏ । ବ୍ରାହ୍ମଣଙ୍କୁ ଭୋଜନ ଦେବାପାଇଁ ନିମନ୍ତ୍ରଣ କରି ଯଦି ଭୋଜନ ନ ଦେଉ, ତେବେ ସେ ଶତ୍ରୁଭଳି ଆଚରଣ କରିବାକୁ ଲାଗନ୍ତି । ଶାପ ଦିଅନ୍ତି, କଳହ ବି ହୁଏ । ଏଥିପାଇଁ ଶାସ୍ତ୍ରକାରଗଣ କହିଛନ୍ତି —'କାହାର ଧନ ପାଇବାକୁ କେବେ ମନ ବଳାଇବା ଉଚିତ୍ ନୁହେଁ କିମ୍ବା ଅନ୍ୟାୟରେ କାହାର ବସ୍ତୁକୁ ନେବାକୁ ପ୍ରଯତ୍ନ କରିବା ଉଚିତ୍ ନୁହେଁ ।''

ସୂତ କହିଲେ —''ମୁନିଗଣ ! ଭଗବାନ ନିଜେ ମହାରାଜ ଉଗ୍ରସେନ ଓ ଅନ୍ୟମାନଙ୍କ ସମ୍ମୁଖରେ ସଭା ମଧ୍ୟରେ ସତ୍ରାଜିତକୁ ସ୍ୟମନ୍ତକ ମଣି ଦେଇଥିଲେ ଓ ସେ ନିଜର ଅପରାଧ ପାଇଁ ପଶ୍ଚାତାପ କରୁଥିଲା । ସେ ଚିନ୍ତା କଲା —'ମୁଁ ଭୁଲବଶତଃ ନିବୁଦ୍ଧି ନିଶୁଛି ଶ୍ରୀକୃଷ୍ଣଙ୍କ ଉପରେ ବୃଥା କଳଙ୍କ ବୋଝ ଲଦିଦେଲି । ସେ ମନରେ ମୋ ବିଷୟରେ କ'ଣ ବା ଭାବୁ ନ ଥିବେ ? ତାଙ୍କର ମୋ ପ୍ରତି ଖରାପ ଧାରଣା ହେବା ସ୍ୱାଭାବିକ । ଅନ୍ୟ ସମସ୍ତ ଦ୍ୱାରକାବାସୀ ମୋତେ ଧିକ୍କାର କରୁଥିବେ । ଯେଉଁ ଲୋକମାନେ ପ୍ରଥମେ ମୋ କଥାକୁ ସମର୍ଥନ କରୁଥିଲେ, ଏବେ ସେମାନେ ଓଲଟି ମୋତେ ନିଷ୍ଠୁର ଦୋଷୀ ସାବ୍ୟସ୍ତ କରୁଥିବେ । ଏବେ ମୋର ଉପାୟ କ'ଣ, ମୁଁ କ'ଣ କରିବି ? ଶ୍ରୀକୃଷ୍ଣଙ୍କର ବି ମୋ ଉପରୁ ଶ୍ରଦ୍ଧା ଓ ଆଦର ତୁଟି ଯିବଣି । ମୁଁ ତାଙ୍କ ନିକଟରେ କେତେଭଳିଆ ଅପରାଧ କରିଛି । ସର୍ବପ୍ରଥମେ ସେ ଯେତେବେଳେ ମୋତେ ମଣି ମାଗିଥିଲେ, ସେତେବେଳେ ମୁଁ ତାଙ୍କୁ ଦେଇଦେବା ଉଚିତ୍ ଥିଲା । ସେତେବେଳେ ମୁଁ ଲୋଭବଶତଃ ତାଙ୍କ ଆଜ୍ଞା ଉଲଙ୍ଘନ କଲି । ପୁନଶ୍ଚ ତାଙ୍କ ଉପରେ ମିଥ୍ୟା କଳଙ୍କ ଆରୋପ କଲି । ସେ ମଣିର ଅନୁସନ୍ଧାନରେ ବାହାରିଲେ, ତଥାପି ମୁଁ ତାଙ୍କୁ ବାରଣ କଲି ନାହିଁ । ମୋର ଯୋଗୁଁ ହିଁ ତାଙ୍କୁ ମହା ଅନ୍ଧକାର ଓ ଭୟପ୍ରଦ ଗୁହା ମଧ୍ୟରେ ପ୍ରବେଶ କରିବାକୁ ପଡ଼ିଲା ଏବଂ ସେ ସେଠାରେ ୨୮ ଦିନ ପର୍ଯ୍ୟନ୍ତ ଘୋର ଯୁଦ୍ଧ କଲେ । ଯେଉଁ ହତ୍ୟାର ମୂଳ କାରଣ ଏହି ମଣି ପଛରେ ନିହିତ ଥିବାରୁ ଏଭଳି କାଣ୍ଡ ଘଟିଗଲା, ସେହି ମଣି ପୁନଶ୍ଚ ମୋ ପାଖକୁ ଫେରିଆସିଲା । ଏହି ମଣି କାରଣରୁ ହିଁ ଭଗବାନ ମୋତେ ଆଜି ଶତ୍ରୁ ବୋଲି ମନେ କରୁଥିବେ । ଆଉ ମୋର କଲ୍ୟାଣ କଦାପି ସମ୍ଭବ ନୁହେଁ । ଏବେ କରିବି କ'ଣ ? କିପରି ଭଗବାନଙ୍କୁ ମୁଁ ସନ୍ତୁଷ୍ଟ କରିପାରିବି ?''

ଏହି କଥା ସେ ହରନ୍ତର ସବୁବେଳେ ଲାଗିଲା । ସେ ଅଭ ଘରୁ ପଦାକୁ ବାହାରିଲା ନାହିଁ । ତେବେ ତା'ର ସୁବତୀ କନ୍ୟା ସତ୍ୟଭାମା ଅତି ଆଗ୍ରହରେ ତାଙ୍କୁ ପଚାରିଲା—
"ପିତଃ ! ଆପଣ ଏତେ ଚିନ୍ତିତ ରହୁଛନ୍ତି କାହିଁକି ?"

ସତ୍ୟଭାମା ହେଉଛି ସତ୍ରାଜିତର ଏକମାତ୍ର କନ୍ୟା । ସେ ଅତ୍ୟନ୍ତ ସୁନ୍ଦରୀ । ଦ୍ୱାରକାପୁରରେ ତାର ସୌନ୍ଦର୍ଯ୍ୟର ସବୁଠି ପ୍ରଶଂସା ଥିଲା । ଯାଦବଗଣ ନିଜ ଜାତିର ଭିତରେ ବୈବାହିକ ସମ୍ବନ୍ଧ ସ୍ଥାପନ କରନ୍ତି । ପିତୃପକ୍ଷର ସାତ ପିଢ଼ି ତଥା ମାତୃପକ୍ଷର ସାତ ପିଢ଼ି ରକ୍ଷାକରି (ବାଦ୍‌ଦେଇ) ସେମାନେ ବୈବାହିକ ସମ୍ବନ୍ଧ ସ୍ଥାପନ କରନ୍ତି । ସତ୍ୟଭାମାକୁ ଯିଏ ଦେଖୁଥିଲା, ସେ ତାହାର ଶୀଳ, ସ୍ୱଭାବ, ରୂପ, ଉଦାରତା ଓ ଅନ୍ୟାନ୍ୟ ସଦ୍‌ଗୁଣ ଦେଖି ମୁଗ୍ଧ ହୋଇଯାଉଥିଲା । ସେ ଯେତେବେଳେ ବଡ଼ ହେଲା, ସେତେବେଳେ ଅନେକ ଯାଦବ ଯେହି ସର୍ବଗୁଣସମ୍ପନ୍ନା ସତ୍ରାଜିତର କନ୍ୟାକୁ ବିବାହ କରିବାପାଇଁ ପ୍ରସ୍ତାବ ଦେଲେ । ଅକ୍ରୂର, କୃତବର୍ମା ଓ ଶତଧନ୍ୱା ଏମାନଙ୍କର ଏକ ଗୋଷ୍ଠୀ ଥିଲା । ଏଥିରୁ ଶତଧନ୍ୱାଙ୍କ ସହିତ ସତ୍ୟଭାମାଙ୍କର ବିବାହ ପ୍ରସ୍ତାବ ସ୍ଥିର ହୋଇଗଲା । ବିବାହର ଶୁଭଦିନ ହେବାପାଇଁ କିଛିଦିନ ଡେରିଥାଏ, ସେହି ସମୟରେ ଏକ ଅପ୍ରିୟ ଘଟଣା ଘଟିଗଲା । ବିବାହ ହେବା ବନ୍ଦ ହୋଇଗଲା । କିଛିଦିନ ପରେ ସତ୍ରାଜିତ ନିଜ କନ୍ୟାର ବିବାହ କଥା ଭୁଲିଗଲା । ସେ ଦିନରାତି ଭାବୁଥାଏ ଯେ ଶ୍ରୀହରି କିପରି ତା' ଉପରେ ପ୍ରସନ୍ନ ହେବେ, କିପରି ସେ ନିଜ ଅପରାଧ ମାର୍ଜନା କରି ପାରିବ ? ଆଜି ଯେତେବେଳେ ସତ୍ୟଭାମା ମଧୁର ବାଣୀରେ ତାଙ୍କୁ ଚିନ୍ତା କରିବାର କାରଣ ପଚାରିଲା, ସେତେବେଳେ ସେ ଅତି ସ୍ନେହରେ କହିଲା—"ମା ! ମୁଁ ତୋତେ ଅବା କ'ଣ କହିବି ? ମୁଁ ଲୋଭବଶତଃ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଉପରେ ମିଥ୍ୟା କଳଙ୍କ ଲଗାଇ ଦେଲି, ସେଥିପାଇଁ ମୁଁ ଅତ୍ୟନ୍ତ ଆତ୍ମଗ୍ଲାନି ଭୋଗ କରୁଛି ।"

ସତ୍ୟଭାମା କହିଲା "ପିତଃ ! ଯାହା ତ ହେବାର ଥିଲା ହୋଇଗଲା, ସେଥିପାଇଁ ଆପଣ ଏତେ ଚିନ୍ତା କାହିଁକି କରୁଛନ୍ତି ? ଏବେ ଆପଣ ସେହି ମଣିକୁ ଭଗବାନଙ୍କ ଚରଣରେ ସମର୍ପଣ କରି ଦିଅନ୍ତୁ ।"

ସତ୍ରାଜିତ କହିଲା—"ମା ! ମୁଁ ତ ସେହିକଥା ଭାବୁଛି; କିନ୍ତୁ ସେ ଏହା ନେବେ ନାହିଁ ।"

ସତ୍ୟଭାମା କହିଲା—"ସେ କାହିଁକି ନେବେ ନାହିଁ ଯେ ? କୌଣସି ଯୁକ୍ତିଛଳରେ ତାଙ୍କୁ ନେଇ ଦେଇ ଆସନ୍ତୁ ନା ! ସେ ତ ଅତ୍ୟନ୍ତ ଭକ୍ତବତ୍ସଳ । ଯଦି କେହି ତାଙ୍କୁ ଶ୍ରଦ୍ଧା ଓ ଭକ୍ତି ସହକାରେ ଏକ ଫୁଲ, ଏକ ପତ୍ର କିମ୍ବା ଏକ ଚଳୁ ଜଳ ପ୍ରଦାନ କରେ, ତାହାହେଲେ ସେ ତ ପ୍ରେମପୂର୍ବକ ତାହା କେବଳ ଯେ ଗ୍ରହଣ କରନ୍ତି ତାହା ନୁହେଁ, ସେ ତାହା ଖାଇ ଦିଅନ୍ତି ମଧ୍ୟ । ଆପଣ ତାଙ୍କୁ ନିଜର ଶତ୍ରୁ ବୋଲି ମନେ ନ କରି

ନିଜର ସଖା ଓ ଆପଣାର ଲୋକ ବୋଲି ମନେ କରନ୍ତୁ । ସେବାଦ୍ୱାରା ତାଙ୍କୁ ପ୍ରସନ୍ନ କରନ୍ତୁ ।''

ସତ୍ୟଭାମା ଏତିକି କହି ଘରଭିତରକୁ ଚାଲିଗଲା । ସତ୍ରାଜିତ ଚିନ୍ତା କରିବାକୁ ଲାଗିଲା—''ଭଗବାନ କିପରି ପ୍ରସନ୍ନ ହେବେ, କେଉଁ କଥା କହି ମୁଁ ତାଙ୍କୁ ସନ୍ତୁଷ୍ଟ କରିବି ? ଆଜିକାଲି ସେ ବିବାହ କରିବା ପାଇଁ ମନ ବଳାଇଛନ୍ତି । ଯେଉଁଠାକୁ ଯାଉଛନ୍ତି ସେଠାରୁ ନୂଆ ବିବାହ କରି ବୋହୂ ନେଇ ଆସୁଛନ୍ତି । ମୋର କନ୍ୟା ବର୍ତ୍ତମାନ କୁମାରୀ, ଯଦିଚ ମୁଁ କୃତବର୍ମା ଓ ଅକ୍ରୂର ଆଦିଙ୍କ କଥା ମାନି ଶତଧନ୍ୱାଙ୍କୁ ବିବାହ ଦେବାପାଇଁ କଥା ପକ୍କା କରିଥିଲି; କିନ୍ତୁ ଯେ ପର୍ଯ୍ୟନ୍ତ ହାତଗଣ୍ଠି ନ ପଡ଼ିଛି, ସେ ପର୍ଯ୍ୟନ୍ତ କନ୍ୟା ପିତାର ଅଧୀନ ବୋଲି ଜାଣିବାକୁ ହୁଏ । ସେ ପର୍ଯ୍ୟନ୍ତ ପିତାର ଅଧିକାର ଅଛି, ସେ ଯାହାକୁ ଇଚ୍ଛା କରିବ ତା ହାତରେ କନ୍ୟାକୁ ସମର୍ପଣ କରି ପାରିବ । ସମୟ ସମୟରେ ତ ବିବାହ ପ୍ରସ୍ତାବ ନାନା କାରଣରୁ ଭାଙ୍ଗି ଯାଇଥାଏ । ମୋର କନ୍ୟା ସୁଶୀଳା, ଗୁଣବତୀ, ରୂପବତୀ ଓ ବୁଦ୍ଧିମତୀ । ମୁଁ ତାକୁ ଭଗବାନଙ୍କ ସହିତ ବିବାହ କରାଇ ଦେବି, ତାହାହେଲେ ସେ ମୋ ଉପରେ ପ୍ରସନ୍ନ ହେବେ । ଏହି ମଣିଟିକୁ ସେତେବେଳେ ମୁଁ ତାଙ୍କୁ ଯୌତୁକ ସ୍ୱରୂପ ଦେଇ ଦେବି । ଜାମାତା ଶ୍ୱଶୁର ସମ୍ପର୍କ ସ୍ଥାପିତ ହୋଇଯିବା ପରେ ପଛ କଥା ସବୁ ପୁରୁଣା ହୋଇଯିବ । ପୁନଶ୍ଚ ଏହି ଶୁଭକାର୍ଯ୍ୟ କରିବାଦ୍ୱାରା ମୋର କଲ୍ୟାଣ ମଧ୍ୟ ହେବ ଏବଂ ଲୋକମାନେ ଯେ କି ମୋତେ ଅଦୂରଦର୍ଶୀ, କ୍ଷୁଦ୍ର, ମୂର୍ଖ ଓ ଅର୍ଥଲୋଲୁପ ବୋଲି ଭାବି ମୋର ନିନ୍ଦାଗାନ କରୁଅଛନ୍ତି, ସେମାନେ ଆଉ ସେପରି ଭାବିବେ ନାହିଁ କି ନିନ୍ଦା ମଧ୍ୟ କରିବେ ନାହିଁ । ଏଭଳି ମନାନ୍ତର ବିରୋଧ ଭାବର ଶାନ୍ତି ପ୍ରତିଷ୍ଠା ଅନ୍ୟ କୌଣସି ଉପାୟରେ ହୋଇ ପାରିବ ନାହିଁ ।''

ଏହି କଥା ସବୁ ଚିନ୍ତାକରି ସେ ଶ୍ରୀକୃଷ୍ଣଙ୍କ ନିକଟକୁ ଗଲା ଓ ତାଙ୍କୁ କହିଲା— ''ହେ ବାସୁଦେବ ! ମୋର ଏକ ପ୍ରାର୍ଥନା ଶୁଣିବା ହୁଅନ୍ତୁ । ତାହା ସ୍ୱୀକାର କରିବେ ବୋଲି ମୁଁ ଆଶା କରେ ।''

ଭଗବାନ୍ କହିଲେ—''କହ ଭାଇ ! କଥା କ'ଣ ?''

ସେ ବିନୀତ ଭାବରେ କହିଲା—''ଆପଣ ତ ମୋ କନ୍ୟା ସତ୍ୟଭାମାକୁ ଦେଖିଛନ୍ତି ?''

ଭଗବାନ୍ ଗମ୍ଭୀର ହୋଇ କହିଲେ—''ହଁ ଦେଖିଛି ।''

ସେ ଅତି ଦୈନ୍ୟ ସ୍ୱରରେ କହିଲା—''ତେବେ ହେ ଯଦୁନନ୍ଦନ ! ମୋର ଇଚ୍ଛା ଯେ, ତାହାକୁ ଆପଣ ପତ୍ନୀରୂପେ ସ୍ୱୀକାର କରି ନିଅନ୍ତୁ ।''

ସତ୍ୟଭାମା ଥିଲେ ପୃଥିବୀର ଅଂଶାବତାର । ତେଣୁ ଭଗବାନଙ୍କର ଦୃଷ୍ଟି ପ୍ରଥମରୁହିଁ ତାଙ୍କ ଉପରେ ଥିଲା । ସେ ଭଗବାନଙ୍କର ଜନ୍ମସିଦ୍ଧପତ୍ନୀ ଥିଲେ । କିନ୍ତୁ ତାଙ୍କର ବିବାହ ପ୍ରସ୍ତାବ ପୂର୍ବରୁ ଅନ୍ୟ ସହିତ ହେବା ପାଇଁ ସ୍ଥିର ହୋଇ ସାରିଥିଲା । ଶେଷରେ ଲୋକ ଯେପରି ତାଙ୍କୁ ଏହା ନ କହିବେ ଯେ, "କୃଷ୍ଣ ଅନ୍ୟର ସ୍ତ୍ରୀକୁ ଅପହରଣ କରିବାର ବ୍ରତ କରିଛନ୍ତି," ତେଣୁ ସେ ଗମ୍ଭୀର ହୋଇ କହିଲେ—"ହେ ସତ୍ରାଜିତ ମହାଶୟ ! ମୋର ତ ଏଥି ପୂର୍ବରୁ ଦୁଇଥର ବିବାହ ହୋଇ ସାରିଛି, ତେଣୁ ମୋର ଆଉ ବିବାହ କରିବାର ଆବଶ୍ୟକତା ନାହିଁ ।"

ସତ୍ରାଜିତ ଦୀନତା ଭାବରେ କହିଲା—"ହଁ ତାହା ସତ; କିନ୍ତୁ ସେଥିରୁ କ'ଣ ଯାଏ ଆସେ ? ରାଜାମାନଙ୍କର ତ ଅନେକ ପତ୍ନୀ ଅଛନ୍ତି । ହୁଏ ତ ଆପଣଙ୍କର ତିନି ପତ୍ନୀ ହେବେ । ମୋର କନ୍ୟା ଅତି ରୂପବତୀ । ତାହାର ସଦଗୁଣର ଖ୍ୟାତି ସର୍ବତ୍ର ରହିଛି । ସେ ଅତ୍ୟନ୍ତ ସୁଶୀଳା । ଆପଣ ଚାଲନ୍ତୁ ତାକୁ ଥରେ ଦେଖି ଆସିବେ ।"

ଭଗବାନ ନିଜ କଥା ଉପରେ ଜୋର ଦେଇ କହିଲେ—"ନା କକା ! ଏହା ମୋର ଅଭିପ୍ରାୟ ନୁହେଁ । ଆପଣଙ୍କ କନ୍ୟା ଅତି ସୁନ୍ଦରୀ, କୌଣସି ଦେବତା ମଧ୍ୟ ତାକୁ ପାଇଲେ ନିଜକୁ ଭାଗ୍ୟବାନ୍ ବୋଲି ମନେ କରିବେ । କିନ୍ତୁ ବିବାହ କରିବାରେ ତ ମୁଁ ସ୍ୱାଧୀନ ନୁହେଁ । ମୋର ପିତା, ଜ୍ୟେଷ୍ଠଭ୍ରାତା ଅଛନ୍ତି, ମାତା ଅଛନ୍ତି ଓ ସବୁଠାରୁ ବୟୋଜ୍ୟେଷ୍ଠ ମୋର ଅଜା ଉଗ୍ରସେନ ଅଛନ୍ତି । ଆପଣ ଯାଇ ସେମାନଙ୍କ ସହିତ କଥାବାର୍ତ୍ତା କରନ୍ତୁ । ସେମାନେ ଯଦି ଏଥିରେ ରାଜି ହୋଇ ଆଜ୍ଞା ଦିଅନ୍ତି, ତାହାହେଲେ ମୋତେ ତ ବାଧ୍ୟ ହୋଇ ସମସ୍ତଙ୍କ କଥା ମାନିବାକୁ ପଡ଼ିବ ।"

ଏହା ଶୁଣି ସତ୍ରାଜିତ ଟିକିଏ ଆନନ୍ଦ ପ୍ରକାଶ କଲା ଓ ବସୁଦେବ, ଦେବକୀ, ବଳରାମ ଏବଂ ଉଗ୍ରସେନଙ୍କୁ ଯାଇ ଦେଖାକରି ଏହି ପ୍ରସ୍ତାବ ଉପସ୍ଥାପିତ କଲା । ସମସ୍ତଙ୍କୁ ଅନୁନୟ ବିନୟ ହୋଇ କହିଲା । ଉଗ୍ରସେନ କହିଲେ—"ଠିକ୍ ଅଛି, ମୁଁ ଭାବୁଛି ଯେ କୃଷ୍ଣର ଏଥିରେ କୌଣସି ଆପତ୍ତି କରିବାର ନାହିଁ । ଏବେ ତ ସେ ମାତ୍ର ଦୁଇଟି ପତ୍ନୀ ଗ୍ରହଣ କରିଛି । ତାର ପିତା ତେର ବିବାହ କରିଥିଲେ । ପିତାଠାରୁ ପୁତ୍ର ଅଧିକ ବିବାହ କରିବା ଉଚିତ । ଅଚ୍ଛା, ତାହାହେଲେ ତୁମେ ଗୋଟିଏ କାମକର, ତୁମେ କାଲି ରାଜସଭାକୁ ଆସ । ସେଠାରେ ମୁଁ ସମସ୍ତଙ୍କ ସାମନାରେ ତାକୁ ଏ କଥା ପଚାରି ବୁଝିବି ।"

ଉଗ୍ରସେନଙ୍କଠାରୁ ପ୍ରତିଶ୍ରୁତି ପାଇ ସତ୍ରାଜିତ ଘରକୁ ଫେରି ଆସିଲା । ପରଦିନ ଯାଦବଙ୍କର ରାଜସଭାରେ ଉପସ୍ଥିତ ହୋଇ ଉଗ୍ରସେନଙ୍କ ସମ୍ମୁଖରେ ଏହି ପ୍ରସ୍ତାବ ଉପସ୍ଥାପନ କଲା । ଉଗ୍ରସେନ ପଚାରିଲେ—"ବାସୁଦେବ ! ତୁମ ସହିତ ସତ୍ରାଜିତର କନ୍ୟା ବିବାହ ପାଇଁ ପ୍ରସ୍ତାବ ଆସିଛି । ଏଥିରେ ତୁମର କୌଣସି ଆପତ୍ତି ଅଛି କି ?"

ଭଗବାନ ସଙ୍କୋଚ ପ୍ରକାଶ କରି ଠିଆ ହୋଇ କହିଲେ—"ମହାରାଜ ! ମୁଁ ତ ଆପଣଙ୍କ ଅଧୀନ, ଆପଣମାନେ ଯେପରି ଆଜ୍ଞା ଦେବେ ତାହା ମୋତେ ପାଳନ କରିବାକୁ ହିଁ ହେବ । ଗୁରୁଜନମାନେ ମିଶି ପ୍ରଥମେ ଏ ପ୍ରସ୍ତାବ ଉପରେ ଆଲୋଚନା ସ୍ଥିର କରନ୍ତୁ । ସମସ୍ତଙ୍କ ସମ୍ମତି ହେଲେ ମୋର ଆପତ୍ତି କରିବାର କିଛି ନାହିଁ ।"

ଯାଦବଙ୍କ ମନ୍ତ୍ରିମଣ୍ଡଳରେ ଶତଧନ୍ୱା ସେତେବେଳେ ଉପସ୍ଥିତ ନ ଥିଲେ । ସେନାଧ୍ୟକ୍ଷ କୃତବର୍ମା ଥିଲେ ଓ ଦାନ ବିଭାଗର ମନ୍ତ୍ରୀ ଅକ୍ରୂର ମଧ୍ୟ ଥିଲେ । ଅକ୍ରୂରଙ୍କର ଏକ ପୃଥକ ଗୋଷ୍ଠୀ ଥିଲା । ଅନେକ ବିଷୟ ଉପରେ କୃଷ୍ଣଙ୍କ ସହିତ ସେମାନଙ୍କର ମତଭେଦ ଥିଲା । ଯଦିଓ ଏହି ମତ ଉପରେ ଅକ୍ରୂରଙ୍କ ଦଳ ଏକମତ ନ ଥିଲେ, ତଥାପି ଯେତେବେଳେ କନ୍ୟାଦାନକାରୀ କନ୍ୟାପିତା ଏହି ପ୍ରସ୍ତାବ ବାଢ଼ିଛନ୍ତି ଓ କନ୍ୟା ଗ୍ରହଣକାରୀ ପକ୍ଷରୁ ଏଥିରେ ସମ୍ମତି ପ୍ରକାଶ ପାଉଛି ଏବଂ ମହାରାଜ ଏହା ସମର୍ଥନ କରୁଛନ୍ତି, ସେତେବେଳେ ଯଦି କେହି ବିରୋଧ କରେ ତ କୌଣସି ଆଧାର ବା କାରଣ ଉପରେ ବିରୋଧ କରିବ ? ତେଣୁ ସର୍ବସମ୍ମତି କ୍ରମେ ପ୍ରସ୍ତାବ ଗୃହୀତ ହୋଇଗଲା ।

ଏବେ ବିବାହର ଆୟୋଜନ ଚାଲିଲା । ସତ୍ରାଜିତଙ୍କର ସେହି ସତ୍ୟଭାମା ହିଁ ଏକମାତ୍ର କନ୍ୟା । ସତ୍ରାଜିତ ପାଖରେ ସୁବର୍ଣ୍ଣ ପ୍ରଚୁର ପରିମାଣରେ ଥିଲା । ସେ ଖୁବ୍ ଆଡ଼ମ୍ବର ସହକାରେ ବିବାହ ଉତ୍ସବ ସମ୍ପାଦନ କଲା । ସମସ୍ତ ଯାଦବ ଏହି ଉତ୍ସବରେ ସମ୍ମିଳିତ ହେଲେ; କିନ୍ତୁ ଦ୍ୱେଷ କାରଣରୁ ଶତଧନ୍ୱା ଆସି ନ ଥିଲେ ଏବଂ କୌଣସି କାରଣ ଦର୍ଶାଇ ଅକ୍ରୂର ଓ କୃତବର୍ମା ବାହାରକୁ ଚାଲିଯାଇ ଥିବାରୁ ବିବାହ ଉତ୍ସବରେ ଯୋଗଦାନ କରି ନ ଥିଲେ । ଶାସ୍ତ୍ରୀୟ ବିଧିବିଧାନରେ ଭଗବାନ ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ ବିବାହ କଲେ । ସତ୍ରାଜିତ ମଧ୍ୟ କନ୍ୟାଦାନ କରିବା ସଙ୍ଗେ ସଙ୍ଗେ ସେହି ସ୍ୟମନ୍ତକ-ମଣିକୁ ଯୌତୁକ ସ୍ୱରୂପ ଭଗବାନଙ୍କୁ ଅର୍ପଣ କରିବାକୁ ଚାହିଁଲେ ।

ମଣିକୁ ଦେଖି ଜାମାତା ବାସୁଦେବ କହିଲେ—"ଦେଖନ୍ତୁ ପିତୃଦେବ ! କନ୍ୟା ଗ୍ରହଣ କରିବା ପାଇଁ ମୁଁ ଆପଣଙ୍କ କଥା ମାନି ନେଲି; କିନ୍ତୁ ଏ ସ୍ୟମନ୍ତକ ମଣିକୁ କଦାପି ଗ୍ରହଣ କରିବି ନାହିଁ ।"

ସମ୍ଭ୍ରମ ସହିତ ସତ୍ରାଜିତ କହିଲେ—"କାହିଁକି ମାଧବ ! କନ୍ୟା ସହିତ ଯୌତୁକ ତ ଦିଆଯାଏ, ମୁଁ ତୁମକୁ ତ କିଛି ବି ଦେଇ ନାହିଁ, କେବଳ କନ୍ୟା ପ୍ରଦାନ କରିଛି ଏଥିରେ ତୁମେ ଆପତ୍ତି କରିବା ଉଚିତ ନୁହେଁ ।"

ଭଗବାନ କହିଲେ—"ଆପଣ ଯାହା କହୁଛନ୍ତି ତାହା ସତ, ଆପଣଙ୍କର ଦେବାର ଅଧିକାର ଅଛି ଓ ମୋର ନେବାର ଅଧିକାର ବି ଅଛି । ତଥାପି ଏ ସମୟରେ ମୁଁ ଯଦି ମଣିକୁ ଗ୍ରହଣ କରେ, ତାହାହେଲେ ସମସ୍ତେ ମନେକରି ପାରନ୍ତି ଯେ, ମଣି ଲୋଭରେ ଏ ସତ୍ୟଭାମାଙ୍କୁ ବିବାହ କଲି । ମୁଁ ମାଗିବା ସମୟରେ ଯେତେବେଳେ

ତାହା ମୋତେ ନ ମିଳିଛି, ଯେତେବେଳେ ମଣି ନେବାପାଇଁ ବ୍ୟଗ୍ର ଥିଲି ଏବଂ ଆପଣ ମୋତେ ତାହା ଦେବାପାଇଁ ଯୁକ୍ତ କରିବା ମଧ୍ୟ ଉଚିତ୍ ନୁହେଁ । ଏତେବେଳେ ମୁଁ ମଣି ନେଲେ ମୋର ଅପଯଶ ହେବ ।"

ସତ୍ରାଜିତ ଦୈନ୍ୟ ଭାବରେ କହିଲେ—"ମାଧବ ! ଏଥିରେ ଅପଯଶ ହେବାର କୌଣସି କାରଣ ନାହିଁ । ମୁଁ ତ କନ୍ୟା ସହିତ ଏହାକୁ ତୁମକୁ ଦେଇସାରିଛି, ଏବେ କିପରି ଫେରାଇ ନେବି ?"

ଭଗବାନ କହିଲେ—"ଦେଖନ୍ତୁ ପିତୃଦେବ ! ଆପଣ ମୋତେ ବାଧ୍ୟ କରନ୍ତୁ ନାହିଁ । ଆପଣ ସୂର୍ଯ୍ୟନାରାୟଣଙ୍କ ଭକ୍ତ । ତାଙ୍କ ପ୍ରସାଦ ସ୍ୱରୂପ ଏହି ମଣି ଆପଣଙ୍କ ପାଖରେ ରହିବା ହିଁ ଉଚିତ । ଦିନେ ନା ଦିନେ, ଅର୍ଥାତ୍ ଆଜି ନ ହେଲେ କାଲି, କାଲି ନ ହେଲେ ପରଦିନ ତ ମୁଁ ନିଶ୍ଚିତ ଭାବରେ ସେହି ମଣିର ଅଧିକାରୀ ହେବି । ଆପଣଙ୍କର ତ କୌଣସି ପୁତ୍ର ନାହାନ୍ତି । ଆପଣଙ୍କ କନ୍ୟାର ପୁତ୍ରକୁ ହିଁ ଏହା ମିଳିବ । ସେ ପର୍ଯ୍ୟନ୍ତ ଏହା ଆପଣଙ୍କ ପାଖରେ ଥାଉ । ହଁ, ଏଥିରୁ ଆପଣ ଯେତେ ସୁବର୍ଣ୍ଣ ପାଇବେ, ଆପଣ ଚାହିଁଲେ ତାହା ପ୍ରତ୍ୟହ ମୋ ପାଖକୁ ପଠାଇ ପାରନ୍ତି, ଏଥିରେ ମୋର ଆପତ୍ତି କରିବାର କିଛି ନାହିଁ ।"

ସତ୍ରାଜିତ କହିଲେ—"ତାହାହେଲେ ଠିକ୍ ଅଛି, ପ୍ରତ୍ୟହ ଯେତେ ସୁବର୍ଣ୍ଣ ମୁଁ ଏହି ମଣି ଯୋଗୁଁ ପାଇବି, ତାହା ତୁମ ପାଖକୁ ପଠାଇ ଦେଉଥିବି ।"

ଏହା ଶୁଣି ସମସ୍ତେ ଭଗବାନଙ୍କ ବୁଦ୍ଧିକୁ ପ୍ରଶଂସା କଲେ । ସେ ଯୌତୁକ ମାଲ ପାଇବାକୁ ପାଇଲେ, ସମସ୍ତ ଅପବାଦରୁ ରକ୍ଷା ପାଇଲେ ଓ ତାଙ୍କର ତ୍ୟାଗ-ଆଦର୍ଶକୁ ସେ ବଜାୟ ରଖିଲେ । ଏହିପରି ସତ୍ୟଭାମାଙ୍କ ସହିତ ବିଧିବିଧାନ ପୂର୍ବକ ବିବାହ କରି ଭଗବାନ ଘରକୁ ଫେରି ଆସିଲେ ।"

ଶୌନକ ପଚାରିଲେ—"ହେ ସୂତ ! ଏଥିରେ ଶତଧନ୍ୱାଙ୍କୁ ତ ଭାରି ଝାସ ଲାଗିଥିବ । ଭଗବାନ ତାହାର ସମସ୍ତ ଆଶା ଆକାଂକ୍ଷାକୁ ତ ଧୂଳିସାତ୍ କରିଦେଲେ । ସେ ଭାବୁଥିବେ, ବୋହୂ ଓ ମଣି ତାଙ୍କୁ ଅବଶ୍ୟ ମିଳିବ; କିନ୍ତୁ ଏପରି ବୋହୂଟିଏ ଓ ଏପରି ମଣି ମିଳିବା ସମ୍ଭବ ନୁହେଁ । ସେ କୌଣସି ଉପଦ୍ରବ ଏଥିପାଇଁ କଲା କି ନାହିଁ ?"

ସୂତ କହିଲେ—"ହଁ, ମହାରାଜ ! ଉପଦ୍ରବ ନ କରନ୍ତା ବା କିପରି ? ମୁଁ ପରବର୍ତ୍ତୀ ପ୍ରସଙ୍ଗରେ ତାହାର ଉପଦ୍ରବ ବିଷୟରେ କହିବି । ସେ ଧନ ଉପଦ୍ରବ ହିଁ କରାଇଲା । ଯେଉଁଠାକୁ ଗଲା, ସେଠାରେ କଳହ ସୃଷ୍ଟି କରାଇଲା । ସେହି କାରଣରୁ ତ ଭଗବାନ ମଣି ନେବାକୁ ଚାହିଁ ନ ଥିଲେ । ଦାନ ଧର୍ମ ପାଇଁ କେବଳ ସେହି ମଣିର ଫଳକୁ ଗ୍ରହଣ କଲେ । ସେହି ଫଳରେ ମଧ୍ୟ ତାଙ୍କର ଆସକ୍ତି ନ ଥିଲା ।"

### ଛପ୍ପୟ

ହସ୍ତିନାପୁର ବଳ ସଙ୍ଗ ପହୁଁଚି ଦୁଃଖ ବହୁତ ମନାୟେ । 
ଭୀଷ୍ମ, ଦ୍ରୋଣ, କୃପ, ବିଦୁର ସବନ ପ୍ରତି ନେହ ଜନାୟେ ।।
ଗାନ୍ଧାରୀ ଧୃତରାଷ୍ଟ୍ର ଜୟନଙ୍କେ ନୀର ବହାବେଂ ।
ବାସୁଦେବ ତିଂଗ ବୈଠି ତନହିଁ ପ୍ରେମ୍ୟୁ କହି ସମୁଝାବେଂ ।।
ପୁଛତ ସବଙ୍କେ ଅଙ୍କବତ୍ କୈସେ ପାଣ୍ଡବ ଜରି ଗୟେ ।
ଲୋକୋଚିତ ବ୍ୟବହାର ହିତ, ତହାଁ କଛୁକ ଦିନ ରହି ଗୟେ ।।



## ସତ୍ରାଜିତର ହତ୍ୟା

ଏବଂ ଭିନ୍ନମତସ୍ତାଭ୍ୟାଂ ସତ୍ରାଜିତମସତ୍ତମଃ ।
ଶୟାନମବଧୀଲ୍ଲୋଭାତ୍ ସ ପାପଃ କ୍ଷୀଣଜୀବିତଃ ।। ※

(ଶ୍ରୀ ଭା : ୧୦ମ ସ୍କନ୍ଧ ୫୭ ଅ: ୫ ଶ୍ଳୋକ)

### ଛପପୟ

ଶତଧନ୍ୱା ଇତ ଦୁଖିତ ଶ୍ୟାମନ୍ତୀ କରତ ବୁରାଈ ।
କୃଷ୍ଣ ବଡ଼େ ଉଦଣ୍ଡ ସବନିକୀ ହରତ ଲୁଗାଈ ।।
କୃତବର୍ମା ଅକ୍ରୂର କହେଂ ଅପମାନ ହମାରେ ।
ହୈ ସତ୍ରାଜିତ୍ ଦୁଷ୍ଟ ଅଧମକୁଁ ସୋବତ୍ ମାରେ ।।
ସୁନି ଶତଧନ୍ୱା ଚଲି ଦିୟେ, ହ୍ରୈକେଂ ଦୋଉନ ତେଂ ବିଦା ।।
ବଚ୍ଛେଂ ପରଇ ଫୂଁକ ତେଂ, ଶଠ ଔର ମୂରଖ ସଦା ।।

※ ଆପଣା ଘରେ ଶତଧନୁ । କୋପେ କମ୍ପର ତାର ତନୁ ।।
ବସ୍ତ୍ର ପିନ୍ଧିଲ ଭିଡ଼ି ଗାଢ଼େ । ଜଣେ ଯେନେକ ଯମଦାଢ଼େ ।।
ରାତେ ମିଳିଲ ତାର ପୁରେ । ଶତ୍ରାଜିତର ଶଯ୍ୟାଠାରେ ।।
ଦଇବେ କ୍ଷୀଣ ତା ଜୀବନ । ଯାହା ସହିଲେ ଭଗବାନ ।।
ମୁଣ୍ଡି ଶିର୍ଣ୍ଣି କରି ଅବହେଳା । ଛେଦିଲା ଶତ୍ରାଜିତ ଗଳା ।।

( ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୫୪)

ମନ ମଧ୍ୟରେ ଯେତେବେଳେ ଦ୍ୱେଷ ଉତ୍ପନ୍ନ ହୁଏ ସେତେବେଳେ ମନୁଷ୍ୟର କର୍ତ୍ତବ୍ୟାକର୍ତ୍ତବ୍ୟ ବିବେକ ରହେ ନାହିଁ । ଯାହା ନ କରିବାର କଥା, ସେ ତାହା କରିପକାଏ । ତାହାର ପରିମାଣ ସ୍ୱରୂପ ଅନ୍ୟାସ୍ୱକାଙ୍କ୍ଷାର ଭୁରନ୍ତ ବିନାଶ ହୁଏ । ଅଧିକ ପାପ ଓ ଅଧିକ ପୁଣ୍ୟର ଫଳ ତିନିଦିନ ମଧ୍ୟରେ, ତିନି ପକ୍ଷ ମଧ୍ୟରେ, ତିନିମାସ ମଧ୍ୟରେ ବା ତିନିବର୍ଷ ମଧ୍ୟରେ ନିଶ୍ଚିତ ଭାବରେ ମିଳିଥାଏ । ପାପ କର୍ମ କେବେହେଲେ ଲୁଚି ରହେନାହିଁ ଓ ପାପୀର ସାଥୀ ମଧ୍ୟ ଦିନେ ପାପୀକୁ ଛାଡ଼ି ଚାଲିଯାଏ । ଅଧର୍ମ କରି ଯଦି କେହି ସୁଖୀ ହେଉଥାଆନ୍ତେ, ତାହାହେଲେ ଏତେ ବଡ଼ ବଡ଼ ବିଦ୍ୱାନ୍ ଲୋକ କଷ୍ଟ ସହି ସହି କାହିଁକି ଧର୍ମୋପାର୍ଜନ କରୁଥାଆନ୍ତେ ?

ସୂତ କହିଲେ—"ମୁନିଗଣ ! ସତ୍ୟଭାମାଙ୍କୁ ବିବାହକରି ଭଗବାନ ଦ୍ୱାରକା-ପୁରୀରେ ସୁଖରେ ଅବସ୍ଥାନ କଲେ । ଏବେ ତାଙ୍କର ରୁକ୍ମିଣୀ, ଜାମ୍ବବତୀ ଓ ସତ୍ୟଭାମା ଏହି ତିନି ପାଟରାଣୀ ହେଲେ । ଯେଉଁଦିନଠାରୁ ଅକ୍ରୂର ହସ୍ତିନାପୁର ଫେରି ଆସିଥିଲେ, ସେହିଦିନଠାରୁ ଭଗବାନ ପାଣ୍ଡବଙ୍କ ବିଷୟ ଚିନ୍ତା କରୁଥିଲେ । ସେ ଯେତେବେଳେ ଶୁଣିଲେ ଯେ, ଧୃତରାଷ୍ଟ୍ରଙ୍କ ବ୍ୟବହାର ତାଙ୍କ ସହିତ ଭଲ ନୁହେଁ, ତାଙ୍କର ଦୁର୍ଯ୍ୟୋଧନାଦି ପୁତ୍ର ପାଣ୍ଡବଙ୍କ ସହିତ ଦ୍ୱେଷ ରଖିଛନ୍ତି, ତେଣୁ ସେଥିପାଇଁ ସେ ଚିନ୍ତିତ ଥିଲେ ଓ ପାଣ୍ଡବଙ୍କ ସହିତ ମିଳିତ ହେବାକୁ ଚାହୁଁଥିଲେ । କିନ୍ତୁ ଜରାସନ୍ଧ, କାଳଯବନ ଆଦି କେତେଥର ମଥୁରା ଉପରେ ଆକ୍ରମଣ କରି ଥିବାରୁ ତାଙ୍କୁ ମଥୁରା ଛାଡ଼ି ଆସିବାକୁ ପଡ଼ିଥିଲା ।

ଦ୍ୱାରକାକୁ ଆସି ମଧ୍ୟ ରୁକ୍ମିଣୀ ହରଣ ଆଦି ଘଟଣା ନେଇ ତାଙ୍କୁ ଯୁଦ୍ଧ କରିବାକୁ ପଡ଼ିଲା । ସେଥିପାଇଁ ସେ ପାଣ୍ଡବଙ୍କ ସହିତ ମିଳିତ ହେବାପାଇଁ ହସ୍ତିନାପୁର ଯାଇପାରୁ ନଥିଲେ ।"

ଏଣେ ଦୁର୍ଯ୍ୟୋଧନ ଆଦି ପାଣ୍ଡବଙ୍କ ସହିତ ଦିନକୁ ଦିନ ଶତ୍ରୁତା ବୃଦ୍ଧି କରିବାକୁ ଲାଗି ଥାଆନ୍ତି । ସେ ଚାହୁଁ ଥାଆନ୍ତି ପାଣ୍ଡବଙ୍କୁ କୌଣସି ପ୍ରକାରେ ମାରିଦେଲେ ନିଷ୍କଣ୍ଟକ ଭାବରେ ରାଜ୍ୟ ଶାସନ କରିବେ । ଏଥିପାଇଁ ସେମାନେ ମନ୍ତ୍ରୀମାନଙ୍କ ସହିତ ପରାମର୍ଶ କରି ପ୍ରୟାଗରାଜଠାରୁ କିଛି ଦୂରରେ ଗଙ୍ଗାତଟରେ ବାରଣାବର୍ତ୍ତଠାରେ (ସିରସା-ସମୀପସ୍ଥ ଲକ୍ଷାଗୃହ) ଏକ ଜତୁଘର ନିର୍ମାଣ କରାଇଲେ । ତାହା ଏତେ ଗୁପ୍ତଭାବରେ ନିର୍ମିତ ହୋଇଥିଲା ଯେ, ଯେପରି ତାହା ଜତୁଘର ବୋଲି କେହି ଜାଣିପାରିବେ ନାହିଁ । ବାରଣାବର୍ତ୍ତ କୁରୁଦେଶର ସୀମାରେ ଅବସ୍ଥିତ । ସେଠାରେ ସୋମବତୀ ଅମାବାସ୍ୟାକୁ ଖୁବ୍ ବଡ଼ଧରଣର ମେଳା ଅନୁଷ୍ଠିତ ହେଉଥିଲା ଓ ଏବେ ମଧ୍ୟ ହେଉଅଛି । ଦୁର୍ଯ୍ୟୋଧନ ଚାହୁଁଥିଲେ, ମେଳା ସମୟରେ ପାଣ୍ଡବଙ୍କୁ ବାରଣାବର୍ତ୍ତ ପଠାଇଦେବେ ଓ ସେଠାରେ ସେମାନଙ୍କୁ ସେହି ଜତୁଘରେ ରଖାଇବେ । ସମୟ ଓ ସୁବିଧା ଦେଖି ରାତ୍ରି-

କାଳରେ ସେହିଘରେ ନିଆଁ ଲଗାଇ ଦେବେ । ଏହାଦ୍ୱାରା ଶୋଇଥିବା ଅବସ୍ଥାରେ ସମସ୍ତେ ଜଳିପୋଡ଼ି ମରିଯିବେ । ଏପରି କରିବା ଦ୍ୱାରା ତାଙ୍କ ଶତ୍ରୁମାନେ ନାଶ ହେବେ ଓ ତାଙ୍କୁ କେହି ଅପଯଶ ଦେବେ ନାହିଁ । ଏହିକଥା ଚିନ୍ତାକରି ସେ ନିଜର ଜଣେ ଚତୁର ମନ୍ତ୍ରୀ ଦ୍ୱାରା ଜତୁଘର ନିର୍ମାଣ କରାଇଲେ ।

ବିଦୁର ତ ଧୃତରାଷ୍ଟ୍ରଙ୍କର ପ୍ରଧାନମନ୍ତ୍ରୀ ଥିଲେ, ତାଙ୍କୁ କୌଣସି କଥା ଅଛପା ନଥିଲା । ସେ ଦୁର୍ଯ୍ୟୋଧନ, କର୍ଣ୍ଣ, ଦୁଃଶାସନ ଓ ଶକୁନି ଆଦିଙ୍କ ପଛରେ ନିଜର ଗୁପ୍ତଚର ଲଗାଇଥିଲେ । ତେଣୁ ତାଙ୍କୁ ଦୁର୍ଯୋଧନର ଗୁପ୍ତ ମନ୍ତ୍ରଣା ଓ ଦୁର୍ବିଗ୍ରହ କଥା ଜଣାପଡ଼ିଗଲା । ସେଥିପାଇଁ ସେ ନିଜେ ସେହି ଜତୁଘର ଥିବା କାଲି ମଧ୍ୟରେ ଶିଳ୍ପୀଙ୍କୁ ଡକାଇ ଏପରି ଗୁପ୍ତ ସୁଡ଼ଙ୍ଗ ତିଆରି କରାଇଥିଲେ ଯେ, ସେହିପଥ ଦେଇ ଆସିଲେ ଶୀଘ୍ର ଗଙ୍ଗା ପାର ହୋଇଯାଇ ହେବ । ସେଠାରେ ସେ ନିଜର ଜଣେ ବିଶ୍ୱାସୀ ଲୋକକୁ ସୁଦୃଢ଼ ନୌକା ଦେଇ ସଜାଗ ରହିବାକୁ କହିଥିଲେ । କାରଣ ଯଦି କୌଣସି ଦୁର୍ଯ୍ୟୋଗ ଘଟେ, ତେବେ ପାଣ୍ଡବଙ୍କୁ ସେହି ନୌକାରେ ତୁରନ୍ତ ଗଙ୍ଗାପାର କରାଇ ହେବ ।

ଧର୍ମରାଜ ଯୁଧିଷ୍ଠିର ତ ଅତ୍ୟନ୍ତ ସରଳ ବିଶ୍ୱାସୀ ଥିଲେ, ତାଙ୍କୁ ଦୁର୍ଯ୍ୟୋଧନର ଷଡ଼ଯନ୍ତ୍ର ଜଣାନଥିଲା । ଯେତେବେଳେ ଜତୁଘର (କାଲି) ନିର୍ମାଣ ସରିଲା, ସେତେବେଳେ ଦୁର୍ଯୋଧନ ନିଜର ପିତା ଧୃତରାଷ୍ଟ୍ରଙ୍କଦ୍ୱାରା ପାଣ୍ଡବଙ୍କୁ ଡକାଇ କୁହାଇଲା ଯେ, "ବାରଣାବର୍ତ୍ତରେ ଏକ ବଡ଼ଧରଣର ମେଳା ହେଉଅଛି । ତୁମେ ପାଞ୍ଚଭାଇ ସେଠାକୁ ଯାଇ କିଛିଦିନ ରୁହ । ଏଠାରେ ତୁମ୍ଭମାନଙ୍କର ମନ ବି ଭଲ ରହୁନାହିଁ । ପରସ୍ପର ମଧ୍ୟରେ ମନୋମାଳିନ୍ୟ ଘଟୁଥିବାରୁ ତୁମ୍ଭେମାନେ ଉଦାସୀନ ହୋଇପଡ଼ୁଛ । ସେଠାରେ ଯାଇ କିଛିଦିନ ରହିଲେ ତୁମ୍ଭମାନଙ୍କର ମନ ବଦଳି ଯିବ । ଛଅ ମାସ କିମ୍ବା ଏକବର୍ଷ ସେଠାରେ ରହି ପୁନଶ୍ଚ ଏଠାକୁ ଫେରି ଆସିବ ।"

ପାଣ୍ଡବ ତ ଏହା ଚାହୁଁଥିଲେ ଯେ, କିପରି ସେମାନେ ଦୁର୍ଯୋଧନ ନିକଟରୁ ଦୂରେଇ ରହିବେ । ତେଣୁ ସେମାନେ ଧୃତରାଷ୍ଟ୍ରଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କଲେ । ମହାରାଣୀ କୁନ୍ତୀଙ୍କ ସହିତ ପଞ୍ଚୁ ପାଣ୍ଡବ ବାରଣାବର୍ତ୍ତ ଯିବାପାଇଁ ପ୍ରସ୍ତୁତ ହୋଇଗଲେ । ସେମାନେ ଯିବା ସମୟରେ ବିଦୁର ମ୍ଳେଚ୍ଛ ଭାଷାରେ ଧର୍ମରାଜ ଯୁଧିଷ୍ଠିରଙ୍କୁ ସବୁ ବିଷୟ ବୁଝାଇ କହିଦେଲେ ଓ ଏହା ମଧ୍ୟ କହିଥିଲେ ଯେ, ମୁଁ ତୁମ ବାହାରିବା ପାଇଁ ଏକ ସୁଡ଼ଙ୍ଗ କରିଛନ୍ତି ଓ ଗଙ୍ଗାକୂଳରେ ନୌକାଧରି ତୁମକୁ ଗଙ୍ଗା ପାର କରାଇବା ପାଇଁ ଜଣେ ବିଶ୍ୱସ୍ତ ଲୋକକୁ ରଖାଇଛୁ । ଏହା ଶୁଣି ଧର୍ମରାଜ ଯୁଧିଷ୍ଠିର ଆଗରୁ ସାବଧାନ ହୋଇଗଲେ ।

ବାରୁଣାବର୍ତ୍ତରେ ପହଞ୍ଚିବା ମାତ୍ରେ ସେଠାର ରାଜ୍ୟାଧିକାରୀ ପାଣ୍ଡବଙ୍କର ସ୍ୱାଗତ ସତ୍କାର କଲେ ଓ ସେମାନଙ୍କୁ ଅତି ଆଦରର ସହିତ ଜତୁଘରେ ନେଇ ରଖାଇଲେ ।

ଦୂର୍ଯ୍ୟୋଧନଙ୍କର ଜଣେ ଦୁଷ୍ଟ ମନ୍ତ୍ରୀ ସେଠାରେ ରାଜ୍ୟାଧିକାରୀ ଭାବରେ ଏହି କାର୍ଯ୍ୟ କରିବା ପାଇଁ ଥିଲା । ପାଣ୍ଡବ ସେହି ଘରେ ରହିବା ସଙ୍ଗେ ସଙ୍ଗେ ନିଜର ପ୍ରସ୍ଥାନ କରିବାର ମାର୍ଗ ଦେଖି ରଖିଥିଲେ ଓ ସର୍ବଦା ସଜାଗ ରହୁଥିଲେ । ଦିନେ ସୁବିଧା ଦେଖି ସେହି ମନ୍ତ୍ରୀ ଜଉଘରେ ନିଆଁ ଲଗାଇ ଦେଲା । ଭୀମସେନ ଜାଗ୍ରତ ଥିଲେ, ସେ ସଙ୍ଗେ ସଙ୍ଗେ ମାତା କୁନ୍ତୀ ଓ ଭାଇମାନଙ୍କୁ ସଙ୍ଗରେ ନେଇ ସୁଡ଼ଙ୍ଗ ମଧ୍ୟ ଦେଇ ଯାଇ ଗଙ୍ଗା କୂଳରେ ସକୁଶଳେ ପହଞ୍ଚିଲେ ଓ ନୌକାରେ ପାର ହୋଇ ଲୁଚି ଲୁଚି ବ୍ରାହ୍ମଣ ବେଶରେ ଏକଚକ୍ରା ନଗରୀରେ ରହିବାକୁ ଲାଗିଲେ ।

ଦୁର୍ଯୋଗକୁ ସେଦିନ ଏକ ଦୁଃଖଦ ଘଟଣା ଘଟିଥିଲା । ଯେଉଁଦିନ ଅଗ୍ନି ସଂଯୋଗ କରାଗଲା, ସେଦିନ ଗୋଟିଏ ଭିକାରୁଣୀ ନିଜର ପାଞ୍ଚ ପୁତ୍ରଙ୍କୁ ନେଇ ପାଣ୍ଡବଙ୍କ ନିକଟକୁ ଭୋଜନ ମାଗିବାକୁ ଆସିଥିଲା । ପେଟଭରି ଭୋଜନ କରି ସେମାନେ ସେହି ଜଉଘରେ ଶୋଇ ଯାଇଥିଲେ । ଜଉଘରେ ନିଆଁ ଲାଗିଯିବାରୁ ସେମାନେ ଜଳିପୋଡ଼ି ମରିଗଲେ । ବିଦୁରଙ୍କର ସେହି ଶିଳ୍ପୀ ପ୍ରାତଃକାଳରେ ଜଉ କଢ଼ା ଯାଉଥିବା ବେଳରୁରେ ସୁଡ଼ଙ୍ଗ ଦ୍ୱାର ସବୁ ବନ୍ଦ କରିଦେଲେ । ଲୋକମାନେ ଯେତେବେଳେ ଛଅଟି ଶବ ସେଠାରେ ଦେଖିଲେ ସେତେବେଳେ ନିଶ୍ଚିତ ହୋଇଗଲେ ଯେ, କୁନ୍ତୀ ସହିତ ପଞ୍ଚୁ ପାଣ୍ଡବ ଜଉଘରେ ଜଳିପୋଡ଼ି ମରି ଯାଇଛନ୍ତି । ଏହି ସମାଚାର ପାଇ ଦୁର୍ଯ୍ୟୋଧନ ଅତ୍ୟନ୍ତ ଆନ୍ତରିକ ପ୍ରସନ୍ନତା ଅନୁଭବ କଲେ । କିନ୍ତୁ ବାହାରକୁ ଦେଖାଇ ହୋଇ ଶୋକ କରିବାକୁ ଲାଗିଲେ । ପାଣ୍ଡବଙ୍କର ସମସ୍ତ ମୃତାହ କର୍ମ ଅତି ଉଦାରତାର ସହିତ ପାଳନ କରାଗଲା । ନିଜର ବନ୍ଧୁ ବାନ୍ଧବଙ୍କୁ ଏହି ଦୁଃଖଦ ସମାଚାର ପଠାଇ ଦିଆଗଲା ।

ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ଅନ୍ତଃପୁରରେ ସୁଖରେ ବସିଥିଲେ । ହସ୍ତିନାପୁରରୁ ଆସିଥିବା ଦୂତକୁ ସଙ୍ଗରେ ନେଇ ଦ୍ୱାରପାଳ ଶ୍ରୀକୃଷ୍ଣଙ୍କ ପାଖରେ ପହଞ୍ଚାଇ ଦେଲା । ଦୂତ ପ୍ରଣାମ କରି କହିଲା—"ପ୍ରଭୋ ! ବାରଣାବତରେ ଏକ ଦୁର୍ଘଟଣାରେ ପଞ୍ଚୁପାଣ୍ଡବ ଓ ମହାରାଣୀ କୁନ୍ତୀ ଜଳିପୋଡ଼ି ମରିଗଲେ । ଅମୁକଦିନ ସେମାନଙ୍କର ଶୁଦ୍ଧିଶ୍ରାଦ୍ଧକ୍ରିୟା ହେବ ।

ଭଗବାନ ତ ସର୍ବଜ୍ଞ ଥିଲେ; ତେଣୁ ତାଙ୍କୁ ସମସ୍ତ କଥା ଜଣାଥିଲା । ସେ ଭାବୁଥିଲେ ପାଣ୍ଡବଙ୍କୁ ମାରିବାର ଶକ୍ତି କାହାର ବା ଅଛି । ସେମାନଙ୍କ ଦ୍ୱାରା ମୋତେ ତ ସମସ୍ତ ଭୂଭାର ହରଣ କରିବାକୁ ହେବ । ତଥାପି ନରନାଟ୍ୟ କରିବା ଅଳରେ ସେ ଅତ୍ୟନ୍ତ ଶୋକ ପ୍ରକାଶ କଲେ । ବଳରାମଙ୍କୁ କହିଲେ—"ଭାଇ ! ଏପରି ସମୟରେ ଆମକୁ ନିଶ୍ଚିତ ଭାବରେ ହସ୍ତିନାପୁର ଯିବାକୁ ପଡ଼ିବ । ଅଭ୍ୟୁଦୟ କାଳରେ ଓ ଶୋକ ସମୟରେ ବନ୍ଧୁ ବାନ୍ଧବଙ୍କୁ ସହାନୁଭୂତି ଦେଖାଇବା ପାଇଁ ଯିବା ଏକାନ୍ତ ଆବଶ୍ୟକ । ଅଭ୍ୟୁଦୟ ସମୟରେ ଅଡରେ ବି ନ ଯାଆନ୍ତୁ; କିନ୍ତୁ ଶୋକ ସମୟରେ ଯିବା ତ ଅତି ଆବଶ୍ୟକ ।"

ବଳଦେବ କହିଲେ—"ହଁ ଭାଇ ! ଆମକୁ ନିଶ୍ଚୟ ଯିବାକୁ ହେବ ।" ଦୁଇଭାଇ ଏହି ପ୍ରକାର ଆଲୋଚନା କରି ରଥରେ ବସି ସଙ୍ଗେ ସଙ୍ଗେ ହସ୍ତିନାପୁରକୁ କୁଳୋଚିତ ବ୍ୟବହାର ପାଳନ କରିବା ପାଇଁ ବାହାରିଲେ । ସେଠାରେ ପହଞ୍ଚି ସେ ଦୁହେଁ ସର୍ବପ୍ରଥମେ କୁରୁକୁଳ ପିତାମହ ଭୀଷ୍ମଙ୍କୁ ସାକ୍ଷାତ କଲେ । ତାହାପରେ ଧୃତରାଷ୍ଟ୍ର, ଦ୍ରୋଣାଚାର୍ଯ୍ୟ, କୃପାଚାର୍ଯ୍ୟ, ବିଦୁର ଓ ଗାନ୍ଧାରୀ ଆଦିଙ୍କୁ ସାକ୍ଷାତ କଲେ । ନରନାଟ୍ୟ ପ୍ରଦର୍ଶନ କରିବା ନିମିତ୍ତ ଭଗବାନ୍ ନ ଜାଣିଲା ପରି ବାରମ୍ବାର ଆଖିରୁ ଲୁହ ଗଡ଼ାଇ ପଚାରୁ ଥାଆନ୍ତି "ସେମାନେ କିପରି ପୋଡ଼ିଗଲେ ? କେହି କଣ ନିଆଁ ଲିଭାଇ ପାରିଲେ ନାହିଁ ? ସେଠାରେ କ'ଣ କେହି ରକ୍ଷାକରିବାକର ନ ଥିଲେ ? ସହସା ଅଗ୍ନି କିପରି ଏତେ ପ୍ରଚଣ୍ଡ ଆକାର ଧାରଣ କଲା ?" ଏହି ସବୁ କଥାର କେହି ସନ୍ତୋଷଜନକ ଉତ୍ତର ନ ଦେବାରୁ ସେ ନିଜେ ନିଜେ କହିବାକୁ ଲାଗିଲେ—"ହଁ ଶହେ କଥାରୁ ଏହା ଗୋଟିଏ କଥା ଯେ, ଯାହାର ଯେତେବେଳେ ମୃତ୍ୟୁକାଳ ଉପସ୍ଥିତ ହୁଏ, ସେତେବେଳେ ତାହାର ସମସ୍ତ ସାଧନ ଏହିପରି ହୋଇଯାଏ । ପ୍ରାରବ୍ଧକୁ କେହି ଖଣ୍ଡନ କରି ନ ପାରେ । ଯାହା ହେବାର କଥା, ତାହା ଆଗରୁ ବିଧି ନିର୍ଦ୍ଦିଷ୍ଟ । ଦେଖ, କେତେ କଷ୍ଟରେ ମହାରାଣୀ କୁନ୍ତୀଙ୍କଠାରୁ ଦେବତାମାନଙ୍କ ଔରସରେ ଏହି ପୁତ୍ରମାନେ ଜନ୍ମଗ୍ରହଣ କରିଥିଲେ । ଏବେ ମହାରାଜ ପାଣ୍ଡୁଙ୍କ ବଂଶରେ କେହିହେଲେ ରହିଲେ ନାହିଁ ।" ଏହିପରି ନିଜର ସହାନୁଭୂତି ପ୍ରକାଶ କରି ବଳଦେବଙ୍କ ସହିତ ଶ୍ୟାମସୁନ୍ଦର କିଛିଦିନ ହସ୍ତିନାପୁରରେ ଅଟକିଗଲେ ।

ଏବେ ଯେତେବେଳେ ଦ୍ୱାରକାରେ ଭଗବାନ ଅନୁପସ୍ଥିତ ରହିଲେ, ସେତେ-ବେଳେ ଲୋକମାନେ ନିର୍ଭୟ ହୋଇଗଲେ । ଶତଧନ୍ୱାଙ୍କ ହୃଦୟରେ ଦ୍ୱେଷର ବହ୍ନି ପ୍ରଜ୍ୱଳିତ ହେଉଥିଲା । ଅକ୍ରୂର ଓ ତାଙ୍କ ମନ୍ତ୍ରୀମଣ୍ଡଳ ସହିତ ତାଙ୍କର ଖୁବ୍ ସଦ୍ଭାବ ଥିଲା । କୃତବର୍ମା ମଧ୍ୟ ଅକ୍ରୂରଙ୍କ ଦଳର ଲୋକ ଥିଲେ । ଏହିମାନେ ହିଁ ସତ୍ରାଜିତକୁ ପ୍ରଥମେ କହିବୋଲି ଶତଧନ୍ୱାଙ୍କ ସହିତ ସତ୍ୟଭାମାଙ୍କର ବିବାହ ହେବାପାଇଁ ସ୍ଥିରକାରାଇ ଥିଲେ । ତେଣୁ ଶତଧନ୍ୱା ଅକ୍ରୂରଙ୍କ ପାଖକୁ ଗଲା ଓ ଉଦାସ ହୋଇ କହିଲା—"ହେ ଅକ୍ରୂର ! ଦେଖ ଏହି ସତ୍ରାଜିତ୍ ମୋତେ କେତେ ଅପମାନିତ କରିଛି । ସେ ଯଦି ତାହାର କନ୍ୟାକୁ ମୋତେ ବିବାହ ଦେବାର ଇଚ୍ଛା କରୁ ନ ଥିଲା, ତାହାହେଲେ କଥା ପକ୍କା କରୁଥିଲା କାହିଁକି ? ଏବେ ମୁଁ ତ କାହାରିକୁ ମୁହଁ ଦେଖାଇ ପାରୁନାହିଁ ।"

ଶୁଣି ଆଡ଼କୁ ଚାହିଁ ଅକ୍ରୂର ଓ କୃତବର୍ମା ଦୁହେଁ ଧୀରେ ଧୀରେ କହିବାକୁ ଆରମ୍ଭ କଲେ—"ଭାଇ ! ଏଥିରେ କେବଳ ତୁମର ନୁହେଁ, ଆମ ସମସ୍ତଙ୍କୁ ମଧ୍ୟ ଖୁବ୍ ଅପମାନ ହୋଇଛି । ଆମ୍ଭେମାନେ କହିବାରୁ ହିଁ ସେ ତୁମ ସହିତ କନ୍ୟାର ବିବାହ ସମ୍ବନ୍ଧରେ କଥା ପକ୍କା କରିଥିଲା । କଥାଦେଇ ମଧ୍ୟ ସେ ପଛରେ ଆମ କଥା ଉପରେ ଗୁରୁତ୍ୱ

ନ ଦେଇ ଶ୍ରୀକୃଷ୍ଣଙ୍କ ସହିତ ନିଜର କନ୍ୟାକୁ ବିବାହ ଦେଲା । ତେଣୁ ସେହି ଦୁଷ୍ଟକୁ ଦଣ୍ଡ ଦେବା ଉଚିତ୍ ।''

ଶତଧନ୍ୱା କହିଲା—''କି ପ୍ରକାର ଦଣ୍ଡ ଦିଆଯିବ ? ମହାରାଜ ଉଗ୍ରସେନ ତ ସମ୍ପୂର୍ଣ୍ଣ ସଭା ଡକାଇ ସମସ୍ତଙ୍କ ଠାରୁ ସମ୍ମତି ନେଇ ବିବାହ କରାଇଲେ, ତେଣୁ ରାଜଦ୍ୱାରରେ ଅଭିଯୋଗ ତ କରିବାର ଉପାୟ ନାହିଁ ? ଏବେ ତୁମ୍ଭେମାନେ ଅନ୍ୟ କୌଣସି ଉପାୟ କୁହ ।''

କୃତବର୍ମା ଚୁପ୍‌କରି କହିଲା—''ଆରେ ! ଅଭିଯୋଗ ଫଭିଯୋଗ କ'ଣ ଏ କ୍ଷେତ୍ରରେ ଚଳିବ ? ତା'ର ଭାଇ ଯେଉଁ ମାର୍ଗରେ ଗଲା, ଇଏ ମଧ୍ୟ ସେହିମାର୍ଗ ଅନୁସରଣ କରିବ । ଏହାର ଭାଇକୁ ପଶୁ ସିଂହ ମାରିଦେଲା । କିନ୍ତୁ ଏହାର ମୃତ୍ୟୁ ପୁରୁଷସିଂହ ହାତରେ ହିଁ ହେବ । ଏବେ ଉପଯୁକ୍ତ ସମୟ । ଶ୍ରୀକୃଷ୍ଣ ଏବେ ଏଠାରେ ନାହାନ୍ତି । ଏତିକବେଳେ ସେ ଦୁଷ୍ଟକୁ ଯାଇ ମାରିଦିଅ । ଆମେସବୁ ତ ତୁମ ସାଥୀ, ତେଣୁ କଥାକୁ ଘୋଡ଼ାଇ ପକାଇବୁ । ରାମ-କୃଷ୍ଣ ଆସୁ ଆସୁ କଥା ପୁରୁଣା ହୋଇ ଯାଇଥିବ । ବୋହୂ ତ ହାତମୁଠାରୁ ଖସି ଯାଇଛି, ମଣିକୁ ତ ସେ ନେଇ ନାହିଁ, ତାକୁ ଆମେ ଅଧିକାର କରିନେବା ।''

କଥାରେ ଅଛି —''ମୂର୍ଖ ଓ ଶଙ୍ଖ ଅନ୍ୟର ଫୁଙ୍କିବା ଦ୍ୱାରା ବାଜେ । ଶତ-ଧନ୍ୱାର ହୃଦୟ ତ ଈର୍ଷା ଅଗ୍ନିରେ ଜଳୁଥିଲା, ଅକ୍ରୂର ଓ କୃତବର୍ମାଙ୍କର ଅନୁମୋଦନ କ୍ରମେ ତାହାର ସାହସ ଅନେକ ବଢ଼ିଗଲା । ସେ ହାତରେ ଖଡ୍‌ଗଧରି ପ୍ରତିଜ୍ଞାକଲା, 'ଆଜି ମୁଁ ଦୁଷ୍ଟ ସତ୍ରାଜିତକୁ ତାହାର କର୍ମଫଳ ଚଖାଇବି । ଆଜି ଦେ ମୋଠାରୁ ରକ୍ଷା ପାଇ ପାରିବ ନାହିଁ । କାଲି ସ୍ୟମନ୍ତକ ମଣି ମୋ ଅଧିକାରକୁ ଆସିବ । ସେଥିରୁ ଯେତେ ସୁବର୍ଣ୍ଣ ମିଳିବ, ସେଥିରୁ ମୁଁ ତୁମମାନଙ୍କୁ ଭାଗଦେବି । ତୁମେ ଯେପରି ଚାହିଁବ ସେପରି ତାହା ବ୍ୟୟ କରିପାରିବ ।' ଏହିପରି କହି ବିଦ୍ୱେଷଅଗ୍ନିରେ ଯାହାର ହୃଦୟ ସନ୍ତପ୍ତ ହେଉଥିଲା ଓ ଯାହାର ମୃତ୍ୟୁକାଳ ସନ୍ନିକଟ ହୋଇ ଆସୁଥିଲା, ସେହି କ୍ରୂରକର୍ମା ଶତଧନ୍ୱା ନିଜ ଘରକୁ ଫେରି ଆସିଲା । ଘରେ ତାକୁ ଶାନ୍ତି ମିଳିଲା ନାହିଁ । ସେ ସନ୍ଧ୍ୟା ହେବା ପର୍ଯ୍ୟନ୍ତ ଘରେ ପ୍ରତୀକ୍ଷା କଲା । ସୂର୍ଯ୍ୟାସ୍ତ ହୋଇ କ୍ରମେ ରାତି ଅଧ ହୋଇ ଆସିବାରୁ ସେ ହସ୍ତରେ ତୀକ୍ଷ୍ଣ ଖଡ୍‌ଗ ଧରି ଠିଆ ହେଲା । ସେତେବେଳେ ସତ୍ରାଜିତ ସୁନ୍ଦର ସୁବର୍ଣ୍ଣ ଶଯ୍ୟାରେ ଆରାମରେ ଶୋଇ ଯାଇଥିଲା । ଭଗବାନ୍ ଦ୍ୱାରକାରେ ନଥିବାରୁ ସତ୍ୟଭାମା ମଧ୍ୟ ପିତାଳୟରେ ଆସି ରହିଥିଲା, ସୁବର୍ଣ୍ଣ ନିର୍ମିତ ଭବନର ଏକ କୋଠରୀରେ ସତ୍ରାଜିତ ଶୟନ କରିଥିଲା ଓ ସମ୍ମୁଖ କୋଠରୀରେ ତାହାର ପତ୍ନୀ ନିଜର କନ୍ୟା ସତ୍ୟଭାମାକୁ ନେଇ ଶୟନ କରିଥିଲା । ସେହି ସମୟରେ ଶତଧନ୍ୱା ଘରଭିତରେ ପ୍ରବେଶ କଲା । ଆସିବା ମାତ୍ରେ ସେ ସତ୍ରାଜିତକୁ ସେହି ଶଯ୍ୟାରେ ବାନ୍ଧି ପକାଇଲା ଓ

ତାକୁ ଜାଗ୍ରତ କରାଇ କହିଲା, "ରେ ନୀଚ ! ରେ ଦୁଷ୍ଟ ପାପୀ ! ତୁ ମୋତେ ଅପମାନିତ କରିଅଛୁ, ଏବେ ତୁ ତୋ ଖାଇ ନିକଟକୁ ଯିବାକୁ ପ୍ରସ୍ତୁତ ହୁଅ । କହ, ସେ ମଣି କେଉଁଠି ଅଛି ?"

ସତ୍ରାଜିତ ଗାଢ଼ ନିଦ୍ରାରେ ଶୟନ କରିଥିଲା, ପ୍ରଥମେ ସେ ନିଦବାଉଳାରେ ତ କିଛି ବୁଝି ପାରି ନଥିଲା, ଯେତେବେଳେ ତାହାର ନିଦ ଭାଙ୍ଗିଗଲା, ସେତେବେଳେ ସେ ସମସ୍ତ ରହସ୍ୟ ବୁଝି ପାରିଲା । ସେ ଦୀନତାର ସହିତ କହିଲା, 'ଭାଇ ! ଦେଖ, ମୋତେ ପଶୁଙ୍କଭଳି ଏପରି ହତ୍ୟା କର ନାହିଁ । ତୁମର ମଣି ଆବଶ୍ୟକ ତ, ତାହା ସେଠାରେ ଅଛି ନେଇଯାଅ । ମୋ ପ୍ରାଣନାଶ କରନାହିଁ । ମୋ ଉପରେ ଦୟା କର ।'

ଏହା ଶୁଣି ଶତଧନ୍ୱା ଦାନ୍ତକୁ କଡ଼ମଡ଼ କରି ଅତି କ୍ରୋଧରେ କହିଲା— "ରେ ନୀଚ ! କୁଳାଙ୍ଗାର ! ଅସତ୍ୟବାଦୀ ! ତୋ ଉପରେ ଦୟା କରିବା ସର୍ପକୁ ଦୁଧ ପିଆଇବା ସଙ୍ଗେ ସମାନ । ତୁ ତୋ କୃତକର୍ମର ଫଳ ଭୋଗ କର ।" ଏହା କହି ସେ ଖଡ୍‌ଗରେ ସତ୍ରାଜିତର ଶିର ଗଣ୍ଡିରୁ ଅଲଗା କରିଦେଲା । ରକ୍ତର ଧାର ଛୁଟିବାକୁ ଲାଗିଲା ବଗ ପକ୍ଷୀ ପରି ତାହାର ସମସ୍ତ ଶୁଭ୍ରବସ୍ତ୍ର ରକ୍ତରଞ୍ଜିତ ହୋଇଗଲା । ମୃତ୍ୟୁ ସମୟରେ ସେ ଏକ ଚିତ୍କାର କରିଥିଲା । ସେହି ଚିତ୍କାରକୁ ଶୁଣି ସ୍ତ୍ରୀ ଲୋକମାନେ ଜାଗ୍ରତ ହୋଇ ଯାଇଥିଲେ । ସେମାନେ ଯମରାଜ ଭଳି ହସ୍ତରେ ଖଡ୍‌ଗ ଧରି ଥିବାର ଶତଧନ୍ୱାକୁ ଦେଖିଲେ । ଆଗରେ ରକ୍ତରଞ୍ଜିତ ଶଯ୍ୟା ଉପରେ ଶତ୍ରାଜିତର ଶିର ପଡ଼ିଥିବାର ମଧ୍ଯ ସେମାନେ ଦେଖିବାକୁ ପାଇଲେ । ଏହା ଦେଖି ସେମାନେ କ୍ରନ୍ଦନ ଓ ଚିତ୍କାର କରିବାକୁ ଲାଗିଲେ । ଶତଧନ୍ୱାକୁ ଶମ୍ପାକଣ୍ଠା କଲେ ଓ ନିଜ ନିଜର ଗ୍ରୁଡିକୁ ହାତରେ ଜୋରକରି ପିଟିବାରେ ଲାଗିଲେ । ସେ ସମୟର କରୁଣ ଦୃଶ୍ୟ ଅତ୍ୟନ୍ତ ହୃଦୟ ବିଦାରକ ଥିଲା । କଂସେଇ ଯେପରି ପଶୁକୁ ମାରି ପ୍ରସନ୍ନ ହୁଏ, ଶତଧନ୍ୱା ସେହିପରି ସତ୍ରାଜିତକୁ ମାରି ପ୍ରସନ୍ନ ହେଉଥିଲା । ସ୍ତ୍ରୀ ଲୋକମାନଙ୍କ କ୍ରନ୍ଦନ ପ୍ରତି ତାହାର ଟିକିଏ ହେଲେ ଭ୍ରୂକ୍ଷେପ ନଥିଲା । ସେ ମଣିକୁ ଧରି କବାଟ ଫିଟାଇ ବାହାରକୁ ଚାଲି ଆସିଲା ଓ ନିଜ ଘରକୁ ଯାଇ ସେଠାରେ ରହିବାକୁ ଲାଗିଲା ।

ନଗର ରକ୍ଷା ଦାୟିତ୍ୱ ତ କୃତବର୍ମା ଉପରେ ନ୍ୟସ୍ତଥିଲା, ଯେତେବେଳେ ତା ସମ୍ମତିରେ ଏ ହତ୍ୟା କରାଯାଇଛି, ସେତେବେଳେ କୌଣସି ରାଜକର୍ମଚାରୀ ସେଥିରେ ବା କାହିଁକି ହସ୍ତକ୍ଷେପ କରନ୍ତେ ? ଚିତ୍କାର ଶୁଣି ପାଖ ଆଖର ସମସ୍ତ ସ୍ତ୍ରୀ ପୁରୁଷ ଜୁଟିଗଲେ । ପିତାଙ୍କର ଶବକୁ ଦେଖି ସତ୍ୟଭାମା କୁରରୀ ପରି ରୋଦନ କରୁଥାଆନ୍ତି । ସେ ଅତ୍ୟନ୍ତ ଶୋକାକୁଳା ହୋଇ ବାରମ୍ବାର "ହା ପିତା ! ହା ପିତା !" କହି କାନ୍ଦୁଥାଆନ୍ତି ଓ ମୂର୍ଚ୍ଛିତା ହୋଇ ଯାଉଥାଆନ୍ତି । ଏହିପରି କନ୍ଦାକଟା ହେଉ ହେଉ ରାତି ପାହିଆସିଲା

ଉଗ୍ରସେନଙ୍କ ପାଖକୁ ଏ ମର୍ମନ୍ତୁଦ ଖବର ଗଲା । ସେ କୃତବର୍ମାଙ୍କୁ ହତ୍ୟାକାଣ୍ଡର ସନ୍ଧାନ ନେବାକୁ ଆଦେଶ ଦେଲେ । କୃତବର୍ମା ନିଜେ ତ ଏ ଷଡ଼ଯନ୍ତ୍ରରେ ଭାଗ ନେଇଥିଲା, ତେଣୁ ସେ ନାନା ପ୍ରକାର ଏଣୁ ତେଣୁ କଥା କହି ବାସ୍ତବ କଥାକୁ ଲୁଚାଇବାକୁ ଚେଷ୍ଟାକଲା ।

ସତ୍ୟଭାମା ଯେତେବେଳେ ଦେଖିଲେ—"ଏମାନେ ସବୁ ମିଳିଯାଇ କହୁଛନ୍ତି ପିତାଙ୍କ ଶବକୁ ପୋଡ଼ି ଦେବାକୁ ଓ କଥାକୁ ଘୋଡ଼ାଇ ପକାଇବାକୁ, ତେଣୁ ତାଙ୍କ ମନ ଅତ୍ୟନ୍ତ କଷ୍ଟ ହେଲା । ସେ ଦୁଃଖ ପ୍ରକାଶ କଲେ । ସେ ଅତ୍ୟନ୍ତ ବୁଦ୍ଧିମତୀ ଥିଲେ । ସଙ୍ଗେ ସଙ୍ଗେ ସେ ନିଜ ମହଲରୁ ନିଜର ସେବକମାନଙ୍କୁ ଡକାଇଲେ । ନିଜର ରଥ ମଗାଇଲେ । ତୈଳର ଏକ ବଡ଼ କଡ଼ା ମଗାଇ ସେଥିରେ ସେ ନିଜ ପିତାଙ୍କର ମୃତ ଶରୀରକୁ ରଖାଇଲେ ଓ ସେବକଙ୍କୁ କହିଲେ—"ଦେଖ, ଯେପର୍ଯ୍ୟନ୍ତ ମୁଁ ଫେରିନଆସିଛି, ସେ ପର୍ଯ୍ୟନ୍ତ ମୋ ପିତାଙ୍କ ଶରୀରକୁ ତୁମ୍ଭେମାନେ ସାବଧାନ ସହକାରେ ରକ୍ଷା କରିବ, କେହି ଯେପରି ଏହା ଛୁଇଁ ନ ପାରନ୍ତି ।" ଏହା କହି ସେ ରଥରେ ବସି ହସ୍ତିନାପୁର ଯାତ୍ରା କଲେ ।

ଏକଥା କେହି ବିଶ୍ବାସ କରୁନଥିଲେ ଯେ, ସ୍ତ୍ରୀଲୋକ ହୋଇ ସତ୍ୟଭାମା ଏପରି ସାହସ କରିବେ । ଏବେ ଶତ୍ରୁମାନଙ୍କର ବୁଦ୍ଧିବିଶା ହୋଇଗଲା । ପାପୀର ହୃଦୟ ତ ସହଜେ ଦୁର୍ବଳ, ଯେଉଁମାନେ ଏ ଷଡ଼ଯନ୍ତ୍ରରେ ଭାଗ ନେଇଥିଲେ, ସେମାନେ ଭୟ କରିଗଲେ । ସତ୍ରାଜିତର ଶରୀରକୁ ପୋଡ଼ି ଦେବାପାଇଁ କେହି ସାହସ କଲେନାହିଁ ।

ଏଣେ ସତ୍ୟଭାମା ଏକ ଦ୍ରୁତଗାମୀ ଅଶ୍ବ ଯୋଚା ଯାଇଥିବା ତାଙ୍କ ରଥରେ ବସି ପରଦିନ ହସ୍ତିନାପୁରରେ ପହଞ୍ଚିଗଲେ । ସେଠାରେ ଯାଇ ପହଞ୍ଚିବା କ୍ଷଣି ଭଗବାନ୍‌ଙ୍କ ସମ୍ମୁଖରେ କରୁଣ ହୋଇ ପଡ଼ିଲେ । ଭଗବାନ୍ ତାଙ୍କୁ ତଳୁ ଉଠାଇ ହୃଦୟରେ ଲଗାଇ କହିଲେ—"ପ୍ରିୟେ ! ଘଟଣା କ'ଣ ? ତୁମେ ଏତେ ଦୁଃଖୀ କେଉଁଥିପାଇଁ ?"

ସତ୍ୟଭାମା କାନ୍ଦି କାନ୍ଦି କହିଲେ –"ଦୁଷ୍ଟ ଶତଧନ୍ବା ମୋର ପିତାଙ୍କୁ ହତ୍ୟା କରିଛି । ଦ୍ବାରକାରେ ମୋ କଥା କେହି ଶୁଣୁ ନାହାନ୍ତି । ଆପଣ ଏଠାରେ ଆସି ନିଶ୍ଚିନ୍ତରେ ବସିଛନ୍ତି, ତେଣେ ଦ୍ବାରକାରେ କ'ଣ ଘଟୁଛି, ସେଥିପ୍ରତି ଆପଣଙ୍କର ଟିକିଏ ହେଲେ ଧ୍ୟାନ ନାହିଁ ।"

ଭଗବାନ ତ ପ୍ରଥମରୁ ସବୁ କଥା ଜାଣିଥିଲେ । ସତ୍ୟଭାମାଙ୍କ ମୁଖରୁ ଏ କଥା ଶୁଣି ସେ ମନେମନେ ପ୍ରସନ୍ନ ହେଲେ ଓ ଚିନ୍ତା କଲେ ଶ୍ବଶୁର ମରିଛନ୍ତି ଭଲ ହୋଇଛି । ସେ ମୋ ଉପରେ ମିଥ୍ୟା କଳଙ୍କ ଲଦି ଦେଇଥିଲେ । କିନ୍ତୁ ସତ୍ୟଭାମାଙ୍କ ସମ୍ମୁଖରେ ତାହା କହିବେ ବା କିପରି ? ତେଣୁ ସେ ବାହାରକୁ ଅତ୍ୟନ୍ତ ଦୁଃଖ ପ୍ରକାଶ କରି ମିଛଟାରେ ନେତ୍ରରୁ ଅଶ୍ରୁ ବୁହାଇବାକୁ ଲାଗିଲେ । କହିଲେ -"ହାୟ ! ଏହା ଅତି ଦୁଃଖଦାୟକ ଘଟଣା । ମୁଁ ଯଦି ସେଠାରେ ଥାଆନ୍ତି, ତାହାର ଏପରି ସାହସ ହୋଇ

ନ ଥାନ୍ତା । ଚାଲ ! ମୁଁ ସଙ୍ଗେ ସଙ୍ଗେ ସେ ଦୁଷ୍ଟର ଶିର ତା ଶରୀରରୁ ଅଲଗା କରିଦେବି । ତୁମ ପିତାଙ୍କ ହତ୍ୟାକାରୀର ଜୀବନ ଆଉ ରହିନପାରେ । ଏବେ ଯାହା ହେବାର ହୋଇ ଗଲାଣି । ଏକ ଦୈବୀ ବିପତ୍ତି ଆମ ଉପରେ ଯାହା ପଡ଼ିବାର ଥିଲା, ପଡ଼ିଲା ।"

ସୂତ କହିଲେ—"ମୁନିଗଣ ! ନିଜ ପତ୍ନୀଙ୍କ ଆଗରେ ବହୁ ସମୟ ଏହିପରି ଲୀଳା ଗଡ଼ାଇ ନିଜର ଭାଇ ବଳରାମ ଓ ପତ୍ନୀ ସତ୍ୟଭାମାଙ୍କୁ ସଙ୍ଗରେ ନେଇ ଭଗବାନ ଶୀଘ୍ର ହସ୍ତିନାପୁରୀ ଛାଡ଼ି ଦ୍ୱାରକାପୁରୀ ଚାଲି ଆସିଲେ ।"

## ଛପ୍ପୟ

ନହୀଂ ଦ୍ୱାରକା ଶ୍ୟାମ ସୋଚି ଖଲ ଘରମହଁ ଆୟୋ ।
ସତ୍ରାଜିତ୍ ସୁଖ ସହିତ ସଦନମହଁ ସୋବତ ପାୟୋ ॥
ସିର ଧଡ଼ତେଂ କରି ପୃଥକ୍ ଭଗେଯା ମଣି ଲୈକେଂ ପାପୀ ।
ସତଭାମା ଅତି ଦୁଖିତ ଚିତ୍ତ ଚିନ୍ତା ବହୁ ବ୍ୟାପୀ ॥
ମୃତକ ଦେହ ଧରି ତେଲମହଁ, ରଥ ଚଢ଼ି ହସ୍ତିନାପୁର ଗଈଂ ।
ସକଲ ବାତ୍ ଅତି ଦୁଖିତ ହ୍ୱୈ, ରୋଇ ରୋଇ ହରିତେଂ କହୀ ॥



## ଶତଧନ୍ୱା ବଧ

ପଦାତେର୍ଭଗବାଂସ୍ତସ୍ୟ ପଦାତିସ୍ତିଗ୍ମନେମିନା ।
ଚକ୍ରେଣ ଶିର ଉତ୍କୃତ୍ୟ ବାସସୋ ବ୍ୟଚିନୋନ୍ମଣିମ୍ ॥ ※

( ଶ୍ରୀ ଭା: ୧୦ମ ସ୍କନ୍ଧ, ୫୭ ଅ: ୨୧ ଶ୍ଳୋକ )

---

| | | | |
|---|---|---|---|
| ※ ଅଶ୍ୱ ଉପେକ୍ଷି ମହାବୀର | । | ପାଦେ ଗମିଲା ଅଧ୍ୱ ଖର | ॥ |
| ଗୋବିନ୍ଦ ଦେଖି ତା ଗମନ | । | ରଥୁ ଓହ୍ଲାଇଲେ ବହନ | ॥ |
| କୋପ ନୟନେ ନରହରି | । | ଧାଇଁଲେ କରେ ଚକ୍ର ଧରି | ॥ |
| ଭୟେ ପଳାନ୍ତେ କମୈକାୟେ | । | ଚକ୍ର ପେଶିଲେ ଦେବରାୟେ | ॥ |
| କୃଷ୍ଣର ଚକ୍ର ତୀକ୍ଷ୍ଣ ଧାର | । | କାଟିଲା ଶତଧନୁ ଶିର | ॥ |

(ଭାଗବତ ; ଜଗନ୍ନାଥ ଦାସ : ସ୍କ ୧୦, ଅ ୬୧)

## ଛପ୍‌ପୟ

ଉପରତେଁ କରି ଶୋକ ଦ୍ୱାରକା ଯଦୁବର ଆସ୍ୟେ ।
ଶତଧନ୍ୱା ଅତ ଡରେ୍ୟା ତୁରତ ଅକ୍ରୂର ତୁଲାସ୍ୟେ ॥
'ହରିତେଁ ରକ୍ଷା କରୋ' ହୀନ ହ୍ୱେ ବୋଲେ୍ୟା ଉନତେଁ ।
ସୁନି ବୋଲେ ଅକ୍ରୂର ବୈର କୋ ସାଧୈ ଙନତେଁ ॥
ଖଲ ବୋଲେ୍ୟା ଘବରାଇକେଂ, ଆଛା ମଣିକୂଁ ତୋ ଧରୋ ।
ହ୍ୱୈଂ ଭାଗୂଁ ପୁର ଛୋଡ଼ି ତୁମ, ସୁଖତେଁ ମନ୍ଥାପନ କରୋ ॥

ପାପର ସାଥୀ ଚିରକାଳ ସାଥୀ ହୋଇ ରହନ୍ତି ନାହିଁ । ସମସ୍ତ ଆସିଲେ ସେମାନେ ଭୟ, ଲୋଭ ବା ଅନ୍ୟ ସ୍ୱାର୍ଥ ସମୁପସ୍ଥିତ ହେବା ମାତ୍ରେ ଛାଡ଼ି ଚାଲି ଯାଆନ୍ତି । ଇହଜନ୍ମରେ କେହି ପାପୀର ସାଥୀ ଥାଆନ୍ତୁ ବା ନ ଥାନ୍ତୁ, କିନ୍ତୁ ପର-ଜନ୍ମରେ ନିଶ୍ଚିତ ଭାବରେ ପାପର ଫଳ ପାପୀକୁ ହିଁ ଭୋଗ କରିବାକୁ ପଡ଼ିଥାଏ । ଧନ ଏତେ ଖରାପ ବସ୍ତୁ ଯେ, ଖୁବ୍‌ ଭଲ ଭଲ ଲୋକ ସେଥିପ୍ରତି ଆସକ୍ତ ହୋଇ ଥାଆନ୍ତି । ଫଳସ୍ୱରୂପ ସେମାନଙ୍କୁ ଚିନ୍ତା, ଦୁଃଖ, କଳହ ଓ ଅଶାନ୍ତି ମିଳିଥାଏ । ଧନ ପ୍ରାପ୍ତ ହେଲେ ତାହାର ରକ୍ଷଣାବେକ୍ଷଣ ଏକ ଦୁଃଖଦାୟକ କାର୍ଯ୍ୟ । ଧନ ପ୍ରାପ୍ତି ନ ହେଲେ ମଧ୍ୟ ଧନ ଅଭାବରୁ ଦୁଃଖ ଭୋଗକରିବାକୁ ପଡ଼େ । ଧନ ପାଇବା ପାଇଁ ମଧ୍ୟ ନାନା ପ୍ରକାର ପରିଶ୍ରମ କରି କଷ୍ଟ ସହ୍ୟକରିବାକୁ ପଡ଼େ । ଯେଉଁ ବସ୍ତୁ ଭଗବାନଙ୍କୁ ଅର୍ପଣ କରି ନ ଯାଇ ବ୍ୟବହାର କରାଯାଏ, ତାହାର ପରିଣାମ ଦୁଃଖଦାୟକ ହୁଏ । ଧନକୁ ଦେଖି ସମସ୍ତଙ୍କ ମନ ଚଞ୍ଚଳ ହୋଇ ଉଠେ ।

ସୂତ କହିଲେ—'ମୁନିଗଣ ! ଭଗବାନ ଅତିଶୀଘ୍ର ହସ୍ତିନାପୁରରୁ ଆସି ଦ୍ୱାରକାରେ ପହଞ୍ଚିଗଲେ । ଆସିବାମାତ୍ରେ ସେ ଶତଧନ୍ୱାଠାରୁ ମଣି ଆଣିବା ପାଇଁ ଓ ତାକୁ ମାରିବା ପାଇଁ ଉଦ୍ୟୋଗ କଲେ । ଶତଧନ୍ୱା ମଧ୍ୟ ଏ ଖବର ଶୁଣିପାରିଲା । ଶୁଣିବା ମାତ୍ରେ ତା ପିଳେହି ପାଣି ହୋଇଗଲା । ସେ ଭୟରେ ଥରିବାକୁ ଲାଗିଲା । ସେ ଜାଣୁଥିଲା ଯେ, କୃଷ୍ଣ ଓ ବଳରାମଙ୍କଠାରୁ କେବେହେଲେ ବର୍ତ୍ତି ପାରିବ ନାହିଁ । ଏବେ ସେ ତାହାର ପ୍ରାଣ କିପରି ରକ୍ଷା ହେବ, ତାହା ହିଁ ଚିନ୍ତା କଲା । ସେ କୃତବର୍ମା ପାଖକୁ ଦୌଡ଼ି ଦୌଡ଼ି ଗଲା । ସେତେବେଳେ ସେ ଘରେ ନ ଥିଲା । ତେଣୁ ତାକୁ କୌଣସି ଉପାୟରେ ଚୁପ୍‌କରି ଡକାଇ ସେ ଅତି ଦୀନଭାବ ସହିତ କହିଲା—''ଦେଖ ଭାଇ ! ମୁଁ ତୁମ କଥା ମାନି ସତ୍ରାଜିତକୁ ବଧ କଲି । ଏବେ ମୋ ଉପରେ ବିପତ୍ତି ପଡ଼ିଛି । ଆପଣ ସେନାଧ୍ୟକ୍ଷ ଅଟନ୍ତି, ତେଣୁ ମୋତେ ରକ୍ଷା କରନ୍ତୁ । ଏବେ ମୋ ପ୍ରାଣ ଆପଣଙ୍କ ଅଧୀନ ।'

କୃତବର୍ମା ରୁକ୍ଷ ଭାବରେ ତାଙ୍କୁ କହିଲେ—"ଦେଖ, ଶତଧନ୍ୱା ! ଏବେ ତୁମର ଯାହା କହିବାର କଥା, ତାହା ମୋତେ କହିଲ । ଆଉ କାହାରି ସମ୍ମୁଖରେ କେବେ ଏପରି କଥା କହିବ ନାହିଁ ଯେ, ମୁଁ କହିବାରୁ ତୁମେ ସତ୍ରାଜିତଙ୍କୁ ବଧ କଲ । ମୋର ସତ୍ରାଜିତ ସହିତ କ'ଣ ଦ୍ୱେଷ ଥିଲା ? ତୁମେ ଦ୍ୱେଷବଶ ହୋଇ ନିଜ ସ୍ୱାର୍ଥ ସାଧନ କରିବାକୁ ତାଙ୍କୁ ବଧ କଲ । ମଣି ଲୋଭରେ ତାହାର ପ୍ରାଣ ନେଲ ।"

ଶତଧନ୍ୱା ଦୈନ୍ୟ ଭାବରେ କହିଲା -"ତାହା ହେଲେ ଠିକ୍ ଅଛି, ମୁଁ କାହାରିକୁ ଏ କଥା କହିବ ନାହିଁ । ତୁମର ଯଦି ମଣି ନେବା କଥା, ତାହା ମୋଠାରୁ ନେଇ ନିଅ, କିନ୍ତୁ କୃଷ୍ଣ-ବଳରାମଙ୍କଠାରୁ ମୋତେ ରକ୍ଷା କର । ସେମାନେ ମୋତେ ମାରିଦେବେ ।"

କୃତବର୍ମା କହିଲେ—"ଭାଇ ! ତୁମେ ପାଗଳ ହୋଇ ଗଲ ନା କ'ଣ ? ଅନ୍ୟ କାହା କଥା ହୋଇଥିଲେ କିଛି ଚିନ୍ତା ନ ଥାନ୍ତା, ସର୍ବସମର୍ଥ ଶ୍ରୀକୃଷ୍ଣଚନ୍ଦ୍ର ଓ ବଳରାମଙ୍କ ନିକଟରେ ମୁଁ କିପରି ମୋ କର୍ତ୍ତବ୍ୟରେ ଅବହେଳା କରିବି ? ତୁମେ ନିଜେ କହିଲ ଦେଖି, ତାଙ୍କ ନିକଟରେ ଅପରାଧୀ ହୋଇ କେହି କେବେ ସୁଖ ପାଇଛନ୍ତି ? କଂସ ତାଙ୍କ ସହିତ ଦ୍ୱେଷ କଲା, ତେଣୁ ସେ ନିଜର ବନ୍ଧୁବାନ୍ଧବ ସହିତ ନାଶ ହେଲା । ଆମ ଜାତିରେ କଂସଠାରୁ ବଳି ବଳବାନ୍ ଆଉ କିଏ ଥିଲା ? ତାଙ୍କୁ ବି ଶ୍ରୀକୃଷ୍ଣ ଏତେ ବଡ଼ ସଭାରେ ପଶୁଭଳି ମାରି ଦେଲେ । ଆଜି ସଂସାରରେ ସବୁଠାରୁ ବଳବାନ୍ ହେଉଛି ଜରାସନ୍ଧ । ସେ ମଧ୍ୟ ଏ ଦୁଇ ଭାଇଙ୍କ ସହ ସତର ଥର ଯୁଦ୍ଧ କରି ହାରିଯାଇଛି । ତେଣୁ, ହେ ଭାଇ ! ମୁଁ ଏଥିରେ ତୁମକୁ କୌଣସି ପ୍ରକାର ସାହାଯ୍ୟ କରି ପାରିବି ନାହିଁ । ତୁମେ ଏଠାରୁ ଶୀଘ୍ର ଚାଲିଯାଅ । ଗୁପ୍ତଚର ଯଦି ଦେଖନ୍ତି ତୁମେ ମୋ ସହିତ କଥାବାର୍ତ୍ତା ହେଉଛ, ତାହାହେଲେ ମୋତେ ମଧ୍ୟ ଏ ଘଟଣାରେ ସନ୍ଦେହ କରାଯିବ ।"

କୃତବର୍ମା ଏଭଳି ଉତ୍ତର ଦେବାରୁ ଶତଧନ୍ୱା ଅତ୍ୟନ୍ତ ଦୁଃଖୀ ହେଲା । ମଝି ନଦୀରେ ଡଙ୍ଗା ବୁଡ଼ିଯାଉଥିବାବେଳେ ଯେପରି ପାରି ହେଉଥିବା ବ୍ୟକ୍ତି ଛଟପଟ ହୁଏ, ସେହିପରି ସେ ଛଟପଟ ହେବାକୁ ଲାଗିଲା । ଏପରି ବୁଡ଼ିଯାଉଥିବା ସମୟରେ ତାହାକୁ ରକ୍ଷା କରିବାକୁ ଅନ୍ୟମାନେ ମଧ୍ୟ ଥିଲେ । ସେ ଭାବିଲା ଅକ୍ରୂର ନିଶ୍ଚୟ ମୋତେ ଏ ବିପଦବେଳେ ସାହାଯ୍ୟ କରି ପାରିବ । ତେଣୁ ସେ ଦୌଡ଼ି ଦୌଡ଼ି ଅକ୍ରୂର ନିକଟକୁ ଗଲା । ତାଙ୍କୁ ମଧ୍ୟ ସେ ସେହିପରି ଦୈନ୍ୟ ହୋଇ କହିଲା ।

ତା କଥା ଶୁଣି ଅକ୍ରୂର କହିଲେ—"ଭାଇ ! ଦେଖ, ମୋ ହୃଦୟରେ ତୁମ ପ୍ରତି ସହାନୁଭୂତି ଅଛି; କିନ୍ତୁ ଏପରି ପରିସ୍ଥିତିରେ ମୁଁ ତୁମକୁ କୌଣସି ପ୍ରକାରେ ସାହାଯ୍ୟ କରି ପାରିବି ନାହିଁ । ତୁମ ଉପରେ ମୋର ଦୟା ଆସୁଥିଲେ ମଧ୍ୟ, ଉପାୟ କ'ଣ ?

ନଜର ଶ୍ୱଶୁରଙ୍କ ମୃତ୍ୟୁ କାରଣ ଜାଣିଥିବାରୁ ଶ୍ରୀକୃଷ୍ଣ ଅତ୍ୟନ୍ତ କ୍ରୁଦ୍ଧ । ତାଙ୍କ ସମ୍ମୁଖକୁ ଯିବାର ସାହସ ମୋର ନାହିଁ । ତାଙ୍କ ସହିତ ବିରୋଧୀ ହେବାର ଅର୍ଥ ନିଜ ଦେହକୁ ଲୁଚି ଆଣିବା । ତାଙ୍କୁ ଭଲ କିଏ ଜାଣି ପାରିବ ?''

ଶତଧନ୍ୱା କହିଲା—''ହେ ଦାନପତେ ! ମୁଁ ଆପଣଙ୍କୁ ଶ୍ରୀକୃଷ୍ଣଙ୍କ ସହିତ ଲଢ଼ିବାକୁ କହୁନାହିଁ । ମୋର ଏତିକି ପ୍ରାର୍ଥନା ଯେ, ଆପଣ ତାଙ୍କୁ କପରି ବୋଧ ଶୋଧ କରି ମୋତେ ରକ୍ଷା କରନ୍ତୁ । ଆପଣଙ୍କ କଥା ସେ ରଖି ପାରନ୍ତି । ଆପଣ'ତ ତାଙ୍କ ମନକଥା ଓ ସ୍ୱଭାବ ଭଲଭାବେ ଜାଣନ୍ତି ।''

ଅକ୍ରୂର କହିଲେ—''ଆରେ, ଭାଇ ! ମୁଁ ତ ସାମାନ୍ୟ ଲୋକ, ବ୍ରହ୍ମାଦି ଲୋକପାଳ ମଧ୍ୟ ଭଗବାନଙ୍କ ମାୟାରେ ପଶି ପାରନ୍ତି ନାହିଁ । ତାଙ୍କ ମାୟାରେ ମୋହିତ ହୋଇ ସେମାନେ ମଧ୍ୟ ତାଙ୍କୁ ଭୁଲି ଯାଆନ୍ତି । ସେ ଏହି ବିଶ୍ୱ ବ୍ରହ୍ମାଣ୍ଡର ଉତ୍ପନ୍ନ କର୍ତ୍ତା, ପାଳନ କର୍ତ୍ତା ଓ ସଂହାର କର୍ତ୍ତା ଅଟନ୍ତି ! ଏହି କୃଷ୍ଣାବତାରରେ ତାଙ୍କର କର୍ମ ଅଲୌକିକ । ସେ ଗୋବର୍ଦ୍ଧନ ପର୍ବତକୁ ନିଜ କାଣି ଆଙ୍ଗୁଠିରେ ସାତଦିନ ଧରି ରଖିଥିଲେ । ବଡ଼ ବଡ଼ ରାକ୍ଷସଙ୍କୁ ଲୀଳାଛଳରେ ସେ ମାରି ଅଛନ୍ତି । ମୁଁ ସେହି ଅପ୍ରମେୟ ଭଗବାନଙ୍କୁ କ'ଣ ବା ବୁଝାଇ ସନ୍ତୁଷ୍ଟ କରି ପାରିବି ? ମୁଁ ସେହି ଅଦ୍ଭୁତକର୍ମା, ସବୁର ଆଦି କାରଣ, ଅନାଦି, ଅନନ୍ତ, କୂଟସ୍ଥ ଭଗବାନ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ କେବଳ ବାରମ୍ବାର ପ୍ରଣାମ କରି ପାରେଁ ।''

ଅକ୍ରୂରଙ୍କଠାରୁ ଏପରି କଥା ଶୁଣି ଶତଧନ୍ୱା ଅତ୍ୟନ୍ତ ନିରାଶ ହେଲା । ସେ କହିଲା—''ମହାରାଜ ! ବଡ଼ ଲୋକଙ୍କର ସର୍ବଦା ବଡ଼ କଥା । ଏ ସଂସାରରେ କାହାକୁ ତେବେ ବିଶ୍ୱାସ କରିବି ? ଯଦି ଆପଣ ମୋତେ କୌଣସି ପ୍ରକାରେ ସାହାଯ୍ୟ କରି ନ ପାରୁଛନ୍ତି, ତାହାହେଲେ ଏହି ମଣିଟିକୁ ଅନ୍ତତଃ ରଖନ୍ତୁ । ମୁଁ କୌଣସି ପ୍ରକାର ପଳାଇ ଯାଇ ମୋ ପ୍ରାଣରକ୍ଷା କରିବାକୁ ଚେଷ୍ଟା କରିବି । ଏ ମଣିକୁ ନେବ କେଉଁଠିକି ?''

ଅକ୍ରୂର ଠିକ୍ ଏହି କଥା ଭାବୁଥିଲେ । ମଣିର ଲୋଭକୁ ସେ ସମ୍ବରଣ କରି ନପାରି କହିଲେ—''ଅଚ୍ଛା ଠିକ୍ ଅଛି, ଭାଇ ! ତୁମେ ଯଦି ମୋ କଥା ନ ମାନୁଛ, ତାହାହେଲେ ମଣିଟିକୁ ଏଠାରେ ମୋ ପାଖରେ ରଖିଦେଇ ଯାଅ ।'' ଏହା କହି ସେ ମଣିକୁ ରଖିନେଲେ ଓ ଶତଧନ୍ୱାକୁ ବିଦାକରି ଦେଲେ ।

ଶତଧନ୍ୱାର ଅଶ୍ୱ ଥିଲା, ସେ ଅଶ୍ୱଟି ଏକାଥରେ ଶହଶହ କୋଶ ବିନା ବିଶ୍ରାମରେ ଦୌଡ଼ି ପାରୁଥିଲା । ତେଣୁ ସେ ସେହି ଅଶ୍ୱ ଆରୋହଣ କରି ଦ୍ୱାରକାରୁ ପଳାଇ ଗଲା । ଭଗବାନ ତ ଚାରିଆଡ଼େ ନିଜର ଗୁପ୍ତଚର ରଖାଇ ଥିଲେ, ସେ ଯେତେବେଳେ ଏ ସମାଚାର ପାଇଲେ ଯେ ଶତଧନ୍ୱା ପଳାଇ ଯାଉଛି, ସେ ସଙ୍ଗେ ସଙ୍ଗେ ନିଜର ଶୈବ୍ୟ, ସୁଗ୍ରୀବ, ମେଘପୁଷ୍ପ ଓ ବଳାହକ ନାମକ ୪ଟି ଅଶ୍ୱଯୁକ୍ତ ଗରୁଡ଼ଧ୍ୱଜା ଥିବା ରଥରେ

ବଳରାମଙ୍କ ସହିତ ବସି ଶତଧନ୍ୱା ପଛେ ପଛେ ଗୋଡ଼ାଇଲେ । ଶତଧନ୍ୱା ନିଜର ଅଶ୍ୱକୁ ଖୁବ୍ ଜୋରରେ ଦୌଡ଼ାଉଥିଲା । ଭଗବାନ୍ ରଥରେ ବସି ତା ପଛେ ପଛେ ଏପରି ଯାଉଥିଲେ, ଯେତେ ଯେପରି ସୂର୍ଯ୍ୟ ପଛରେ ଭଗବାନ ଶିବ ଧାଉଁଛନ୍ତି ।

ଦ୍ୱାରକାରୁ ଧାଇଁ ଧାଇଁ ସେ ମିଥିଳା ପର୍ଯ୍ୟନ୍ତ ଅସିଲା । ମିଥିଳାଠାରେ ସୂର୍ଯ୍ୟ ଅସ୍ତ ଯୋଗ ପୂର୍ଣ୍ଣ ହୋଇଗଲା । ତାହାର ଅଶ୍ୱ ଥକି ପଡ଼ିଥିଲା । ଜନକପୁରୀ ସମୀପସ୍ଥ ଏକ ଉଦ୍ୟାନରେ ଅଶ୍ୱକୁ ଆଘାତ ଲାଗିବାରୁ ସେ ତଳେ ପଡ଼ି ମରିଗଲା । ଅଶ୍ୱ ମରିଯିବାରୁ ସେ ଅତ୍ୟନ୍ତ ଭୟଭୀତ ହୋଇ ନିଜେ ଦୌଡ଼ିବାରେ ଲାଗିଲା । ଭଗବାନ ସେଠାରେ ସଙ୍ଗେ ସଙ୍ଗେ ପହଞ୍ଚି ରଥ ଠିଆକରି ଦେଇ ନିଜେ ତାକୁ ଗୋଡ଼ାଇଲେ । ଯାହା ପଛରେ ଭଗବାନ ଗୋଡ଼ାଇବେ ସେ କି କେବେ ବଞ୍ଚିପାରେ ? ଯେପରି ସିଂହ ମୃଗକୁ ମାଡ଼ିବସେ, ସେହିପରି ଭଗବାନ ତା ଆଗକୁ ଯାଇ ତାକୁ ଘେରିନେଲେ । ଭଗବାନଙ୍କୁ ସମ୍ମୁଖରେ ଦେଖି ସେ ପାରୁ ପର୍ଯ୍ୟନ୍ତ ବଳ ଖଟାଇ ଦୌଡ଼ିଲା । ଏହା ଦେଖି ଭଗବାନ ଦୂରରେ ରହି ତାଙ୍କର ତୀକ୍ଷ୍ଣ ଧାର ବିଶିଷ୍ଟ ଚକ୍ର ଦ୍ୱାରା ତାହାର ଶିରଚ୍ଛେଦ କରିଦେଲେ ।

ଶତଧନ୍ୱା ମରିଯିବାରୁ ଭଗବାନ୍ ତା ବସ୍ତ୍ରାଦିରୁ ସ୍ୟମନ୍ତକ ମଣିର ସନ୍ଧାନ ନେଲେ । ସ୍ୟମନ୍ତକ ମଣି ତ ତା ପାଖରେ ନଥିଲା, ଭଗବାନ ପାଆନ୍ତେ ଅବା କିପରି ? ସେ ତ ତାହା ଅକ୍ରୂରଙ୍କୁ ଦେଇ ଆସିଥିଲା । ମଣି ନ ପାଇ ଭଗବାନ ବଳରାମଙ୍କ ନିକଟକୁ ଫେରି ଅସିଲେ ଓ କହିଲେ—"ଭାଇ ! ମୁଁ ଶତଧନ୍ୱାକୁ ମାରି କିଛି ଲାଭ ହେଲା ନାହିଁ, ତା ପାଖରେ ମଣି ନାହିଁ ।"

ବଳରାମ ଶ୍ରୀକୃଷ୍ଣଙ୍କ କଥାକୁ ସନ୍ଦେହ କଲେ ଯେ, ସେ ମୋତେ ସ୍ୟମନ୍ତକ ମଣି ତା ପାଖରେ ନାହିଁ ବୋଲି କାହିଁକି କହିଲା ? ମୁଁ ତ ତାଙ୍କୁ ମଣି ବିଷୟ ପଚାରି ନଥିଲି ? ତେଣୁ ସେ କହିଲେ—"ଶ୍ରୀକୃଷ୍ଣ ! ମୁଁ ତ ତୋତେ ମଣି ମାଗୁ ନାହିଁ । ତୁ କାହିଁକି ମୋଠାରେ ଛନ୍ଦ କପଟ କରି କଥା କହୁଛୁ ? ମୁଁ ଜାଣି ପାରୁଛି, ତୁ ତାହା ରଖିଛୁ, ପରେ ନେଇ ବୋହୂକୁ ଦେବୁ ।"

ଭଗବାନ ବିନୟର ସହିତ କହିଲେ—"ଭାଇ ! ଆପଣ କିପରି ଏ କଥା କହି ପାରୁଛନ୍ତି ? ଆପଣ ମୋତେ ଯେପରି ଶପଥ କରାନ୍ତୁ ପଛକେ ମୁଁ ତାହା କରିନେବି । କିନ୍ତୁ ମୁଁ ତାହାର ବସ୍ତ୍ରାଦି ଅନେକବାର ଖୋଜିଲି ଦେଖିଲି ମଣି ସେଠାରେ ନାହିଁ । ଆପଣ ମୋ କଥା ବିଶ୍ୱାସ କରନ୍ତୁ ।"

ବଳରାମ କହିଲେ—"ତାହାହେଲେ ଠିକ୍ ଅଛି, ସେ ପାଖରେ ରଖି ନ ଥାଇ ପାରେ, ମୁଁ ତ ସେଥିନେଇ ତୋ ସହିତ ବାଦ ବିବାଦ କରୁ ନାହିଁ । ସେ ବୋଧ ହୁଏ

କୌଣସି ବିଶୃତ୍ତ ଲୋକର ଜିମାଦେଇ ଆସିଛୁ । ଏବେ ତୁ ଦ୍ୱାରକା ଯାଇ ସେ ମଣିର ସନ୍ଧାନ ନେ ।"

ଭଗବାନ ଉଦାସ ହୋଇ କହିଲେ—"ଆପଣ ବି ଚାଲନ୍ତୁ, ମୁଁ ବି ଆପଣଙ୍କ ସଙ୍ଗରେ ଯିବି ।"

ବଳରାମ ଅନିଚ୍ଛା ପ୍ରକାଶ କରି କହିଲେ—"ଦେଖ ଭାଇ ! ମୋତେ ଯିବାକୁ ବାଧ୍ୟ କରନା । ମୁଁ ଏଠାକୁ ଏତେଦୂର ଆସି ଅଛି । ଏ ବିଦେହରାଜ ମୋର ପରମ ମିତ୍ର, ତାଙ୍କୁ ମୁଁ ଦେଖାକରି ଯିବି । ମୁଁ ଏଠାରେ କିଛିଦିନ ରହିବାକୁ ଇଚ୍ଛା କରୁଛି ।"

ଭଗବାନ୍ କହିଲେ—"ତାହା ହେଲେ ମୁଁ ବି ଆପଣଙ୍କ ସହିତ କିଛିଦିନ ରହିଗଲେ ଭଲ ହୁଅନ୍ତା ।"

ବଳରାମ ଅଧିକାର ସ୍ୱରରେ କହିଲେ—"ଦେଖ, ଏଣୁ ତେଣୁ ମୋତେ କହନା, ମୁଁ ଯାହା କହୁଛି, ତାହା କର । ତୋ ବିନା ଦ୍ୱାରକାରେ ବହୁତ ଅବ୍ୟବସ୍ଥା ହେଉଛି । ଏବେ ସେଠାରେ ଲୋକମାନଙ୍କ ମଧ୍ୟରେ ବାଦ ବିବାଦ ଓ ମତଭେଦ ଦେଖା ଦେଇଛି । ତୁ ଯାଇ ସେ ସବୁର ସମାଧାନ କର । ମୁଁ କିଛିଦିନ ମିଥିଳାରେ ରହି ଦ୍ୱାରକା ଫେରିଯିବି ।"

ଏହା ଶୁଣି ଭଗବାନ ଉଦାସ ହୋଇଗଲେ । ବଳରାମ ଆଉ କିଛି ନ କହି ନିଜର ହଳମୂଷଳ ଧରି ମିଥିଳାପୁରୀ ଚାଲିଗଲେ ।

ବଳରାମ ସେଠାରେ ଯାଇ ପହଞ୍ଚିବା କ୍ଷଣି ବିଦେହରାଜଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଅତିଶୟ ଖୁସି ହୋଇ ବଳରାମଙ୍କର ସ୍ୱାଗତ-ସତ୍କାର କଲେ । ଅତ୍ୟନ୍ତ ପ୍ରସନ୍ନତା ପୂର୍ବକ ଶ୍ରଦ୍ଧା ସହକାରେ ଅନେକ ସାମଗ୍ରୀ ନେଇ ତାଙ୍କୁ ଭକ୍ତିସହକାରେ ପୂଜା କଲେ । ଜଣେ ବାସ୍ତବ ମିତ୍ର ନିଜର ପରମ ପୂଜନୀୟ ମିତ୍ରକୁ ଯେତେ ସ୍ୱାଗତ ସତ୍କାର କରିବାର କଥା, ମିଥିଳା ନରେଶ ତାଠାରୁ ଅଧିକ ସ୍ୱାଗତ ସତ୍କାର କଲେ । ପୂଜା କରିସାରି ସେ କହିଲେ—"ହେ ଯଦୁନନ୍ଦନ ! ମୁଁ ମୋର ସମଗ୍ର ରାଜ୍ୟ ଆପଣଙ୍କୁ ଅର୍ପଣ କରୁଛି । ମୋର ଯାହା କିଛି ଅଛି, ସେ ସମସ୍ତ ଆପଣଙ୍କର । ଆପଣ ମିଥିଳାପୁରୀରେ ସୁଖରେ ଅବସ୍ଥାନ କରନ୍ତୁ ।"

ମିଥିଳା ନରେଶଙ୍କର ଏ ପ୍ରକାର ଆଦର ସତ୍କାରରେ ସନ୍ତୁଷ୍ଟ ହୋଇ ବଳରାମ କେତେକ ବର୍ଷ ମିଥିଳାରେ ରହିଗଲେ । ତାଙ୍କର ବ୍ୟାୟାମ କରିବା ଏକ ବ୍ୟସନ ଥିଲା । ତେଣୁ ସେ ନିଜେ ବ୍ୟାୟାମ କରିବା ସଙ୍ଗେ ସଙ୍ଗେ ରାଜକୁମାରଙ୍କୁ ଅସ୍ତ୍ରଶସ୍ତ୍ର ଶିକ୍ଷା ମଧ୍ୟ ଦେଉଥିଲେ । ପଡ଼ୋଶୀ ରାଜ୍ୟର ରାଜକୁମାରମାନେ ଯେତେବେଳେ ଶୁଣିଲେ ଯେ, ବଳରାମ ଏବେ ମିଥିଳାରେ ରହି ଅଛନ୍ତି ଓ ଗଦା ଚାଳନା ସମସ୍ତଙ୍କୁ ଶିକ୍ଷା ଦେଉଅଛନ୍ତି, ଦୂରଦୂରାନ୍ତର ରାଜ୍ୟର ଓ ପଡ଼ୋଶୀ ରାଜ୍ୟର ରାଜକୁମାରମାନେ ତାଙ୍କଠାରୁ ସେହି

ବିଦ୍ୟା ଶିକ୍ଷା କରିବା ପାଇଁ ଆସିଲେ । ସେତେବେଳେ ଦୁର୍ଯ୍ୟୋଧନ ମଧ୍ୟ ଗଦା ଯୁଦ୍ଧ ଶିକ୍ଷା କରିବା ପାଇଁ ମିଥିଳା ଆସିଥିଲି । ସେ ଅତ୍ୟନ୍ତ ବଳଶାଳୀ ଥିଲି । ଶ୍ରଦ୍ଧାର ସହିତ ସେ ବଳରାମଙ୍କଠାରୁ ଗଦାଯୁଦ୍ଧ ସୁଳନା ଶିକ୍ଷା କଲି । ତାହାର ରଣ ସୁତୁଷ୍ଟରେ ପ୍ରସନ୍ନ ହୋଇ ବଳରାମ ତାକୁ ଯୁଦ୍ଧ ବିଦ୍ୟାରେ ଏପରି ନିପୁଣ କରିଦେଲେ ଯେ, ଯାହାରରେ ଧର୍ମଯୁଦ୍ଧ କରି ତାଙ୍କୁ କେହିହେଲେ ଗଦା ଯୁଦ୍ଧରେ ପରାସ୍ତ କରି ପାରିବେ ନାହିଁ । ଏହିପରି ଭାବରେ ବଳରାମ ମିଥିଳାରେ ସମୟ କଟାଇବା ପାଇଁ ଧନୁର୍ବେଦର ଏକ ବିଦ୍ୟାଳୟ ଖୋଲିଲେ ।

ଏଣେ ଭଗବାନ ଶ୍ରୀକୃଷ୍ଣ ଉଦାସ ମନରେ ଦ୍ୱାରକା ଫେରି ଆସିଲେ । ତାଙ୍କ ଶ୍ୱଶୁରଙ୍କର ଶବ ଏ ପର୍ଯ୍ୟନ୍ତ ତୈଳ କଡ଼ାରେ ରଖା ଯାଇଥିଲି । ଭଗବାନ୍ ଦ୍ୱାରକା ଆସି ବିଧିବିଧାନରେ ତାଙ୍କର ଶବ ସତ୍କାର କରାଇଲେ । ସତ୍ୟଭାମାଙ୍କୁ ଶତଧନ୍ୱାର ମୃତ୍ୟୁ ସମ୍ବାଦ ଦେଲେ ଓ ମଣି ନ ମିଳିବା କଥା କହିଲେ । ସତ୍ରାଜିତର ସଦ୍‌ଗତି ପାଇଁ ଯେତେ ପାରଲୌକିକ କର୍ମ ହେବାର କଥା ସେ ସମସ୍ତ ଭଗବାନ୍ ସତ୍ୟଭାମାଙ୍କ ପ୍ରସନ୍ନତା ନିମନ୍ତେ ବିଧି ବିଧାନରେ କରାଇଲେ । ତାଙ୍କ ପୂର୍ବ ପରିବାରର ଯେଉଁମାନେ ଥିଲେ, ସେମାନଙ୍କର ମଧ୍ୟ ଶ୍ରାଦ୍ଧ ତର୍ପଣ ଆଦି ଔର୍ଦ୍ଧ୍ୱଦେହିକ କର୍ମ କରାଇଲେ । ସେମାନଙ୍କ ପାଇଁ ଅସଂଖ୍ୟ ବ୍ରାହ୍ମଣ ଭୋଜନ ଦେଲେ । ଅସଂଖ୍ୟ ଗୋ-ଦାନ କଲେ ଓ ଆହୁରି ଅନେକ ବସ୍ତୁ ମଧ୍ୟ ଦାନ କଲେ ।

ସୂତ କହିଲେ—"ମୁନିଗଣ ! ଶ୍ୱଶୁରଙ୍କର ସମସ୍ତ ପାରଲୌକିକ କର୍ମ କରିବା ପରେ ଶତଧନ୍ୱା କାହା ପାଖରେ ମଣି ରଖିଛି, ସେ ସମ୍ବନ୍ଧରେ ଅନୁସନ୍ଧାନ କରାଯିବାର ଆଦେଶ କଲେ । କଥାରେ ଅଛି—'ଚୋରର ଦାଢ଼ିରେ କୁଟାଖିଅ ।' ଅକ୍ରୂର ଓ କୃତବର୍ମା ଏବେ ଭୟରେ ଥରିବାକୁ ଲାଗିଲେ । ସେ ଦୁହେଁ ଜାଣିଥିଲେ, ଭଗବାନଙ୍କ ନିକଟରେ ତାଙ୍କ ପାପ ଲୁଚିରହି ପାରିବ ନାହିଁ । ଏହି କଥା ଚିନ୍ତାକରି ସେ ଦୁହେଁ ନିଜ ନିଜକୁ ବଞ୍ଚାଇବାରେ ଉପାୟ ଖୋଜିବାକୁ ଲାଗିଲେ ।"

## ଛପପୟ

ସ୍ୟେଂ କହି ଚୁପ୍‌କେ ଭଗେୟା ବଧିକ ଲୋଭୀ ଖଲ କାମୀ ।
ହୟ୍ ତାକୋ ଅତି ବେଗବାନ୍ ଶତଯୋଜନଗାମୀ ॥
ହରି ବଲ ସଁଗ ରଥ ଚଢ଼େ ଦୁଷ୍ଟକୋ ପୀଛେ ବୀନ୍ହୋଂ ।
ଭଗି ମିଥିଲ ତକ ଗୟୋ ଚକ୍ରତେଂ ବଧ କରି ଦୀନ୍ହୋଂ ॥
ମିଲୀ ନ ମଣି ବଲ ଢିଁଗ ଗୟେ, କପଟ ସମୁଝି ବଲ ରିସ ଭୟେ ।
ଛାଇ ବସେ ମିଥିଲାପୁରୀ, ଶ୍ୟାମ ଦ୍ୱାରିକାକୂଁ ଗୟେ ॥



# ଅକ୍ରୂର ଓ କୃତବର୍ମାଙ୍କ ପଳାୟନ

ଅକ୍ରୂରଃ କୃତବର୍ମା ଚ ଶ୍ରୁତ୍ୱା ଶତଧନୋର୍ବଧମ୍ ।
ବ୍ୟୂଷତୁର୍ଭୟବିତ୍ରସ୍ତୌ ଦ୍ୱାରକାୟାଃ ପ୍ରୟୋଜକୌ ॥ *

( ଶ୍ରୀ ଭା: ୧୦ସ୍କ, ୫୭ ଅ, ୨୯ ଶ୍ଳୋକ )

## ଛପ୍ପୟ

ଆଇ ସମୁର କୋ ଶ୍ରାଦ୍ଧ କରେଂ୍ୟା ବହୁ ବିପ୍ର ଜିମାୟେ ।
ମଣି ଖଲ କହଁ ଧରି ଗୟେ୍ୟା କହୁକ ହରି ଘର ଖୁଜବାୟେ ॥
କୃତବର୍ମା ଅକ୍ରୂର ଦ୍ୱାରକାତେଂ ସୁନ ଭାଗେ ।
କାଶୀମହଁ ଅକ୍ରୂର ନିତ୍ୟ ମଖ କରିବେ ଲଗେ ॥
ଦେହିଁ କନକକୋ ଦାନ ବହୁ, କହେଂ ଦାନପତି ସକଲ ମୁନି ।
ବୁଲବାୟେ ଘନଶ୍ୟାମ ଜବ, ଗୟେ ଦ୍ୱାରକା ତୁରତ ପୁନି ॥

ଏ ସଂସାରରେ କାହାର ମନ କେତେବେଳେ କି ଭାବ ପୋଷଣ କରେ ତାହା କହିବା ସମ୍ଭବ ନୁହେଁ । ହୃଦୟରେ ନିରନ୍ତର ସାତ୍ତ୍ୱିକ, ରାଜସିକ ଓ ତାମସିକ ଏହି ତିନି ପ୍ରକାର ଭାବ ଜାଗ୍ରତ ହୁଏ । ସମୁଦ୍ରରେ ଯେପରି ନିରନ୍ତର ହିଲ୍ଲୋଳ ଉଠେ, ସେହିପରି ତ୍ରିଗୁଣାତ୍ମିକା ଅସଂଖ୍ୟ ଉର୍ମି ହୃଦୟ ସାଗରରେ ଉଠୁଥାଏ । ଯାହାକୁ ଜୀବନସାରା ପୁତ୍ର ବୋଲି ପାଳନ କରାଯାଏ, ଦିନେ ନା ଦିନେ ତା ପ୍ରତି ଦ୍ୱେଷଭାବ ମଧ୍ୟ ଉତ୍ପନ୍ନ ହୋଇଥାଏ । ଯାହାପାଇଁ ସର୍ବଦା ଧନରତ୍ନ ଓ ସୁବର୍ଣ୍ଣାଦି ପାଣିଭଳି ବୁହାଇ ଦିଆଯାଏ, ସମୟରେ ତା ପିଣ୍ଡ ଏକ ପଇସା ବ୍ୟୟ କରିବାକୁ କୁଣ୍ଠାବୋଧ ହୁଏ । ଯାହାକୁ ଜୀବନସାରା ମା, ଭଉଣୀ, କନ୍ୟା ଆଦି ରୂପେ ସ୍ୱୀକାର କରାଯାଇଥାଏ, ମନ

---

* ଶତଧନୁର ବଧ ଶୁଣି । ଅକ୍ରୂର ମନେ ମନେ ଗୁଣି ॥
କୃତବର୍ମାର ତୁଲେ ଭଲ । ନଷ୍ଟେ ମାରବେ ବନମାଳୀ ॥
ଏମନ୍ତ ଭାଳି ମନଚ୍ଛନ୍ନେ । ପଳାଇଗଲେ ବେନିଜନେ ॥
(ଭାଗବତ : ଜଗନ୍ନାଥ ଦାସ : ୧୦ ସ୍କ, ୬୧ଅ)

ମଧ୍ୟରେ ତାଙ୍କ ପ୍ରତି କେବେ ଘୃଣା ବା ବିତୃଷ୍ଣା ଭାବ ଜାତ ହେଲେ ମନରେ କ୍ଷୋଭ ଜାତହୁଏ । ଯେଉଁ ଧନକୁ ସଦା ହେୟ ଓ ତୁଚ୍ଛ ଜ୍ଞାନ କରାଯାଏ, ସମୟରେ ତା' ପ୍ରତି ଅଧିକ ଆସକ୍ତି ହେଲେ ପ୍ରାଣ ଯିବାର ଆଶଙ୍କା ଉପୁଜେ । ଆମେ ଯାହାଙ୍କ ଚରଣଧୂଳି ସର୍ବଦା ଗ୍ରହଣ କରୁ, ଦେବତା ଭଳି ଯାହାଙ୍କୁ ନିତ୍ୟ ପୂଜା କରୁଁ, ଯାହାଙ୍କ ସମ୍ମୁଖରେ ଆମେ କେବେହେଲେ ଊର୍ଦ୍ଧ୍ୱମୁଖ ହେଉନାହିଁ, ତାଙ୍କପ୍ରତି ସମୟରେ ଏପରି କ୍ରୋଧ ଜାତହୁଏ ଯେ, ତାଙ୍କୁ ସମ୍ମୁଖରେ ଅପମାନିତ କରିବାକୁ ପଛାଉ ନାହିଁ । ସେଥିପାଇଁ ଶାସ୍ତ୍ରକାରଗଣ ଏହି କଥା ଉପରେ ବାରମ୍ବାର ଜୋର ଦେଇ କହିଛନ୍ତି ଯେ, ଏହି ଦୁଷ୍ଟ, ପାପୀ, ସ୍ୱୈର ମନକୁ କଦାପି ବିଶ୍ୱାସ କରିବ ନାହିଁ । କାରଣ ଏହି ଦୁଷ୍ଟ ମନ ସମୟରେ ନିଷ୍ଟୟ ଧୋକା ଦେବ । ତେଣୁ ସର୍ବଦା ନିଜକୁ ଭଗବାନଙ୍କ ଶରଣରେ ରଖିବାକୁ ହେବ । ଭଗବାନଙ୍କର ଯେଉଁ ବେଦଶାସ୍ତ୍ର ରୂପୀ ଆଜ୍ଞା ରହିଛି, ଯଥାଶକ୍ତି ତାହା ସାମର୍ଥ୍ୟ ଅନୁସାରେ ସଦା ଧୀରସ୍ଥିର ମନରେ ପାଠକରି ପାଳନ କରିବା ଉଚିତ୍ ।

ସୂତ କହିଲେ "ମୁନିଗଣ ! ସଦାନନ୍ଦ ଭଗବାନଙ୍କ ଉପରେ ମିଥ୍ୟା କଳଙ୍କ ବୋଝ ଲଦି ଦେଇଥିଲା । ଶତଧନ୍ୱା ସ୍ୱାର୍ଥବଶତଃ ଈର୍ଷାପରାୟଣ ହୋଇ ତାଙ୍କୁ ହତ୍ୟା କଲେ । ସେ ମଧ୍ୟ ତା କୃତକର୍ମର ଫଳ ପାଇଲା । କିନ୍ତୁ ଯେଉଁ ସ୍ୟମନ୍ତକ ମଣି ଲୋଭରେ ସେ ହତ୍ୟା କରିଥିଲା, ସେ ମଣି ତାକୁ ପ୍ରାପ୍ତ ହେଲାନାହିଁ । ବଳଦେବ କୁପିତ ହୋଇ ମିଥିଳା-ପୁରୀ ଗ୍ଲଲେ । ଶ୍ୟାମସୁନ୍ଦର ଦ୍ୱାରକା ଫେରିଲେ । ରୁକ୍ମିଣୀ ତାଙ୍କୁ କହିଲେ—"ପ୍ରାଣନାଥ ! ମୁଁ ଶୁଣିଛି, ସ୍ୟମନ୍ତକ ମଣି ସୂର୍ଯ୍ୟଙ୍କ ଭଳି ତେଜସ୍ୱାନ୍, ମୁଁ ତ ତାହା କେବେ ଦେଖିନାହିଁ । ମୋତେ ଟିକିଏ ତାହା ଦେଖାନ୍ତୁ ନାହିଁ ?"

ଭଗବାନ କହିଲେ—"ଆରେ, ସେ ମଣି କାହିଁ ?"

ରୁକ୍ମିଣୀ ଆଶ୍ଚର୍ଯ୍ୟ ହୋଇ କହିଲେ—"ଆପଣ ମଣି ଆଣିବା ପାଇଁ ଶତଧନ୍ୱା ପଛେ ପଛେ ଯାଇଥିଲେ । ତାକୁ ଆପଣ ମଧ୍ୟ ମାରିଦେଲେ । କିନ୍ତୁ ତା' ପାଖରୁ ମଣି ଆଣିଲେ ନାହିଁ କାହିଁକି ?"

ଭଗବାନ୍ କହିଲେ—"ହଁ ସେ ସତ୍ରାଜିତଙ୍କୁ ହତ୍ୟାକରି ମଣିକୁ ନେଇ ଯାଇଥିଲା; କିନ୍ତୁ ମୁଁ ଚକ୍ରରେ ଯେତେବେଳେ ତା' ଶିରଚ୍ଛେଦ କରି ତା ବସ୍ତ୍ର ଆଦି ଖୋଜିଲି, ସେ ମଣି ପାଇଲି ନାହିଁ । ସେ ତାହା କେଉଁଠି ରଖିଗଲା ମୁଁ ତାହା ଜାଣେ ନାହିଁ ।"

ରୁକ୍ମିଣୀ କହିଲେ "ମହାରାଜ ! ମୋତେ ଏପରି ଓଲଟା ମିଛ କଥା କାହିଁକି କହୁଛନ୍ତି ? ମୁଁ ତ ତାହା ଆପଣଙ୍କୁ ମିଳିବା ପାଇଁ ମାଗୁ ନାହିଁ । ଆପଣ ଭାବୁଥିବେ ମୁଁ ତାହା ଜାଣିଲେ ମିଛି ପକାଇବି, ଆପଣ ନିଶ୍ଚୟ ତାହା ମୋତେ ମାଗିବା ପାଇଁ ସନ୍ଦେହ

ବୋଧ କରିବେ । ସତ୍ୟଭାମା ଏଥିରେ ଦୁଃଖ ହେବ । ତେଣୁ ହେ ମହାରାଜ ! ସେ ଆପଣଙ୍କର ଅତି ପ୍ରିୟ, ମଣି ମଧ୍ୟ ତା ବାପର । ତାହା ତାକୁ ହିଁ ଦେଇ ଆପଣ ତାକୁ ଖୁସି କରନ୍ତୁ । ମୋର ମଣି ଦେଖିବା ଦରକାର ନାହିଁ ।"

ଭଗବାନ୍ ଚିନ୍ତା କଲେ—ମଣି ତ ଆସି ନାହିଁ, ତଥାପି ଆମ ଘରେ କଳହର ସୂତ୍ରପାତ ହେଲାଣି । ମଣି ବିଷୟରେ ହେଉଥିବା କଥାବାର୍ତ୍ତା ସତ୍ୟଭାମା କାନରେ ମଧ୍ୟ ପଡ଼ିଲାଣି । ରୁକ୍ମିଣୀ ଚାଲିଯିବା ପରେ ସତ୍ୟଭାମା ମଧ୍ୟ ଆସି କହିଲେ—"କୁହନ୍ତୁ ମହାରାଜ ! ମଣି କ'ଣ ମିଳିଲା ?"

ଭଗବାନ ବିରକ୍ତ ହୋଇ କହିଲେ—"ଅରେ ! ମଣି ମିଳିଲା କେଉଁଠୁ ? ଏହି ମଣି ତ ଆମ ଘରେ ବିଷବୃକ୍ଷର ମଞ୍ଜି ବୁଣି ଦେଲାଣି, ଜ୍ୟେଷ୍ଠ କୁପିତ ହୋଇ ମିଥିଳା ଚାଲିଗଲେ । ତୁମର ବଡ଼ରାଣୀ ମୁହଁ ଫୁଲାଇ ବସିଲାଣି; କିନ୍ତୁ ମଣି ମୁଁ ଶତଧନ୍ୱା ଠାରୁ ପାଇ ନାହିଁ । "

ସତ୍ୟଭାମା କହିଲେ—"ମହାରାଜ ! ଆପଣ ତାହା ବଡ଼ ରାଣୀଙ୍କୁ ହିଁ ଦିଅନ୍ତୁ । ସେ ତାହା ପିନ୍ଧିଲେ ଭଲ ହେବ । ତାଙ୍କର ଅଳଙ୍କାର ପିନ୍ଧିବାରେ ଭାରି ଆଗ୍ରହ ।"

ଭଗବାନ ପୁନଶ୍ଚ ବିରକ୍ତ ହୋଇ କହିଲେ—"ମଣି ଥିଲେ ସିନା ମୁଁ ଯାହାକୁ ହେଲେ ଦେବା ପ୍ରଶ୍ନ ଉଠନ୍ତା, ମଣିକୁ ତ ଶତଧନ୍ୱା କାହାକୁ ଦେଇ ଯାଇଛି କିମ୍ବା କୌଣସିଠାରେ ଲୁଚାଇ ରଖି ଯାଇଛି ।"

ସତ୍ୟଭାମା ବ୍ୟଙ୍ଗ ସ୍ୱରରେ କହିଲେ—"ଯିଏ ଲୁଚାଇ ରଖିଥାଉ ପଛକେ, ମୋର ସେଥିରେ ଯାଏ ଆସେ କେତେ ? ଲୁଚି ଯାଇଥିବା ବସ୍ତୁ ସଦା ଲୁଚିରହି ପାରେ ନାହିଁ, ଦିନେ ନା ଦିନେ ତାହା ବାହାରେ ।" ଏହା କହି ସତ୍ୟଭାମା ସେଠାରୁ ଚାଲି ଆସିଲେ ।

ଏହା ପରେ ଜାମ୍ବବତୀ ଆସି କହିଲେ—"ପ୍ରାଣନାଥ ! ସେହି ମଣିକୁ ମୋ ପିତା ଆପଣଙ୍କୁ ଯୌତୁକ ସ୍ୱରୂପ ଦେଇଥିଲେ । ଆପଣ ତାହା କାହାରିକୁ ଦେବେ ନାହିଁ । ତାହା ଆପଣ ନିଜେ ରଖିବେ କିମ୍ବା ମୋ ହାତରେ ଦେବେ ।"

ଭଗବାନ କପାଳରେ ହାତପିଟି ଚିନ୍ତା କରିବାକୁ ଲାଗିଲେ—"ମଣି ନେଲା କିଏ, ଦେବା ପାଇଁ ତିନି । ଏମାନେ ସବୁ ମଣି ପଛରେ ହିଁ ପଡ଼ିଛନ୍ତି ।" ଏବେ ଭଗବାନ ଚିନ୍ତା କଲେ—"ଯେମିତି ହେଉ, ତାଙ୍କୁ ମଣିର ସନ୍ଧାନ ନେବାକୁ ପଡ଼ିବ । ଏଥିପାଇଁ ସେ ଶତଧନ୍ୱାର ଘର ଭଲଭାବରେ ଚିଖିନଖି କରି ଖୋଜାଇବେ ।"

ଗ୍ରେରର ହୃଦୟ ତ ସାହସପୂର୍ଣ୍ଣ, ଯିଏ ରାତରେ ଅନେକ ଲୋକ ଚେଇଁ ଥିବା-ବେଳେ ଘରେ ପଶିଯାଇ ପାରେ; କିନ୍ତୁ ତାହାର ପାଦ ଦୁର୍ବଳ, ଟିକିଏ ସନ୍ଦେହ ହେଲେ ତାହାର ପାଦ ଥରେ ଓ ସେ ପଳାଇ ଯିବାକୁ ଚେଷ୍ଟା କରେ । ଅକ୍ରୂର ଓ କୃତବର୍ମା ଦେଖିଲେ ଯେ ଭଗବାନ୍ ମଣି ପାଇଁ ଶତଧନ୍ୱାକୁ ମାରଦେଲେ, ଏବେ ଦ୍ୱାରକାପୁରୀରେ ତାହାର ସନ୍ଧାନ ନେଲେଣି । ପାପ ତ ବହୁଦିନ ପର୍ଯ୍ୟନ୍ତ ଲୁଚି ରହି ପାରେ ନାହିଁ । ଆମେ ହିଁ ଶତଧନ୍ୱାକୁ ଉତ୍ତେଜିତ କରାଇଥିଲେ । ଆମ କହିବା ଯୋଗୁଁ ସେ ସତ୍ରାଜିତକୁ ହତ୍ୟା କରିଥିଲା । ଅନୁସନ୍ଧାନ କରୁ କରୁ ଆମେ ଧରାପଡ଼ିଯିବା ଓ ଏହି କଥା ମଧ୍ୟ ପ୍ରକାଶ ହୋଇଯିବ । ପୁନଶ୍ଚ ଆମକୁ ମଧ୍ୟ ପ୍ରାଣଦଣ୍ଡ ଦିଆଯିବ । ସେଥିପାଇଁ ପ୍ରଥମରୁ ହିଁ ଆମେ ଏଠାରୁ ଅନ୍ୟତ୍ର ଚାଲି ନ ଯିବା କାହିଁକି ? ଏହା ଚିନ୍ତାକରି ଦୁଇଜଣ ଯାକ କାହାରିକୁ କିଛି ନ କହି ଦିନେ ରାତରେ ଦ୍ୱାରକାପୁରୀ ଛାଡ଼ି ଚାଲିଗଲେ । ଉଭୟେ ରାଜ୍ୟର ବଡ଼ ଦାୟିତ୍ୱର ଅଧିକାରୀ ଥିଲେ । କେହି ତାଙ୍କର କିଛି କରି ପାରୁ ନ ଥିଲା । ଅକ୍ରୂର ତାଙ୍କ ମାମୁଁଘର କାଶୀରେ ରହିବାକୁ ଲାଗିଲେ ଓ କୃତବର୍ମା ମଧ୍ୟ ନିଜର କୌଣସି ବନ୍ଧୁ ଘରେ ଯାଇ ରହିଗଲେ । ଅକ୍ରୂରଙ୍କର ଆଉ କୌଣସି ଭୟ ରହିଲା ନାହିଁ । କାଶୀକୁ ଆସି ସେଠାରେ ସେ ଏକ ସୁବର୍ଣ୍ଣ ମନ୍ଦିର ନିର୍ମାଣ କରାଇଲେ ଓ ସେହି ମନ୍ଦିରରେ ମଣିକୁ ସ୍ଥାପନା କଲେ । ଅତ୍ୟନ୍ତ ଭକ୍ତି ସହକାରେ ତାହାକୁ ପୂଜା କରିବାକୁ ଲାଗିଲେ । ପୂଜିତ ମଣି ପ୍ରତ୍ୟହ ୭୦-୮୦ ମହଣ ସୁବର୍ଣ୍ଣ ଦେଉଥିଲା । ସେଥିରେ ସେ ବଡ଼ ବଡ଼ ଯଜ୍ଞ କରିବାକୁ ଆରମ୍ଭ କଲେ । ତାହା ସାଧାରଣ ଯଜ୍ଞ ନଥିଲା । ତାଙ୍କ ପାଖରେ ତ ସୁବର୍ଣ୍ଣର ଅଭାବ ନଥିଲା, ସେ ମନଇଚ୍ଛା ବ୍ୟୟ କରିବାକୁ ଲାଗିଲେ । ଯଜ୍ଞ ପାଇଁ ଯେଉଁ ସବୁ ବେଦି ତିଆରି ହୋଇଥିଲା, ସେ ସମସ୍ତ ସୁବର୍ଣ୍ଣରେ ହୋଇଥିଲା । ପାତ୍ର ଆଦି ସୁବର୍ଣ୍ଣରେ ହୋଇଥିଲା । ସୁବର୍ଣ୍ଣ ଦକ୍ଷିଣା ମଧ୍ୟ ଦିଆଯାଉଥିଲା । ମାଟି ଭଳି ସୁବର୍ଣ୍ଣ ଖର୍ଚ୍ଚ ହେଉଥିଲା । ଯେଉଁ ଦିନ ଏକ ଯଜ୍ଞ ଉଦ୍‌ଯାପନ ହେବ ସେହିଦିନ ଅନ୍ୟ ଏକ ଯଜ୍ଞ ଆରମ୍ଭ ହେଉଥିଲା । ସେ ଏହିପରି ଯଜ୍ଞ ପରେ ଯଜ୍ଞ କରି ଚାଲିଲେ । ଯଥେଷ୍ଟ ଦାନ ଧର୍ମ କରିବାରେ ଲାଗିଲେ । ଭଗବଦ୍ ଭକ୍ତଙ୍କ ହାତକୁ ଯଦି ଧନ ଆସିଯାଏ, ତାହାହେଲେ ସେ ତାକୁ ନିର୍ମଳ ହୃଦୟରେ ଦାନ ଧର୍ମରେ ଲଗାନ୍ତି । ଯଦି ବିଷୟୀଙ୍କ ହାତକୁ ଅଧିକ ଧନ ଆସେ, ତାହାହେଲେ ସେମାନେ ତାକୁ ବିଷୟ ଭୋଗ ଆଦିରେ ନଷ୍ଟ କରନ୍ତି; ଓ ତାହା ଯଦି କୃପଣଙ୍କ ହାତରେ ପଡ଼େ, ତାହା ହେଲେ ସେମାନେ ମାଟି ତଳେ ଗାତ ଖୋଳି ପୋତନ୍ତି । ଦାନ ଯଜ୍ଞ ଦ୍ୱାରା ପ୍ରସିଦ୍ଧି ଓ ଯଶ ବଢ଼େ । ଅକ୍ରୂରଙ୍କର ଯଶ ଚାରିଆଡ଼େ ବ୍ୟାପିଗଲା । ସମସ୍ତେ ମିଶି ତାଙ୍କୁ ଦାନପତି ଉପାଧି ଦେଲେ ।

ଏଣେ ଦ୍ୱାରକାରେ ସବୁଜ ଖାଲି, ଖାଲି, ଜଣାଗଲା । ବଳଦେବ ବି ଚାଲିଗଲେ, ବିରୋଧିଦଳର ନେତା ଅକ୍ରୂର ମଧ୍ୟ ପଳାଇଗଲେ । ସେନାଧକ୍ଷ କୃତବର୍ମା ଦ୍ୱାରକାଛାଡ଼ି

ଚାଲିଗଲେ । ଲୋକଙ୍କ ମନରେ ଭୟ ଜାତ ହେଲ ଯେ, ଦେଖାଯାଉ ଏବେ କାହା ଉପରେ ମଣିର ମିଥ୍ୟା କଳଙ୍କ ବୋଝ ଲଦି ଦିଆଯାଉଛି । ଲୋକମାନେ ନିଜ ନିଜର ଧନ ଓ ସୁବର୍ଣ୍ଣକୁ ଲୁଚାଇବାରେ ଲଗିଲେ । ଏଣେ ଅକ୍ରୂରଙ୍କର ସବଂତ୍ର ଖ୍ୟାତି ବଢ଼ିଯାଇଥାଏ । ଯେଉଁ ଦିନଠାରୁ ସେ କାଶୀ ଆସିଲେଣି, ସେହିଦିନଠାରୁ କାଶୀ ରାଜ୍ୟ ବହୁତ ସମୃଦ୍ଧିଶାଳୀ ହୋଇଗଲଣି । ଠିକ୍ ସମୟରେ ସେଠାରେ ବର୍ଷା ହେଉଛି, ବନା ଗୃଷ ବେଉଷଣରେ ଜମି ବହୁତ ଫଳୁଛି । କାହାର ଶାରୀରିକ ଓ ମାନସିକ ବ୍ୟାଧି ହେଉ ନାହିଁ । ସମସ୍ତଙ୍କ ମନ ପ୍ରସନ୍ନ ରହୁଛି । ନିତ୍ୟ ଯାଗଯଜ୍ଞ ହେଉଥିବାରୁ ସବୁବେଳେ ଉତ୍ସବ ସମାରୋହ ଚାଲିଛି । କେହି ଅକାଳ ମୃତ୍ୟୁ ମୁଖରେ ପଡୁନାହାନ୍ତି; କମ୍ବା ରୋଗରେ ପୀଡ଼ିତ ହେଉ ନାହାନ୍ତି ।

ଭଗବାନ ତ ସବୁ ଜାଣୁଥିଲେ, ଏହା ସବୁ ଥିଲ ସେହି ସ୍ୟମନ୍ତକ ମଣିର ଚମତ୍କାରିତା, ତା ନ ହୋଇଥିଲେ ଅକ୍ରୂରଙ୍କୁ ତ ସେଠାରେ ନିୟମିତ ବେତନ ମିଳୁ ନ ଥାନ୍ତା । ସେ ଯେଉଁ ଅଜସ୍ର ବ୍ୟୟ କରୁଥିଲେ, ସେହି ସବୁ ସୁବର୍ଣ୍ଣ ମଣିରୁ ହିଁ ପାଉଥିଲେ । ସେପରି ବି ହେଉ ନା କାହିଁକି, ଅକ୍ରୂରଙ୍କୁ ଏବେ ଦ୍ୱାରକା ଡକାଇବାକୁ ହେବ । ଏହା ବିଚାର କରି ଭଗବାନ ଅକ୍ରୂରକୁ ଡକାଇ ପଠାଇବାର ଉପାୟ ଚିନ୍ତା କଲେ ।

କେତେକ ଲୋକ କହୁଥିଲେ —ଯେଉଁଦିନଠାରୁ ମଣି ନେଇ ଅକ୍ରୂର ଚାଲି ଗଲେଣି, ସେହିଦିନଠାରୁ ଦ୍ୱାରକାରେ ନାନା ପ୍ରକାର ଉତ୍ପାତ ହେବାକୁ ଲଗିଛି । ସେହି ସ୍ୟମନ୍ତକ ମଣିର ଏପରି ଗୁଣ ଥିଲ ଯେ, ତାହା ଯେଉଁଠାରେ ରହିବ, ସେଠାରେ ଦୁର୍ଭିକ୍ଷ, ମହାମାରୀ, ଗ୍ରହପୀଡ଼ା, ସର୍ପଆଦି ବିଷଧର ଜନ୍ତୁଙ୍କ ଭୟ, ମାନସିକ, ଓ ଶାରୀରିକ ଦୁଃଖ ତଥା ମାୟାଜନିତ ଅନ୍ୟାନ୍ୟ ଉପଦ୍ରବ ଆଦି କୌଣସି ଅନିଷ୍ଟକର ଘଟଣା ଆଦୌ ଘଟିବ ନାହିଁ । ଯେତେବେଳେ ଅକ୍ରୂର ମଣିକୁ ନେଇ କାଶୀ ଚାଲିଗଲେ, ସେତେବେଳେ ଦ୍ୱାରକାରେ ଦୁର୍ଭିକ୍ଷ ମଧ୍ୟ ଦେଖାଦେଲ; କିନ୍ତୁ କାଶୀ ରାଜ୍ୟରେ ସୁକାଳ ହେଲ । ଦ୍ୱାରକାର ଲୋକମାନେ ନାନାପ୍ରକାର ଶାରୀରିକ, ମାନସିକ, ଦୈବିକ ଓ ଭୌତିକ ସନ୍ତାପ ଦ୍ୱାରା ସନ୍ତପ୍ତ ହେବାକୁ ଲଗିଲେ । କାଶୀ ନିବାସୀ ଏହି ସବୁ ଦୁଃଖ ଆଦୌ ଭୋଗିଲେ ନାହିଁ; ବରଂ ଅତି ସୁଖରେ କାଳଯାପନ କରିବାକୁ ଲଗିଲେ । ଏଥିପାଇଁ ଭଗବାନ ଅକ୍ରୂରଙ୍କୁ ଡକାଇ ପଠାଇଲେ । କିନ୍ତୁ ପ୍ରକୃତରେ ବିଚାର କଲେ ଏପରି ହେବା ଉଚିତ ନଥିଲ । ଯେଉଁଠାରେ ସ୍ୱୟଂ ଶ୍ରୀପତି ନିବାସ କରନ୍ତି, ସେଠାରେ ଶାରୀରିକ, ମାନସିକ, ଦୈବିକ ଓ ଭୌତିକ ତାପ ତାଙ୍କ ଇଚ୍ଛା ବ୍ୟତିରେକେ କପରି ଆସି ପାରନ୍ତା । ଭଗବାନ ଯେତେବେଳେ ରହିଥାନ୍ତି ସେତେବେଳେ ଏହି ଉପଦ୍ରବମାନ କୁଆଡ଼େ । ନ ରହିଥିଲେ ତ କ୍ରମଶଃ ନିକଟର ଦେଶ ପାଖ ଥାଆନ୍ତେ । ଭକ୍ତର ମହତ୍ତ୍ୱକୁ ଦେଖାଇବା ପାଇଁ ଭଗବାନ ଏପରି ଲୀଳା କରିଥିଲେ । ସେ ଅକ୍ରୂରଙ୍କୁ

ଏହି ଉପଦ୍ରବ ଶାନ୍ତ କରାଇବା ପାଇଁ ଡକାଇ ନଥିଲେ । ତାଙ୍କୁ ଏଇଥିପାଇଁ ଡକାଇବାକୁ ଚାହିଁଥିଲେ ଯେ, ଯେଉଁ ମଣିକୁ ନେଇ ଘରେ ଏତେ କଳହ ହୋଇଗଲା, ତାହା ଶାନ୍ତ କରିବାକୁ ସେ ଚାହୁଁଥିଲେ ।

ଏହାଶୁଣି ଶୌନକ କହିଲେ—"ହେ ସୂତ ! ଦ୍ୱାରକାରେ ଏତେ ଉପଦ୍ରବ ହେଲା ଓ ଅକ୍ରୂର କାଶୀରେ ଯାଇ ପହଞ୍ଚିବା ମାତ୍ରେ ସଭିକ୍ଷ ହୋଇଗଲା, ଠିକ୍ ସମୟରେ ବର୍ଷା ହେବାକୁ ଲାଗିଲା, ସେଠାରେ ସମସ୍ତ ଲୋକ ସୁଖୀ ଏବଂ ସମୃଦ୍ଧିଶାଳୀ ହୋଇ ଗଲେ । ତେଣୁ ଏହାକୁ ତ ମଣିର କରାମତ ବୋଲି ବୁଝିବାକୁ ହେବ । ଦ୍ୱାରକାରେ ମଣି ଅଭାବରେ ଦୁର୍ଭିକ୍ଷାଦି ଉପଦ୍ରବ ହେବାକୁ ଲାଗିଲା ।"

ସୂତ କହିଲେ—"ମହାରାଜ ! ମଣିର ମଧ୍ୟ ଗୁଣ ନିଶ୍ଚିତ ଭାବରେ ଥିଲା । କିନ୍ତୁ ନିର୍ଜୀବ ମଣିର ଭକ୍ତ ଓ ଭଗବାନଙ୍କ ପ୍ରଭାବ କିପରି ସମାନ ହେବ ? ଭଗବାନ ଦ୍ୱାରକାରେ ବିରାଜମାନ ଥିଲେ ହେଁ ଏହା କୁହାଯାଇ ନପାରେ ଯେ ମଣି ଅଭାବରୁ ଏ ଉପଦ୍ରବ ହେଲା । ମଣି ନ ଥିଲା, ତେବେ ବି ତ ଦ୍ୱାରକାପୁରୀ ନିବାସୀ ନରନାରୀ ଦେବତାଙ୍କ ଭଳି ରହୁଥିଲେ । କାଶୀରେ ସୁଭିକ୍ଷ ହେବା କଥାରେ ଏ ମଣିର କରାମତ ନଥିଲା, ଏହା ତ ପରମ ଭଗବତ୍ ଭକ୍ତ ଅକ୍ରୂରଙ୍କର ପ୍ରଭାବ ଥିଲା । ଅକ୍ରୂରଙ୍କର ପିତା ମଧ୍ୟ ଏହିପରି ପ୍ରଭାବଶାଳୀ ଥିଲେ । ସେ ଯେଉଁଠାକୁ ଯାଉଥିଲେ, ସେଠାରେ ସମସ୍ତେ ସୁଖୀ ହୋଇ ଯାଉଥିଲେ । ଯଦି ସେ ଦେଶରେ ଅକାଳ ପଡୁଥିଲା, ତାହାହେଲେ ସେ ଯିବାମାତ୍ରେ ସେଠାରେ ସୁକାଳ ହୋଇ ଯାଉଥିଲା । ଏଥିପାଇଁ ତ କାଶୀରାଜା ତାଙ୍କୁ ନିଜ କନ୍ୟା ପ୍ରଦାନ କରିଥିଲେ ।"

ଶୌନକ ପଚାରିଲେ—"ହେ ସୂତ ! କାଶୀରାଜ ଅକ୍ରୂରଙ୍କ ପିତାଙ୍କୁ କେଉଁ କାରଣରୁ ନିଜର କନ୍ୟାକୁ ପ୍ରଦାନ କରିଥିଲେ ?"

ସୂତ କହିଲେ -"ମହାରାଜ ! କାଶୀ ନରେଶଙ୍କର ଆଦୌ ସନ୍ତାନ ନ ଥିଲେ । ସେ ସନ୍ତାନ ଇଚ୍ଛାରେ ଆରାଧନା ଓ ଜପ ଅନୁଷ୍ଠାନ ଆଦି କରୁଥିଲେ । ଜଣେ ମହାତ୍ମା ତାଙ୍କୁ କହିଲେ ଆପଣ ପ୍ରତ୍ୟହ ଗୋ ପୂଜା କରନ୍ତୁ ଓ ନିତ୍ୟ ଗୋ ଦାନ କରନ୍ତୁ ଆପଣଙ୍କର ସନ୍ତାନ ହେବ ।"

ଏହା ଶୁଣି କାଶୀନରେଶ ସେହି ଦିନଠାରୁ ଗୋ-ପୂଜନ ଓ ଗୋ-ଦାନ କରିବାକୁ ଲାଗିଲେ । ଗୋ ଦାନ କରିବାରୁ ତାଙ୍କର ଏକ କନ୍ୟା ଜାତ ହେଲା । ଏଥିପାଇଁ ସେ ତାହାର ନାମ ଗାନ୍ଦିନୀ ରଖିଲେ । ଶୁକ୍ଳପକ୍ଷ ଚନ୍ଦ୍ରକଳା ଭଳି ଗାନ୍ଦିନୀ କାଶୀରାଜଙ୍କ ଅନ୍ତଃପୁରରେ ବଢ଼ିବାକୁ ଲାଗିଲା । କ୍ରମେ ସେ ଯୁବତୀ ହେଲା । ପରେ କାଶୀରାଜ୍ୟରେ ବଡ଼ ଦୁର୍ଭିକ୍ଷ ପଡ଼ିଲା । ବର୍ଷେ ବର୍ଷେ ଧରି ବର୍ଷା ହେଲା ନାହିଁ । ରାଜା ବ୍ରାହ୍ମଣମାନଙ୍କୁ ପଚାରିଲେ—"ବର୍ଷା କିପରି ହେବ ?"

ବ୍ରାହ୍ମଣମାନେ କହିଲେ—"ମହାରାଜ ! ମଥୁରାପୁରୀରେ ଅନାମିତ୍ରଙ୍କ ପୌତ୍ର ଓ ବୃଷ୍ଣିଙ୍କର ପୁତ୍ର ଶ୍ୱଫଲ୍‌କ ଅଛନ୍ତି, ତାଙ୍କୁ ଆପଣ ଏଠାକୁ ବରଣ କରି ଆଣି ତାଙ୍କୁ ପୂଜା କରନ୍ତୁ ଓ ତାଙ୍କୁ ନିଜର କନ୍ୟାକୁ ଅର୍ପଣ କରନ୍ତୁ, ତାହାହେଲେ ଆପଣଙ୍କ ରାଜ୍ୟରେ ନିଶ୍ଚୟ ବର୍ଷା ହେବ ।"

ଏହା ଶୁଣି କାଶୀରାଜ ଅତ୍ୟନ୍ତ ଆଦରର ସହିତ ଶ୍ୱଫଲ୍‌କଙ୍କୁ ବରଣ କଲେ । ସେ ଆସିବାକ୍ଷଣି ବର୍ଷା ହେଲା । ରାଜା ବିଧିବିଧାନରେ ତାଙ୍କୁ ପୂଜା କଲେ ଓ ନିଜର ଗାନ୍ଦିନୀ କନ୍ୟାକୁ ତାଙ୍କ ସହିତ ବିବାହ କରାଇଲେ । ଗାନ୍ଦିନୀଙ୍କ ଗର୍ଭରୁ ଶ୍ୱଫଲ୍‌କଙ୍କ ଔରସରେ ତେର ପୁତ୍ର ଉତ୍ପନ୍ନ ହୋଇଥିଲେ । ସେମାନଙ୍କ ମଧ୍ୟରେ ଅକ୍ରୂରଙ୍କର ତାଙ୍କ ପିତାଙ୍କ ଭଳି ପ୍ରଭାବ ଥିଲା । ସେ ବଡ଼ ଧର୍ମାତ୍ମା ଥିଲେ । ଏଥିପାଇଁ ସେ କାଶୀରେ ରହିବାରୁ ସେଠାରେ ସୁଭିକ୍ଷ ହୋଇଥିଲା ।

ଶୌନକ ପଚାରିଲେ—"ହେ ସୂତ ! ଅକ୍ରୂର ଯେତେବେଳେ ଏଡ଼େ ଭଗବଦ୍‌ଭକ୍ତ, ତାହାହେଲେ ସେ ମଣି ନେଇ ଚୋରଙ୍କ ଭଳି ରାତିରେ କାହିଁକି ପଳାଇ ଯାଇଥିଲେ । ସେ ତ ନିଜେ ଯାଇ ମଣିଟିକୁ ଭଗବାନଙ୍କୁ ଅର୍ପଣ କରିବା ଉଚିତ୍ ଥିଲା ।"

ଏହାଶୁଣି ସୂତ ହସି ହସି କହିଲେ—"ମହାରାଜ ! ଏ ସବୁ ଭଗବାନଙ୍କ ଇଚ୍ଛାରେ ହିଁ ହେଉଥିଲା । ଅକ୍ରୂରଙ୍କ ମନରେ କେବେହେଲେ ବଡ଼ ବଡ଼ ବୈଭବଶାଳୀ ଯଜ୍ଞ କରିବାର ବାସନା ନଥିଲା । ଦ୍ୱାରକାରେ ଥିଲାବେଳେ ତ ସେ ଗୋଟିଏ ହେଲେ ଯଜ୍ଞ କରିପାରୁ ନଥିଲେ । କେବଳ ତାଙ୍କୁ ନିୟମିତ ବେତନ ମିଳୁଥିଲା । ଏଠାରେ ତ ଏତେ ବୈଭବପୂର୍ଣ୍ଣ ଯଜ୍ଞ ହେବା ସମ୍ଭବ ନଥିଲା, ସେଥିପାଇଁ ତାଙ୍କୁ ମଣିନେଇ କାଶୀ ଯିବାର ପ୍ରେରଣା ଭଗବାନ ହିଁ ଦେଇଥିଲେ । କାଶୀକ୍ଷେତ୍ରରେ ଯେତେବେଳେ ଯଜ୍ଞ କରାଇ କରାଇ ତାଙ୍କର ଇଚ୍ଛା ପୂର୍ଣ୍ଣ ହୋଇଗଲା, ସେତେବେଳେ ସେ ନିଜେ ଅକ୍ରୂରଙ୍କୁ ଡକାଇଲେ । ସେ ତ ଭଗବାନଙ୍କ ଭକ୍ତ ଥିଲେ, ତେଣୁ ଭଗବାନଙ୍କ ଡାକରା ଆସିବା ମାତ୍ରେ ହିଁ ଶୀଘ୍ର ଦ୍ୱାରକା ଫେରି ଆସିଲେ । ଭଗବାନଙ୍କ ଭକ୍ତର ମନରେ ଭୁଲରେ କୌଣସି ଇଚ୍ଛା ଯଦି ଉତ୍ପନ୍ନ ହୋଇଯାଏ, ତେବେ ଭଗବାନ ତାହା କୌଣସି ନା କୌଣସି ଉପାୟରେ ପୂର୍ଣ୍ଣ କରି ଦିଅନ୍ତି ।"

ଶୌନକ ପଚାରିଲେ—"ଅଚ୍ଛା, ସୂତ ! ତା'ପରେ କଣ ହେଲା ?"

ସୂତ କହିଲେ— 'ମହାରାଜ ! ହେବ ଅଉ କଅଣ ? ଭଗବାନ ନିଜ ଭକ୍ତର ଇଚ୍ଛା ପୂର୍ଣ୍ଣ କରିଦେଲେ । ଯେତେବେଳେ ତାଙ୍କର ଯାଗ, ଯଜ୍ଞ, ଦାନ ଧର୍ମରେ ତୃପ୍ତି ହୋଇଗଲା, ସେତେବେଳେ ଭଗବାନ ତାଙ୍କୁ ଦ୍ୱାରକା ଆସିବାପାଇଁ ଖବର ଦେଲେ ।

ଭଗବାନଙ୍କ ଆଦେଶ ପାଇବା ମାତ୍ରେ ଅକ୍ରୂର ଦ୍ୱାରକା ଆସିଲେ ଓ ଯଥା ଶୀଘ୍ର ଦ୍ୱାରକାରେ ଆସି ପହଞ୍ଚିଲେ । ଏବେ ଆଗକୁ ଯାହାସବୁ ଘଟିଲା, ତାହା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ କହିବ ।"

## ଛପ୍ପୟ

ହରି କୀନ୍ୟୋ ସତ୍କାର ପ୍ରେମତେଁ ପାସ ବିଠାୟୋ ।
କୁଶଲ ପ୍ରଶ୍ନ କରି ସକଲ ଦ୍ୱାରକା ବୃତ୍ତ ବତାୟୋ ॥
ମନ୍ଦ ମନ୍ଦ ମୁସକାୟ୍ ପକରି କର କରତେଂ ଲୀନ୍ହେଂ ।
ଅତ ହୀ ନେହ ଜତାୟ୍ ଅପନପୋ ପ୍ରକଟିତ କୀନ୍ହେଂ ॥
ବୋଲେ—ଗୁରୁଜୀ ! ବଡ଼େ, ବୈଭବଶାଲୀ ମଖ କରେ ।
ତୁମ-ହୀ ପେ ମଣି ସ୍ୟମନ୍ତକ, ଆପସମହୁଁ ହମ ସବ ଲରେ ॥



## ସ୍ୟମନ୍ତକୋପାଖ୍ୟାନର ସମାପ୍ତି

ଯସ୍ତ୍ୱେତଦ୍ ଭଗବତ ଈଶ୍ୱରସ୍ୟ ବିଷ୍ଣୋ—
ର୍ବୀର୍ଯ୍ୟାଢ୍ୟଂ ବୃଜିନହରଂ ସୁମଙ୍ଗଲଂ ଚ ।
ଆଖ୍ୟାନଂ ପଠତି ଶୃଣୋତ୍ୟନୁସ୍ମରେଦ୍ ବା
ଦୁଷ୍କୀର୍ତ୍ତିଂ ଦୁରିତମପୋହ୍ୟ ଯାତି ଶାନ୍ତିମ୍ ॥ *

( ଶ୍ରୀ ଭା: ୧୦ମ ସ୍କନ୍ଧ ୫୭ ଅ. ୪୨ ଶ୍ଳୋକ )

---

| | | | |
|---|---|---|---|
| * ମଣି ହରଣ ସାଧୁବାଣୀ | । | କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ | ॥ |
| ଦୁଃଖ-ଦୁରିତ-ଅପବାଦ | । | ଏ ଆଦି ଯେତେ ମନଖେଦ | ॥ |
| ଦୁଷ୍ଟ ସ୍ୱପନ ଗ୍ରହଗତି | । | ଶ୍ରବଣେ ପଠନେ ନାଶନ୍ତି | ॥ |

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦ମ : ୬୧ଅ)

## ଛପ୍‌ପୟ

ବନ୍ଧୁ କରେଂ ସନ୍ଦେହ ଲଡ଼େଂ ସବ ରାନୀ ଘରମହଁ ।
ତୁମ ମଣି ଦେହୁ ଦିଖାୟ ରହେ ତୁମରେ ହୀ କରମହଁ ॥
ହରି ଆୟସୁ ଅକ୍ରୂର ମାନ ମଣି ସବହିଁ ଦିଖାଈ ।
ସବକୀ ଶଙ୍କା ମିଟୀ ଶାନ୍ତ ସବ ଭଈ ଲଡ଼ାଈ ॥
ମଣି ଧାହ୍ନୀଂ ଆକ୍ରୁର କୁଁ, ସୋନେ। ସବ ଘର ଘର ବଟତ ।
ସଖ ଦେଂ ସବ ଯାଦବ ରହତ, କୃଷ୍ଣ କୃଷ୍ଣ ସବ ହୀ ରଟତ ॥

ପୁଣ୍ୟଶ୍ଳୋକଙ୍କ ଚରିତ ପଢ଼ିଲେ ପୁଣ୍ୟ ଅର୍ଜ୍ଜନ ହୁଏ ଓ ପାପୀ ମାନଙ୍କ ବିଷୟରେ ଚର୍ଚ୍ଚା କଲେ ପାପ ଅର୍ଜ୍ଜନ ହୁଏ । କିନ୍ତୁ ଭଗବାନଙ୍କ ସହିତ ଯାହାଙ୍କର ସଂସର୍ଗ, ସେ ପାପୀ ହୋଇଥିଲେ ମଧ୍ୟ ଭଗବାନଙ୍କ ସଂସର୍ଗରୁ ସେ ମଧ୍ୟ ପବିତ୍ର ହୋଇଯାଏ ଓ ତାହାର ଚରିତ୍ର ବି ଶ୍ରବଣୀୟ ହୁଏ । ଯେଉଁ ବସ୍ତୁ, ଯେଉଁ ଘଟଣା, ଯେଉଁ ଦେଶ ବା ଯେଉଁ କାଳରେ ଆମେ ଭଗବାନଙ୍କୁ ସ୍ମରଣ କରୁଁ ତାହା ପୁଣ୍ୟ ଓ ତାହାର ବିପରୀତରେ ଆମେ ଯେଉଁ ଅଧିକାଧିକ ସଂସାରର ବିଷୟ ଭୋଗରେ ପ୍ରବୃତ୍ତ ହେଉ ତାହା ପାପ । ବିଷ୍ଣୁ ସ୍ମରଣ ହିଁ ସମ୍ପତ୍ତି ଓ ବିଷ୍ଣୁ ବିସ୍ମରଣ ହିଁ ବିପତ୍ତି ।

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ଡାକରା ପାଇ ଅକ୍ରୂର ଦ୍ୱାରକା ଆସିଲେ । ସେ ଆସିବାମାତ୍ରେ ଭଗବାନ ତାଙ୍କୁ କଠୋର କର୍କଶ ବାକ୍ୟ ନକହି, ସାମ ନୀତିରେ ତାଙ୍କଠାରୁ କାର୍ଯ୍ୟ ହାସଲ କଲେ । ସେ ଆସିବା ମାତ୍ରେ ତାଙ୍କୁ ନମ୍ରତାର ସହିତ ଅତ୍ୟନ୍ତ ଉଲ୍ଲାସରେ କହିଲେ—'ଆସନ୍ତୁ ଦାଦା ! ଆପଣ ତ ଆମକୁ ପୂରାପୂରି ଭୁଲିଗଲେ ।"

ଭଗବାନଙ୍କଠାରୁ ଏପରି ଆଦର ପାଇ ଅକ୍ରୂର ମନକୁ ମନ ଲଜ୍ଜିତ ହେଲେ; ଓ ଭଗବାନଙ୍କଠାରୁ ଦୂରରେ ବସିବାକୁ ଚେଷ୍ଟା କଲେ । ସେତେବେଳେ ଭଗବାନ ନିଜେ ଯାଇ ତାଙ୍କ ହାତଧରି ଆଣି ନିଜ ପାଖରେ ବସାଇଲେ ଓ ଅତ୍ୟନ୍ତ ଆଦରରେ ପଚାରିଲେ—"କହନ୍ତୁ ଦାଦା, ଆପଣଙ୍କର ସମସ୍ତ କୁଶଳ ତ ?"

ଅକ୍ରୂର କହିଲେ—"ମହାରାଜ ! ସମସ୍ତ କୁଶଳ, ତାହା ହିଁ ଆପଣଙ୍କ କୃପା । ଆପଣଙ୍କ ଆଶ୍ରିତର ତ କଦାପି ଅକୁଶଳ ହୁଏ ନାହିଁ ।

ପୁନଶ୍ଚ ଭଗବାନ କହିଲେ—"ହିଁ ଦାଦା ! ଆପଣଙ୍କ ଚାଲିଯିବା ପରେ ଏଠାରେ ବହୁତ ବଡ଼ ବଡ଼ ଉପଦ୍ରବ ଘଟିଛି । ସମସ୍ତ ଦ୍ୱାରକାବାସୀ ବଡ଼ କଷ୍ଟରେ ଅଛନ୍ତି । ମୁଁ

ଶୁଣିବାକୁ ପାଇଲୁ ଆପଣ କାଶୀକ୍ଷେତ୍ରରେ ବହୁତ ବଡ଼ ବଡ଼ ଯଜ୍ଞ କରାଇଲେ । ଆମ୍ଭେମାନେ ଏଠାରେ ବସି ବସି ଆପଣଙ୍କ କୀର୍ତ୍ତି ଶୁଣୁଥିଲୁ ଓ ପ୍ରସନ୍ନ ହେଉଥିଲୁ ଯେ, ଆମ କୁଳରେ ଜଣେ ହେଲେ ତ ଏପରି ବ୍ୟକ୍ତି ଜନ୍ମ ଗ୍ରହଣ କଲେ, ଯାହାଙ୍କର କୀର୍ତ୍ତି ଦିଗଦିଗନ୍ତ ବ୍ୟାପ୍ତ ହୋଇ ପାରିଲା । ତୀର୍ଥଯାତ୍ରା ପାଇଁ ଯେତେ ବ୍ରାହ୍ମଣ ଏଠାକୁ ଆସିଥିଲେ, ସେମାନେ ସମସ୍ତେ ଆପଣଙ୍କ ଦାନର ବହୁତ ପ୍ରଶଂସା କରୁଥିଲେ । ଏଠାରେ ଆପଣ ଦାନାଧକ୍ଷ ଥିଲେ, କିନ୍ତୁ ସେଠାରେ ଦାନପତି ହୋଇଗଲେ ।"

ଅକ୍ରୂର ଲଜ୍ଜିତ ହୋଇ କହିଲେ—"ହେ ଭଗବାନ ! ଏ ସବୁ ଆପଣଙ୍କ ଚରଣର ଆଶୀର୍ବାଦ ।"

ଭଗବାନ କହିଲେ—"ଦାଦା ! କୀର୍ତ୍ତି ମଧ୍ୟ ସମସ୍ତଙ୍କୁ ମିଳେନାହିଁ । ଜଣେ ଅନ୍ୟ ଜଣଙ୍କର ଉପକାର କରୁଥିବାବେଳେ, କେତେକ ଲୋକ ତାହାର ଅପକାର କରନ୍ତି, ପ୍ରବଞ୍ଚକ ବୋଲି କହନ୍ତି ଓ କୀର୍ତ୍ତିଲୋଲୁପ କହି ନିନ୍ଦା କରନ୍ତି । ଅନ୍ୟକୌଣସି ଲୋକ କାହାର କିଛି ଉପକାର ନ କରୁ ପଛକେ ଲୋକେ ତାହାର ଭୂରି ଭୂରି ପ୍ରଶଂସା କରନ୍ତି । ଏପରି କେତେକ ଲୋକ ଅଛନ୍ତି, ଯେ କାହାରି ଭଲମନ୍ଦରେ ନ ଥିଲେ ମଧ୍ୟ ତାଙ୍କ ଉପରେ ମିଥ୍ୟା କଳଙ୍କ ଲଦି ଦିଆଯାଏ । ପୁନଶ୍ଚ ଏପରି ଲୋକ ମଧ୍ୟ ଅଛନ୍ତି, ଯେଉଁମାନେ କି ଚୋରି, ଡକାଇତି କରୁଥିଲେ ମଧ୍ୟ ତାଙ୍କର ପ୍ରଶଂସା ହେଉଥାଏ । ଏସବୁ ଲୋକ ଆଚରଣ ଦେଖି ମୋର ଯଥେଷ୍ଟ ଅଭିଜ୍ଞତା ହୋଇଛି ଏବଂ ମୁଁ ଏହି ସାର ନିଷ୍କର୍ଷରେ ପହଞ୍ଚିଛି ଯେ, ଏସବୁ କର୍ମର ଦୋଷ । ଯେପରି ଧନ, ବୈଭବ, ବିଦ୍ୟା, ପୌରୁଷ ବା ସଦାଚାରରୁ ପ୍ରାପ୍ତ ହୁଏ ନାହିଁ, ଏଥିରେ ପ୍ରାରବ୍ଧ ହିଁ ମୁଖ୍ୟକାରଣ । ସମ୍ମାନ, ପ୍ରତିଷ୍ଠା ଓ କୀର୍ତ୍ତି ବିଷୟ ମଧ୍ୟ ସେହିପରି ବୋଲି ମୁଁ ମନେକରେ । ଅଚ୍ଛା, ଦାଦା ! ମୁଁ ଆପଣଙ୍କୁ ଗୋଟିଏ କଥା ପଚାରିବି, ଆପଣ ଖରାପ ଭାବିବେ ନାହିଁ ।"

ଅକ୍ରୂର ସ୍ନେହର ସହିତ କହିଲେ—"ହେ ଯଦୁନନ୍ଦନ ! ଆପଣ କିପରି କଥା କହୁଛନ୍ତି ! ମୁଁ ଆପଣଙ୍କ କୌଣସି କଥାକୁ କଦାପି ଖରାପ ଭାବିପାରେ ?"

ଭଗବାନ ହସି ହସି କହିଲେ—"ଆଚ୍ଛା, ମୋତେ କହିପାରିବେ କି ସେ ମଣି କେଉଁଠି ଅଛି ?"

ଅକ୍ରୂର ଚମକିପଡ଼ି ପଚାରିଲେ—"କେଉଁ ମଣି ? କିପରି ମଣି ? କାହାର ମଣି ? ମଣି କଥା ପଚାରିବାର ଆପଣଙ୍କର ଅଭିପ୍ରାୟ କ'ଣ ?"

ସମସ୍ତଙ୍କ ଅନ୍ତର କଥା ଜାଣୁଥିବା ମାଧବ ମନ୍ଦ ମନ୍ଦ ହସି ଅକ୍ରୂରଙ୍କ ହାତକୁ ପ୍ରେମପୂର୍ବକ ନିଜ ହାତରେ ଦାବି କହିଲେ—"ଦେଖ, ଦାଦା ! ଏବେ ଲୁଚାଇବାର କଥା ନୁହେଁ, ମୁଁ ଆପଣଙ୍କ ଉପରେ କଳଙ୍କ ବୋଝ ଲଦି ଦେଉନାହିଁ କିମ୍ବା ଆପଣଙ୍କୁ

ମଣି ମାଗୁ ନାହିଁ । ଏହା ମୁଁ ଭଲ ଭାବରେ ଜାଣେ ଯେ, ଶତଧନ୍ୱା ପଳାଇଯିବା ସମୟରେ ମଣିଟିକୁ ଆପଣଙ୍କୁ ହିଁ ଦେଇଯାଇଥିଲା ଓ ପ୍ରତ୍ୟହ ଆଠଭାର ସୁବର୍ଣ୍ଣ ପ୍ରଦାନକାରୀ, ସେହି ତେଜୋମୟ ସ୍ୟମନ୍ତକ ମଣି ଆପଣଙ୍କ ପାଖରେ ହିଁ ଅଛି । ଏହା ଆପଣ ନିୟମାନୁସାରେ ବିଚାର କରନ୍ତୁ, ସିଦ୍ଧାନ୍ତତଃ ମଣି ଉପରେ ଆମ୍ଭର ହିଁ ସ୍ୱତ୍ୱ । ସେହି ମଣିର ସ୍ୱତ୍ୱାଧିକାରୀ ତୁମେ ନୁହଁ । ମଣିଟି ଶତାଜିତଙ୍କର । ତାଙ୍କର କୌଣସି ପୁତ୍ର ନାହାନ୍ତି । ପୁତ୍ର ନଥିଲେ କନ୍ୟାର ପୁତ୍ରର ତଥା ଦୌହିତ୍ରର ସମ୍ପତ୍ତିରେ ଅଧିକାର । ପୁତ୍ର ନଥିଲେ ଦୌହିତ୍ର ହିଁ ଜଳ, ତର୍ପଣ ଓ ଶ୍ରାଦ୍ଧାଦ କରନ୍ତି । ନିଜ ମାତାମହଙ୍କ ଠାରେ ଯେତେ ଋଣ ଥାଏ, ତାହା ପରିଶୋଧ କଲାପରେ ଅବଶିଷ୍ଟ ରହିଥିବା ଧନର ଅଧିକାରୀ ବି ହେବାକୁ ହୁଏ । ଅନ୍ୟର ମଧ୍ୟ ମୋର ମଣିର ଲୋଭ ନାହିଁ, ମଣି ଆପଣଙ୍କ ପାଖରେ ଥାଉ, କାରଣ ଆମ କୁଳରେ ଆପଣଙ୍କ ଭଳି ସଦାଚାରୀ, ନିୟମବ୍ରତର ପାଳନ କର୍ତ୍ତା ଅନ୍ୟ କେହି ନାହିଁ । କିନ୍ତୁ ଆପଣ ସେହି ମଣିକୁ ସମସ୍ତଙ୍କୁ ଦେଖାଇ ଦେଇ ରଖନ୍ତୁ । ସେହି ମଣି ଯୋଗୁଁ ହିଁ ସମସ୍ତେ ମୋତେ ସନ୍ଦେହ କରୁଛନ୍ତି । ମୋର ବଡ଼ଭାଇ ବଳରାମ ଏହି ମଣି ଯୋଗୁଁ ମିଥିଳାପୁରୀରେ ଯାଇ ରହିଛନ୍ତି । ମୋ ପତ୍ନୀମାନଙ୍କ ମଧ୍ୟରେ ବି ନିଜ ନିଜ ଭିତରେ ମନୋମାଳିନ୍ୟ ହୋଇଅଛି । ଲୋକମାନେ ମଧ୍ୟ ଭଲ ଭଲ ଚର୍ଚ୍ଚା କରୁଛନ୍ତି । ଆପଣ ମଣିଟିକୁ ଦେଖାଇଦେଲେ ସବୁ କଥା ସମାଧାନ ହୋଇଯିବ । ମୁଁ ଆପଣଙ୍କୁ ମଣି ଯୋଗୁଁ ଦୋଷ ଦେଉ ନାହିଁ । ଆପଣ ଏହା ବି କହୁ ନାହାନ୍ତି ଯେ, ମଣି ଆପଣଙ୍କ ନିକଟରେ ନାହିଁ । ମନେକରନ୍ତୁ ଆପଣଙ୍କର ପାଖରେ ମଣି ନାହିଁ, ତାହାହେଲେ ଆପଣ କାଶୀ କ୍ଷେତ୍ରରେ ଏତେ ବଡ ବଡ଼ ଯଜ୍ଞ କିପରି କରିପାରିଲେ ? ମୁଁ ଏହା ମଧ୍ୟ ଶୁଣିଛି ଯେ, ଆପଣଙ୍କର ସମସ୍ତ ଯଜ୍ଞବେଦି ସୁବର୍ଣ୍ଣରେ ନିର୍ମିତ ହୋଇଥିଲା ଓ ଆପଣ ନିରନ୍ତର ସୁବର୍ଣ୍ଣ ଦାନ କରୁଥିଲେ । ଦାନ ବିଷୟକୁ ଯେ ଯେତେ ଲୁଚାଇଲେ ମଧ୍ୟ ତାହା ଲୁଚି ରହି ପାରେ ନାହିଁ । କହନ୍ତୁ ତ, ଏତେ ସୁବର୍ଣ୍ଣ ଆପଣ କେଉଁଠାରୁ ପାଉଥିଲେ ? ଏହା ବାସ୍ତବ ସତ୍ୟ ଯେ, ଆପଣ ସ୍ୟମନ୍ତକ ମଣିକୁ ପୂଜାକରି ତହିଁରୁ ପ୍ରତ୍ୟେକ ଦିନ ଆଠଭାର ସୁବର୍ଣ୍ଣ ପାଉଥିଲେ । ଏହା ତ ଅତି ଉତ୍ତମ କଥା । ଆମ ଯଦୁବଂଶୀୟଙ୍କର କୀର୍ତ୍ତିକୁ ଆପଣ ବଢ଼ାଇ ଅଛନ୍ତି । ଏହା ଶୁଣି ମହାରାଜ ଉଗ୍ରସେନ ଅତ୍ୟନ୍ତ ପ୍ରସନ୍ନ ହୋଇଛନ୍ତି । ମୁଁ ମଧ୍ୟ ଯେତେବେଳେ ବ୍ରାହ୍ମଣଙ୍କ ମୁଖରୁ ଆପଣଙ୍କ ପ୍ରଶଂସା ଶୁଣୁଥିଲି, ସେତେବେଳେ ମୋର ଆନନ୍ଦର ସୀମା ନଥିଲା । ଏବେ ଆପଣ ବିଳମ୍ବ ନ କରି ସେହି ମଣିକୁ ସମସ୍ତଙ୍କ ଆଗରେ ଦେଖାଇ ସମସ୍ତଙ୍କର ସନ୍ଦେହ ଦୂର କରନ୍ତୁ ।"

ଏହା ଶୁଣି ଅକ୍ରୂର ହତବୁଦ୍ଧି ହୋଇଗଲେ । ଏବେ କରିବେ କ'ଣ ? ଧାଈ ଆଗରେ କଦାପି କେହି ପେଟ ଲୁଚାଇ ପାରେ ? ସେ ବସ୍ତ୍ରରେ ଭଲଭାବେ ଗୁଡ଼ାଇ ଅଣ୍ଟାରେ ବାନ୍ଧିଥିବା ସେହି ମଣିକୁ ବାହାରକରି ସମସ୍ତଙ୍କୁ ଦେଖାଇଦେଲେ । ତାହାର ଆଲୋକରେ ସଭାଭବନ ସାରା ଆଲୋକିତ ହୋଇ ଉଠିଲା । ସମସ୍ତଙ୍କୁ ଏପରି ବୋଧ

ହେଲା, ସତେ ଯେପରି ସୁଧର୍ମା ସଭାରେ ସୂର୍ଯ୍ୟନାରାୟଣ ଆସି ପଦାର୍ପଣ କରିଛନ୍ତି । ମଣିକୁ ଦେଖି ସମସ୍ତଙ୍କ ମନରେ ଯେଉଁ ଅନ୍ଧକାରରୂପୀ ସନ୍ଦେହ ବସା ବାନ୍ଧିଥିଲା, ତାହା ଦୂର ହୋଇଗଲା ।

ଭଗବାନ ସେହି ମଣିକୁ ହାତରେ ଧରି ସମସ୍ତଙ୍କୁ ଦେଖାଇ କହିଲେ —"ଦେଖିନିଅ, ଭାଇ ମାନେ ! ଏହା ସେହି ସ୍ୟମନ୍ତକ ମଣି, ମୁଁ ତାହା ଲୁଚାଇ ରଖି ନଥିଲି । ଦାଦାଙ୍କୁ ହିଁ ଶତଧନ୍ୱା ଦେଇ ଯାଇଥିଲା ଓ ସେ ତାହା ନେଇ ତୀର୍ଥବ୍ରତ କରିବାକୁ ଚାଲି ଯାଇଥିଲେ । ସେ ଏହାର ଅତ୍ୟନ୍ତ ସଦୁପଯୋଗ କରିଅଛନ୍ତି । ଆମ୍ଭ-ମାନଙ୍କ କୁଳର କୀର୍ତ୍ତି ବଢ଼ାଇ ଅଛନ୍ତି, ଏହିସବୁ କାରଣରୁ ସେ ହିଁ ମଣି ରଖିବାର ଅଧିକାରୀ । ଆମ କୁଳରେ ତାଙ୍କପରି ଶ୍ରଦ୍ଧାବାନ ଭକ୍ତ ଓ ବ୍ରତ ପାଳନକାରୀ ଅନ୍ୟ କେହି ନାହିଁ । ତେଣୁ ଆଜିଠାରୁ ଏହି ମଣି ତାଙ୍କରି ପାଖରେ ହିଁ ରହିବ । ଏହା ତାଙ୍କ ଇଚ୍ଛା ଉପରେ ନିର୍ଭର କରେ ଯେ, ଏଥିରୁ ବାହାରୁ ଥିବା ସୁବର୍ଣ୍ଣ ସେ ଚାହିଁଲେ ଆମ ଘରକୁ ପଠାଇ ପାରନ୍ତି କିମ୍ବା ଅନ୍ୟ କାହାରି ଘରକୁ ପଠାଇ ଦେଇ ପାରନ୍ତି ।"

ଏହାକହି ଭଗବାନ ସେହି ମଣିକୁ ଅକ୍ରୂରଙ୍କୁ ଫେରାଇଦେଲେ । ଅକ୍ରୂର ବହୁ ଅନୁନୟ ବିନୟ ହୋଇ କହିଲେ—"ହେ ଯଦୁନନ୍ଦନ ! ଆପଣ ହିଁ ଏହି ମଣିକୁ ରଖନ୍ତୁ ।" କିନ୍ତୁ ଭଗବାନ ତାହା ସ୍ୱୀକାର କଲେ ନାହିଁ ।

ଏ କଥା ସର୍ବତ୍ର ପ୍ରଚାରିତ ହୋଇଗଲା । ବଳରାମ ମଧ୍ୟ ଏହା ଶୁଣିବାକୁ ପାଇଲେ । ଏହା ଶୁଣିବା ମାତ୍ରେ ତାଙ୍କ ହୃଦୟରେ ଭ୍ରାତୃସ୍ନେହ ଦ୍ୱିଗୁଣିତ ହେବାକୁ ଲାଗିଲା । ସେ ସଙ୍ଗେ ସଙ୍ଗେ ଦ୍ୱାରକା ଫେରିଆସି ସମସ୍ତଙ୍କୁ ଭେଟିଲେ । ସମସ୍ତଙ୍କୁ ପୂର୍ବଭଳି ଶ୍ରଦ୍ଧା ପ୍ରଦର୍ଶନ କଲେ ଓ ସମସ୍ତଙ୍କ ସହିତ ପ୍ରେମପୂର୍ବକ ଅବସ୍ଥାନ କରିବାକୁ ଲାଗିଲେ । ମଣିରୁ ଯେତେ ସୁବର୍ଣ୍ଣ ବାହାରିଲା, ଅକ୍ରୂର ତାହା ଭଗବାନଙ୍କ ନିକଟକୁ ପ୍ରତ୍ୟହ ପଠାଇଦେଲେ । ଭଗବାନ ସେଥିରେ ଦାନ ପୁଣ୍ୟ କଲେ ଓ ସମସ୍ତ ଯାଦବଙ୍କ ଘରକୁ କିଛି କିଛି ପଠାଇ ଦେଉଥିଲେ ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ମୁଁ ଏହା ଜାଣିବାକୁ ଚାହେଁ ଯେ, ଭଗବାନଙ୍କୁ ଏହି ମିଥ୍ୟାକଳଙ୍କ କେଉଁ କାରଣରୁ ଲାଗିଲା ? ବିନା କାରଣରେ ତ କୌଣସି କାର୍ଯ୍ୟ ହୁଏ ନାହିଁ ?"

ସୂତ କହିଲେ—"ହଁ, ମହାରାଜ ! ବିନା କାରଣରେ ତ କୌଣସି କାର୍ଯ୍ୟ ହୁଏ ନାହିଁ, କାରଣଟି ଏହି ଜନ୍ମର ହୋଇଥାଉ କିମ୍ବା ପୂର୍ବଜନ୍ମର ହୋଇଥାଉ । ଭଗବାନ୍

ଭାଦ୍ରପଦ ଶୁକ୍ଳ ଚତୁର୍ଥୀ ଦିନ ଚନ୍ଦ୍ର ଦର୍ଶନ କରିଥିଲେ । ସେଥିଯୋଗୁଁ ତାଙ୍କଠାରେ ଏହି କଳଙ୍କ ଲାଗିଥିଲା ।"

ଶୌନକ କହିଲେ—"ଭାଦ୍ରପଦ ଶୁକ୍ଳ ଚତୁର୍ଥୀର ଚନ୍ଦ୍ରମାଠାରେ ଏପରି କି ଦୋଷ ଅଛି ଯେ, ତାଙ୍କୁ ଦର୍ଶନ କଲେ କଳଙ୍କ ଲାଗିଯାଏ ? ଚନ୍ଦ୍ରଙ୍କୁ ତ ସମସ୍ତେ ସବୁଦିନ ଶୁକ୍ଳ ପକ୍ଷରେ ଦେଖି ଥାଆନ୍ତି ? ତାଙ୍କୁ ଦେଖିଲେ ତ ସମସ୍ତଙ୍କ ଚିତ୍ତ ପ୍ରସନ୍ନ ହୁଏ ।"

ସୂତ କହିଲେ—"ହଁ, ମହାରାଜ ! ଚନ୍ଦ୍ରଙ୍କୁ ଦେଖିଲେ ମନ ଆନନ୍ଦ ହୁଏ, କିନ୍ତୁ ସେହିଦିନର ଚନ୍ଦ୍ରଙ୍କୁ ଦେଖିବା ଉଚିତ ନୁହେଁ । ସେହିଦିନର ଚନ୍ଦ୍ର କଳଙ୍କିତ ଚନ୍ଦ୍ର ଅଟନ୍ତି ।"

ଶୌନକ ପଚାରିଲେ—"ହେ ସୂତ ! ଭାଦ୍ରବ ଶୁକ୍ଳ ଚତୁର୍ଥୀ ଦିନର ଚନ୍ଦ୍ର କାହିଁକି କଳଙ୍କିତ ହୋଇଛନ୍ତି, ସେ ସମ୍ବନ୍ଧରେ କୃପାକରି ଆମ୍ଭମାନଙ୍କୁ ଶୁଣାନ୍ତୁ ।"

ସୂତ କହିଲେ—"କଥାଟା ହେଉଛି, ଏହି ଚନ୍ଦ୍ରମା ଅତିଶୟ ସୁନ୍ଦର ଥିଲେ । ଚନ୍ଦ୍ର ରାଜସୂୟ ଯଜ୍ଞ କଲେ । ଏଥିରେ ତାଙ୍କର ତେଜ ଅହୁରି ବଢ଼ିଗଲା । ଅନେକ ଋଷିପତ୍ନୀ ତାଙ୍କ ସୌନ୍ଦର୍ଯ୍ୟ ଦେଖି ମୁଗ୍ଧ ହେଲେ । ଏହାଦ୍ୱାରା ତାଙ୍କର ଅଭିମାନ ଅହୁରି ବଢ଼ିଗଲା । ଦେବତାମାନଙ୍କର ଗୁରୁ ବୃହସ୍ପତିଙ୍କ ପତ୍ନୀ ତାରା ଅତ୍ୟନ୍ତ ରୂପବତୀ ଥିଲେ । ତାଙ୍କୁ ଦେଖି ଚନ୍ଦ୍ରମାଙ୍କ ମନ ତାଙ୍କ ପ୍ରତି ଆକୃଷ୍ଟ ହେଲା । ସେ ଭାଦ୍ରବ ଶୁକ୍ଳ ଚତୁର୍ଥୀଦିନ ତାରା ଦେବୀଙ୍କୁ ହରଣ କରିଥିଲେ । ଦେବତାମାନେ ତାଙ୍କୁ ବହୁତ ବାରଣ କରିଥିଲେ, କିନ୍ତୁ ସେ ତାହା ମାନି ନଥିଲେ । ବୃହସ୍ପତିଙ୍କଠାରେ ଦ୍ୱେଷ ରଖିଥିବାରୁ ଶୁକ୍ରାଚାର୍ଯ୍ୟ ଚନ୍ଦ୍ରମାଙ୍କ ପକ୍ଷ ହୋଇଗଲେ । ଯୁଦ୍ଧର ପରିସ୍ଥିତି ସୃଷ୍ଟି ହେଲା । ବ୍ରହ୍ମା ମଧ୍ୟସ୍ଥ ହୋଇ ବିଚାର କରି ତାରାଙ୍କୁ ବୃହସ୍ପତିଙ୍କୁ ଆଣି ଫେରାଇ ଦେଲେ । ସେତେବେଳେ ବୃହସ୍ପତି ନିଜର ପତ୍ନୀ ତାରାଙ୍କୁ ବହୁତ ତାଡ଼ନା କଲେ । ଏଥିରେ ଦୁଃଖୀ ହୋଇ ତାରାଦେବୀ ଚନ୍ଦ୍ରମାଙ୍କୁ ଶାପ ଦେଲେ ଯେ, 'ଯା, ତୁ ଆଜିଠାରୁ କଳଙ୍କିତ ହୋଇ ଯା । ଯେଉଁ ପୁରୁଷ ତୋତେ ଏହି ଭାଦ୍ରବ ଶୁକ୍ଳପକ୍ଷ ଚତୁର୍ଥୀଦିନ ଦେଖିବ, ସେ ନିଶ୍ଚିତ କଳଙ୍କିତ ହେବ ।'

"ଏହି ଶାପ ପାଇବାରୁ ଚନ୍ଦ୍ରମାଙ୍କ ମନରେ ଅତ୍ୟନ୍ତ ଦୁଃଖ ହେଲା । ସେ ନାରାୟଣ ସରୋବରର ତଟକୁ ଯାଇ ନବଦ୍ୱାର ରୁଦ୍ଧ କରି ବହୁତ ଦିନ ପର୍ଯ୍ୟନ୍ତ ଘୋର ତପ କଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ନାରାୟଣ ତାଙ୍କ ଆଗରେ ଆବିର୍ଭାବ ହେଲେ । ସେ ଦେଖିଲେ ତପ କରି କରି ଚନ୍ଦ୍ରମା ଅତ୍ୟନ୍ତ କ୍ଷୀଣ ହୋଇ ଯାଇଛନ୍ତି । ତାଙ୍କର ଅବସ୍ଥା ଏପରି ହୋଇଥିବାର ଦେଖି ନାରାୟଣଙ୍କ ମନରେ ଦୟା ଆସିଲା । ସେ କହିଲେ—'ହେ ଚନ୍ଦ୍ରଦେବ ! ତୁମେ ତ ଖୁବ୍ ବଡ଼ ପାପ କରିଅଛ, ଗୁରୁପତ୍ନୀଗାମୀଙ୍କୁ

ନିସ୍ତାର ନାହିଁ । କିନ୍ତୁ ତୁମେ ଏହି ପରମ ପବିତ୍ର ସ୍ଥାନରେ ବହୁଦିନ ଧରି ମୋତେ ଆରାଧନା କରିଅଛ । ତେଣୁ ତୁମେ ଆଜିଠାରୁ ନିଷ୍କଳଙ୍କ ହୋଇଗଲ । ଆଜି ତୁମକୁ ଦର୍ଶନ କଲେ କାହାରିକୁ କଳଙ୍କ ଲାଗିବ ନାହିଁ; କିନ୍ତୁ ଭାଦ୍ରବ ଶୁକ୍ଳ ଚତୁର୍ଥୀ ତିଥିରେ ଯେଉଁଦିନ କି ତୁମେ ତାରାଦେବୀଙ୍କୁ ହରଣ କରିଥିଲ ଓ ତାରାଦେବୀ ତୁମକୁ ଶାପ ଦେଇଥିଲେ, ସେହିଦିନ ତୁମକୁ ଯିଏ ଦେଖିବ, ତା ଉପରକୁ ତୁମର ସେହି କଳଙ୍କ ଲାଗିଯିବ ।' ଏହା କହି ଭଗବାନ୍ ନାରାୟଣ ଅନ୍ତର୍ଦ୍ଧାନ ହୋଇଗଲେ । ଚନ୍ଦ୍ରମା ମଧ୍ୟ ପ୍ରସନ୍ନ ହୋଇ ନିଜ ସ୍ଥାନକୁ ଫେରି ଆସିଲେ ।

"ସେହିଦିନଠାରୁ ଯେ କେହି ଭାଦ୍ରବ ଶୁକ୍ଳ ଚତୁର୍ଥୀ ଦିନ ଚନ୍ଦ୍ରଙ୍କୁ ଦେଖନ୍ତି, ତାଙ୍କ ଉପରେ ମିଥ୍ୟା କଳଙ୍କ ଲାଗିଯାଏ । ଭଗବାନ ଶ୍ରୀକୃଷ୍ଣ ମଧ୍ୟ ତାଙ୍କୁ ସେହିଦିନ ଦେଖିଥିଲେ, ସେଥିପାଇଁ ତାଙ୍କ ଉପରେ ମିଥ୍ୟା କଳଙ୍କ ବୋଝ ଲଦି ଦିଆ ଯାଇଥିଲା ।"

ଶୌନକ ପଚାରିଲେ—"ହେ ସୂତ ! ଭଗବାନ୍ ଜାଣିଶୁଣି ନିଜ ମୁଣ୍ଡ ଉପରକୁ କଳଙ୍କ ବୋଝ କାହିଁକି ନେଇଥିଲେ ? ସେ ଚାହିଁଥିଲେ ଚନ୍ଦ୍ରଙ୍କୁ ତ ସେଦିନ ଦେଖି ନ ଥାନ୍ତେ ?"

ସୂତ କହିଲେ—"ଭଗବନ୍ ! ଭଗବାନ ଯାହା କିଛି କରନ୍ତି, ଲୋକ ସଂଗ୍ରହ ପାଇଁ କରନ୍ତି । ସେ ନିଜ ଉପରକୁ କଳଙ୍କ ନେଇ ଏହା ପ୍ରମାଣ କରିଦେଲେ ଯେ, ସର୍ବ ସମର୍ଥ ଭଗବାନ ମଧ୍ୟ କର୍ମର ଫଳ ଭୋଗ କରନ୍ତି । ପୁନଶ୍ଚ ଭଗବାନଙ୍କୁ ତ ଲୋକମାନଙ୍କୁ ଉଦ୍ଧାର କରିବାକୁ ପଡ଼ିବ, ଯିଏ ଭୁଲ୍‌ରେ ଚନ୍ଦ୍ରଙ୍କୁ ଦର୍ଶନ କରିବ ତାଙ୍କୁ ଉଦ୍ଧାର କରିବା ଉପାୟ ମଧ୍ୟ ତାଙ୍କୁ ବାହାର କରିବାକୁ ପଡ଼ିବ । ତାଙ୍କୁ ଉଦ୍ଧାର କରିବାର ଏହି ଉପାୟ ଯେ, ଯଦି କେହି ଭୁଲ୍‌ବଶତଃ ଭାଦ୍ରବ ଶୁକ୍ଳ ଚତୁର୍ଥୀରେ ଚନ୍ଦ୍ରଙ୍କୁ ଦେଖିପକାଏ, ତାହାହେଲେ ସେ ମୂଳରୁ ଶେଷ ପର୍ଯ୍ୟନ୍ତ "ଭାଗବତ କଥା" ଅନ୍ତର୍ଗତ ଏହି ସ୍ୟମନ୍ତ-କୋପାଖ୍ୟାନକୁ ପାଠ କରିବ କିମ୍ବା ଶ୍ରବଣ କରିବ । ତେବେ ଯାଇ ତାହାର କଳଙ୍କ ଅପସାରିତ ହେବ । ଯେଉଁ ବ୍ୟକ୍ତି ଏହି ସର୍ବେଶ୍ୱର ଭଗବାନଙ୍କର ପରମ ପବିତ୍ର ସ୍ୟମନ୍ତକୋପାଖ୍ୟାନ ରୂପୀ ପବିତ୍ର ଚରିତକୁ ଶ୍ରଦ୍ଧା ଓ ଭକ୍ତିପୂର୍ବକ ଶ୍ରବଣ କରିବେ, ସେ ଉକ୍ତ ଚତୁର୍ଥୀରେ ଦେଖିଥିବା ଚନ୍ଦ୍ରଜନିତ ପାପରୁ ଯେ କେବଳ ପରିତ୍ରାଣ ପାଇବେ ତାହା ନୁହେଁ, ବରଂ ସେ ସମସ୍ତ ପ୍ରକାର ଅପକୀର୍ତ୍ତିରୁ ମୁକ୍ତ ହୋଇଯିବେ । ମିଥ୍ୟା ଅପଯଶରେ ଯାହାଙ୍କର ଚିତ୍ତ ଉଦ୍‌ବେଗ ହେଉଥିବ ସେ ମଧ୍ୟ ସେଥିରୁ ପରିତ୍ରାଣ ପାଇବେ ଓ ପରମ ପଦର ଅଧିକାରୀ ହୋଇ ପାରିବେ । ମୁଁ ଏହି ପ୍ରକାର ସ୍ୟମନ୍ତକମଣି ଉପାଖ୍ୟାନ ଆପଣମାନଙ୍କ ଆଗରେ ବର୍ଣ୍ଣନା କଲି । ଏହାପରେ ଆପଣମାନଙ୍କୁ ଭଗବାନ ଶ୍ରୀକୃଷ୍ଣଙ୍କ ଅନ୍ୟ ବିବାହ କଥା କହିବି ।

## ଛପ୍ପୟ

ଦେଖେଁ ଚନ୍ଦା ଚୌଥ ଭାଦ୍ରପଦ କୋ ଶ୍ରୀ ଯଦୁବର ।
ତା ତେଁ ଲଗେଁ କଲଙ୍କ ସହେଁ ସବ ଅପଯଶ ଶ୍ରୀଧର ॥
ଯୋ ସ୍ୟମନ୍ତ ଆଖ୍ୟାନ ପ୍ରେମ ତେଁ ସୁନେ ସୁନାବେଂ ।
ଚୌଥ ଚନ୍ଦ୍ରକୋ ଦୋଷ ମିଟେ ସବ୍ ଶୋକ ନଶାବେଂ ॥
ଅପଯଶ ଅପକୀରତ ବଡ଼ୀ, ଦୁଃଖଦାୟୀ ଅତ କଷ୍ଟପ୍ରଦ ।
ମିଲେ ଶାନ୍ତ ଜା କଥାତେଁ, ଅନ୍ତ ପାହିଁ ନର ପରମ ପଦ ॥

—*—

# ଭଗବାନଙ୍କର ଚତୁର୍ଥ ବିବାହ

ଅଥୋପୟେମେ କାଳନ୍ଦୀଂ ସୁପୁଣ୍ୟର୍ତ୍ତୃକ୍ଷ ଊର୍ଜ୍ଜିତେ ।
ବିତନ୍ୱନ୍ ପରମାନନ୍ଦଂ ସ୍ୱାନାଂ ପରମ ମଙ୍ଗଲମ୍ ॥ *

(ଶ୍ରୀ ଭା : ୧୦ମ ସ୍କନ୍ଧ : ୫୮ ଅ: ୨୯ ଶ୍ଳୋକ)

## ଛପ୍ପୟ

କାଳନ୍ଦୀ ସଁଗ ବ୍ୟାହ କରେଁ ଜୈସେ ଶ୍ରୀନଟବର ।
ସୁନୋ, ତାହି ଅବ କହୁଁ ବ୍ୟାହ ଚୌଥୋ ଅତ ସୁଖକର ॥
ଇନ୍ଦ୍ରପ୍ରସ୍ଥ ହରି ଗୟେ ଭୟେ ତବ ପାଣ୍ଡବ ରାଜା ।
ଯଦୁନନ୍ଦନକୁଁ ନିରଖି ଭୟେ ସବ ସୁଖୀ ସମାଜା ॥
ଇକଦିନ ଯମୁନା ତଟ ଗୟେ, ମୃଗୟା ହିତ ବନମାଁ ଜହାଁ ।
ରବିତନୟା ହରି ବରନ ହିତ, କରତ ଘୋର ଅତ ତପ ତହାଁ ॥

---

* ଉତ୍ତରାୟଣ ଶୁକ୍ଳକାଳେ । ଶୁଭନକ୍ଷତ୍ର ଶୁଭବେଳେ ॥
ଅମରଗୁରୁ ଲଗ୍ନ ତୁଳେ । କାଳନ୍ଦୀ କନ୍ୟା ବିଭା ହେଲେ ॥
ଦେବ-ନରକନ୍ୟା ଦେଖି । ଯାଦବ ଧନ୍ୟ କଲେ ଆଖି ॥

(ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୭୨)

ଭକ୍ତବାଞ୍ଛାକଳ୍ପତରୁ ଭଗବାନ ବାସୁଦେବ ନିଜର ଆଶ୍ରିତଙ୍କର ଇଚ୍ଛାପୂରଣ କରିବା ନିମନ୍ତେ ସବୁକିଛି କରିବାକୁ ଉଦ୍ୟତ ହୋଇଯାଆନ୍ତି । ତାଙ୍କ ଅବତାରର ସର୍ବପ୍ରଧାନ ଉଦ୍ଦେଶ୍ୟ ଏହି ଯେ, ସେ ନିଜର ଶରଣାଗତମାନଙ୍କର ଇଚ୍ଛା ପୂର୍ତ୍ତି କରି ଥାଆନ୍ତି । ଭକ୍ତଙ୍କର ଭାବକୁ ଜାଣି ସେ ସେହିପରି ହୋଇ ସମୁପସ୍ଥିତ ହୋଇ ଥାଆନ୍ତି ଓ ସେମାନେ ଯେପରି ଚାହାନ୍ତି ସେପରି ରୂପ ଧାରଣ କରି ତାଙ୍କୁ ପ୍ରସନ୍ନ କରନ୍ତି । ଭଗବାନ ଏହା ବିଚାର କରନ୍ତି ଯେ, ଭକ୍ତଗଣ ନିଜର ସବୁକିଛି ତାଙ୍କୁ ସମର୍ପିତ କରି ସମସ୍ତ ପ୍ରକାର ସଂସାର ସୁଖକୁ ଜଳାଞ୍ଜଳି ଦେଇ ତାଙ୍କୁ ଅନୁସରଣ କରି କାହିଁକି ପଡ଼ି ରହିଥିବେ ?

ସୂତ କହିଲେ—"ମୁନିଗଣ ! ମୁଁ ଭଗବାନଙ୍କର ପ୍ରଧାନ ତିନି ବିବାହ ବିଷୟରେ ଆପଣମାନଙ୍କୁ କହିଥିଲି । ଏବେ ଆପଣମାନଙ୍କୁ ତାଙ୍କର ଚତୁର୍ଥ ବିବାହ ବୃତ୍ତାନ୍ତ କହୁଅଛି ଶ୍ରବଣ କରନ୍ତୁ ।"

ମୁଁ ପୂର୍ବରୁ କହିଛି ଯେ, ପାଣ୍ଡବ ଜଳି ପୋଡ଼ି ମରିଯାଇଥିବାର ମିଥ୍ୟା ସମାଚାର ଶୁଣି ଭଗବାନ କୁଳାଚାର ପାଳନ କରିବାପାଇଁ ହସ୍ତିନାପୁର ଯାଇଥିଲେ । କିନ୍ତୁ ସେ ଜାଣିଥିଲେ ଯେ ପାଣ୍ଡବମାନେ ମରି ନାହାନ୍ତି । ଏ ପର୍ଯ୍ୟନ୍ତ ଭଗବାନ ନିଜର ପିଉସୀ କୁନ୍ତୀଙ୍କୁ ପ୍ରତ୍ୟକ୍ଷ ଭାବରେ ଦେଖି ନ ଥିଲେ; କିମ୍ବା ପାଣ୍ଡବଙ୍କୁ ମଧ୍ୟ ଦେଖି ନଥିଲେ । ପାଣ୍ଡବ ଜୀବିତ ଅଛନ୍ତି, ଏହି କଥାକୁ ସେ କାହାରି ଆଗରେ ପ୍ରକାଶ କରିବାକୁ ମଧ୍ୟ ଚାହୁଁ ନଥିଲେ ।

ଏଣେ ପାଣ୍ଡବ ଜଉଘର ବିପତ୍ତିରୁ ରକ୍ଷା ପାଇ ଗଙ୍ଗା ପାର ହୋଇ ଗୋଟିଏ ଘଞ୍ଚ ଅରଣ୍ୟ ମଧ୍ୟରେ ପ୍ରବେଶ କରିଥିଲେ । ସେଠାରେ ଭୀମସେନ ହିଡ଼ିମ୍ବ ନାମକ ରାକ୍ଷସକୁ ମାରି ତାହାର ଭଉଣୀ ହିଡ଼ିମ୍ବାକୁ ତାଙ୍କ ମାତାଙ୍କ ଆଜ୍ଞାରେ ଗାନ୍ଧର୍ବ ବିବାହ କରିଥିଲେ । ତାଙ୍କର ଘଟୋତ୍କଚ ନାମକ ଏକ ପୁତ୍ର ହୋଇଥିଲା । ସେହିପରି ପାଣ୍ଡବ ଛଦ୍ମ ବେଶରେ ଏକ ବନରୁ ଅନ୍ୟ ବନକୁ ଯାତ୍ରା କରୁଥିଲେ । ସେମାନେ ମତ୍ସ୍ୟ ଦେଶ, ପାଞ୍ଚାଳ ଦେଶ, ତ୍ରିଗର୍ତ୍ତ ଦେଶ ଓ କୀଚକାଦି ଦେଶ ଭ୍ରମଣ କରୁ କରୁ ବ୍ୟାସଙ୍କ କହିବା ଅନୁସାରେ ଏକଚକ୍ରା ନାମକ ନଗରୀରେ ଯାଇ ରହିବାକୁ ଲାଗିଲେ । ସେହି ପାଞ୍ଚଭାଇ ଶିରଦେଶରେ ବଡ଼ ବଡ଼ ଜଟା ରଖିଥିଲେ, ମୃଗଚର୍ମ ପିନ୍ଧୁଥିଲେ ଓ ତପସ୍ୱୀ ବ୍ରାହ୍ମଣ ବେଶରେ ନିଜ ନିଜକୁ ସଜାଇ ଥିଲେ । ଏକଚକ୍ରା ନଗରୀରେ ସେମାନେ ଭିକ୍ଷା ବୃତ୍ତି କରି ଚଳୁଥିଲେ ।

ସେଠାରେ ଥିବାବେଳେ ସେମାନେ ଦ୍ରୌପଦୀଙ୍କ ସ୍ୱୟଂବର ବିଷୟ ଶୁଣିବାକୁ ପାଇଲେ । ତେଣୁ ଭିକ୍ଷା ମାଗିବା ଛଳରେ ସେମାନେ ମହାରାଜ ଦ୍ରୁପଦଙ୍କ ରାଜଧାନୀରେ ଆସି ପହଞ୍ଚିଲେ । ମହାରାଜ ଦ୍ରୁପଦଙ୍କ ଯଜ୍ଞକୁଣ୍ଡରୁ ଉତ୍ପନ୍ନ ହୋଇଥିବା ଅଯୋନିଜା

ଏକ ପରମ ସୁନ୍ଦରୀ କନ୍ୟା ଦ୍ରୌପଦୀଙ୍କର ସ୍ୱୟଂମ୍ବର ହେଉଥିଲା । ସେହି ସ୍ୱୟଂମ୍ବରରେ ପଣ ଥିଲା ଯେ, ଯେଉଁ ବ୍ୟକ୍ତି ଉପର ଚକରେ ଘୂରୁଥିବା ମାଛକୁ ଶର ବିନ୍ଧି ପାରିବ ତା ସହିତ ଦ୍ରୌପଦୀଙ୍କର ବିବାହ ହେବ । ଅର୍ଜୁନଙ୍କର ବିଶ୍ୱାସ ଥିଲା ଯେ ସେ ସେହି ମତ୍ସ୍ୟକୁ ଶରବିଦ୍ଧ କରି ପାରିବେ । ସେଥିପାଇଁ ସେ ନିଜର ମାତା ଓ ଭ୍ରାତାଙ୍କ ସହିତ ପଞ୍ଚାଳ ଦେଶକୁ ଆସିଲେ । ମହାରାଜ ଦ୍ରୁପଦ ସ୍ୱୟଂବରର ସବୁର ଆୟୋଜନ ଖୁବ୍ ଜାକ୍‌ଜମକରେ କରିଥିଲେ । ଦେଶ ବିଦେଶରୁ ବହୁତ ରାଜା, ରାଜକୁମାର ସେଥିରେ ଯୋଗଦାନ କରିଥିଲେ, ଦ୍ରୌପଦୀଙ୍କର ରୂପର ମହିମା ବ୍ୟାପି ଥିଲା । ପାଣ୍ଡବଙ୍କ ପରିଚୟ ସେଠାରେ କେହି ପାଉନଥିଲେ । ସେମାନେ ଏକ କୁମ୍ଭାର ଘରେ ଯାଇ ରହୁଥିଲେ । ରାଜା ଦ୍ରୁପଦ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରାଦିଙ୍କ ବସିବା ପାଇଁ ମର୍ଯ୍ୟାଦାନୁସାରେ ପୃଥକ୍ ପୃଥକ୍ ସ୍ଥାନ ରଖିଥିଲେ । ଦୁର୍ଯ୍ୟୋଧନ, କର୍ଣ୍ଣ, ଶ୍ରୀକୃଷ୍ଣ, ବଳରାମ ସମସ୍ତେ ସେହି ସ୍ୱୟଂବରରେ ମଧ୍ୟ ଯୋଗଦାନ କରିଥିଲେ । ଏମାନେ ତ ରାଜାମାନଙ୍କ ମଞ୍ଚରେ ବସିଥିଲେ । ପାଣ୍ଡବ ଆସି ବ୍ରାହ୍ମଣଙ୍କ ପାଇଁ ଉଦ୍ଦିଷ୍ଟ ଆସନରେ ବସିଲେ । ଏମାନେ ନିଜ ନିଜ ମୁଣ୍ଡଉପରେ ଦାଢ଼ି ଓ ଜଟା ଝୁଲାଇ ଥିଲେ । ପାଞ୍ଚଜଣଯାକ ଏକାଠି ଗୋଟିଏ ସ୍ଥାନରେ ନ ବସି ବିଭିନ୍ନ ସ୍ଥାନରେ ବସିଥିଲେ । ଏଥିପାଇଁ କେହି ସେମାନଙ୍କୁ ଚିହ୍ନି ପାରି ନଥିଲେ । କାହାରି ସନ୍ଦେହ ହେଉଥିଲେ ସିନା ପରିଚୟ ପଚାରନ୍ତେ ? ସମସ୍ତଙ୍କର ଧାରଣା ତ ପାଣ୍ଡବ ମୃତ୍ୟୁ-ବରଣ କରିଛନ୍ତି । କିନ୍ତୁ ସର୍ବଜ୍ଞ ଶ୍ରୀକୃଷ୍ଣ ତାଙ୍କୁ ସେଠାରେ ଚିହ୍ନିନେଲେ । ସେ ଚୁପ୍‌କରି ନିଜ ଭାଇ ବଳରାମଙ୍କୁ କହିଲେ, 'ଭାଇ ! ଦେଖ ଏ ବ୍ରାହ୍ମଣଙ୍କ ମଧ୍ୟରେ ଆମ ପିଉସୀ ପୁଅ ଭାଇ ପାଞ୍ଚପାଣ୍ଡବ ଛଦ୍ମବେଶରେ କିପରି ବସିଛନ୍ତି । ସେମାନେ ଦୁଇ ଦୁଇ ମୁନିଙ୍କ ମଧ୍ୟରେ ବିଭିନ୍ନ ସ୍ଥାନରେ ଗମ୍ଭୀର ଭାବରେ ବସିଛନ୍ତି ।' ଭଗବାନଙ୍କ କହିବା ଅନୁସାରେ ବଳରାମ ପାଞ୍ଚ ପାଣ୍ଡବଙ୍କୁ ଚିହ୍ନିଲେ ।

ଭଗବାନଙ୍କୁ ତ ବିବାହ କରିବାର ବେଗ ସ୍ପର୍ଶ କରିଥିଲା, ଯେ କୌଣସି ସ୍ଥାନରେ ବିବାହ ହେଉଥିବା କଥା ସେ ଶୁଣୁଥିଲେ, ସେଠାକୁ ଧାଇଁ ଯାଉଥିଲେ । ସେ ଏଠାକୁ ମଧ୍ୟ ବିବାହ ଦେଖିବା ଉଦ୍ଦେଶ୍ୟରେ ଆସିଥିଲେ । ତାଙ୍କ ପକ୍ଷେ କ'ଣ ମାଛକୁ ଶରମାରି ବିଦ୍ଧ କରିବା କଷ୍ଟ ସାଧ୍ୟ ଥିଲା ? ତାହା ନୁହେଁ । ଯେତେବେଳେ କର୍ଣ୍ଣ, ଦୁର୍ଯ୍ୟୋଧନ, ଶାଲ୍ୱ, ଅଙ୍ଗ, ବଙ୍ଗ, କଳିଙ୍ଗ ତଥା ଅନ୍ୟାନ୍ୟ ଦେଶର ରାଜକୁମାରଗଣ ହାରିଗଲେ ଓ ଲକ୍ଷ୍ୟସ୍ଥଳକୁ ବିଦ୍ଧ କରି ପାରିଲେ ନାହିଁ, ସେତେବେଳେ ଭଗବାନ୍ ଯଦି ଚାହିଁଥାଆନ୍ତେ ତେବେ ଲକ୍ଷ୍ୟଭେଦ କରି ସଙ୍ଗେ ସଙ୍ଗେ ଦ୍ରୌପଦୀଙ୍କୁ ବିବାହ କରିପାରି ଥାଆନ୍ତେ । କିନ୍ତୁ ସେ ଚିନ୍ତା କଲେ, ମୋର ତ ତିନି ବିବାହ ହୋଇ ସାରିଛି. ଏହାଙ୍କୁ ପାଣ୍ଡବଙ୍କ ପାଇଁ ଛାଡ଼ି ଦେଉଛି । ଏହା ଚିନ୍ତାକରି ସେ ଉଠିଲେ ନାହିଁ । ଅର୍ଜୁନ ଉଠି ଲକ୍ଷ୍ୟଭେଦ କରି ଦେଲେ ଏବଂ ଦ୍ରୌପଦୀଙ୍କୁ ନେଇ ବନକୁ ଚାଲିଗଲେ । ସମସ୍ତେ କେବଳ ଦେଖି ଦେଖି ରହିଗଲେ ; ରାଜାମାନେ ଈର୍ଷାବଶତଃ ମହାରାଜ ଦ୍ରୁପଦଙ୍କ ଉପରେ ପ୍ରହାର କରିବାକୁ

ଚାହିଁଲେ, କିନ୍ତୁ ଭୀମ ଓ ଅର୍ଜୁନ ସେମାନଙ୍କୁ ହଟାଇ ଦେଲେ । ପାଞ୍ଚଭାଇ ଦ୍ରୌପଦୀଙ୍କୁ ନେଇ କୁମ୍ଭାର ଘରକୁ ଗଲେ ।

ଅନ୍ଧାର ହେବାରୁ ପଛେ ପଛେ ଅନ୍ୟ ଏକ ମାର୍ଗରେ ବଳରାମଙ୍କ ସହିତ ଭଗବାନ ଶ୍ରୀକୃଷ୍ଣ ଆସି ପାଣ୍ଡବଙ୍କ ବାସସ୍ଥଳ ସେହି କୁମ୍ଭାର ଘରେ ଆସି ପହଞ୍ଚିଲେ । ସିଏମାନେ ସେ ଦୁହେଁ ମଳିନ ବସ୍ତ୍ର ପିନ୍ଧି ଭୂମି ଉପରେ ବସିଥିବା ତାଙ୍କ ପିଉସୀ କୁନ୍ତୀଙ୍କ ପଦଛୁଇଁ ଧର୍ମରାଜ ଯୁଧିଷ୍ଠିରଙ୍କ ପଦ ଛୁଇଁଲେ । କୁନ୍ତୀ ହଠାତ୍ କେହି ଜଣେ ତାଙ୍କ ପଦ ଛୁଇଁବା ଦେଖି ଲାଜ କଲେ । ଏପର୍ଯ୍ୟନ୍ତ ସେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ନଥିଲେ । ଭଗବାନ୍ କହିଲେ —"ପିଉସୀ ମା ! ମୁଁ ବସୁଦେବଙ୍କର ସାନପୁଅ, ମୋର ନାମ କୃଷ୍ଣ ଏବଂ ଏ ହେଉଛନ୍ତି ମୋର ବଡ଼ ଭାଇ ବଳରାମ ।" ଏ ମଧ୍ୟରେ ବଳରାମ ମଧ୍ୟ ତାଙ୍କର ଓ ଯୁଧିଷ୍ଠିରଙ୍କର ପାଦ ଛୁଇଁ ସାରିଥିଲେ ।

କୃଷ୍ଣଙ୍କ ନାମ ଶୁଣିବା ମାତ୍ରେ କୁନ୍ତୀ ତାଙ୍କୁ ହୃଦୟରେ କୋଳାଗ୍ରତ କଲେ । ନିଜ ନେତ୍ରରୁ ଅଶ୍ରୁ ବିସର୍ଜନ କରି ତାଙ୍କ ପୀତ ବସ୍ତ୍ର ଭିଜାଇ ଦେଲେ । ସେ କିଛି କହିବାକୁ ଚାହୁଁଥିଲେ; କିନ୍ତୁ ବାଣୀ ସ୍ଫୁରିଲା ନାହିଁ, କମ୍ପା ଭାବବିହ୍ୱଳ ହୋଇ ସେ କିଛି କହିପାରିଲେ ନାହିଁ । ବଡ଼ କଷ୍ଟରେ କିଛି ସମୟ ପରେ କହିଲେ -- "ବାସୁଦେବ ! ଏ ବିପତ୍ତି କାଳରେ ମଧ୍ୟ ତୁମେ ଆମକୁ ଭୁଲି ନାହଁ । ତୁମେହିଁ ତ ଆମର ସାହାଯ୍ୟକାରୀ ।" ଏହାପରେ ଭୀମ ଓ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କଲେ ଓ ବଳରାମଙ୍କୁ ମଧ୍ୟ ଆଲିଙ୍ଗନ କଲେ । ନକୁଳ ଓ ସହଦେବ ଏ ଦୁହେଁ ଉଭୟଙ୍କର ପାଦ ଛୁଇଁଲେ ।

ଧର୍ମରାଜ ଯୁଧିଷ୍ଠିର ନେତ୍ରରେ ଅଶ୍ରୁଭରି କହିଲେ—"ବାସୁଦେବ ! ଆମ୍ଭେମାନେ ତ ଛଦ୍ମବେଶରେ ଥିଲୁ ; କିନ୍ତୁ ଆପଣ ଆମକୁ ଚିହ୍ନିଦେଲେ ।"

ଭଗବାନ କହିଲେ "ଅଗ୍ନିକୁ ଲୁଚାଇଲେ, ସେ କେବେ ଲୁଚି ରହେ ? ଏ ଧରାବକ୍ଷରେ ପାଣ୍ଡବଙ୍କ ବ୍ୟତୀତ ଅନ୍ୟ କିଏ ଏମିତି ପରାକ୍ରମୀ ହୋଇପାରେ ? ଆପଣମାନେ ଆଦୌ ଚିନ୍ତିତ ହେବେ ନାହିଁ, ଆପଣଙ୍କର ପୁନଃ ଅଭ୍ୟୁଦୟ ହେବ । ପୁନଶ୍ଚ ଶୁଭଦିନ ଆସିବ ।"

ଧର୍ମରାଜ କହିଲେ—"ବାସୁଦେବ ! ଆପଣଙ୍କ କୃପାଦୃଷ୍ଟି ପ୍ରତ୍ୟେକ ଦିନ ତ ଆମ୍ଭମାନଙ୍କ ପାଇଁ ଶୁଭଦାୟକ ।"

ଭଗବାନ କହିଲେ "ଆଚ୍ଛା ଆମ୍ଭମାନଙ୍କୁ ବିଦାୟ ଦିଅନ୍ତୁ ଓ ଆପଣମାନେ ଏବେ ଛଦ୍ମବେଶରେ ହିଁ ରହନ୍ତୁ ।"

ଏହା କହି ଭଗବାନ୍ ବଳରାମଙ୍କ ସହିତ ନିଜ ଡେରାକୁ ଚାଲିଗଲେ । ପାଣ୍ଡବଙ୍କର ପରିଚୟ ପାଇ ଦ୍ରୁପଦ ଆନନ୍ଦିତ ହେଲେ । ବ୍ୟାସଦେବଙ୍କ କହିବା ଅନୁସାରେ ସେ

ପାଣ୍ଡବଙ୍କ ସହିତ ଦ୍ରୌପଦୀଙ୍କର ବିଧିବତ୍ ବିବାହ କରିଥିଲେ । ମହାରାଜ ଦ୍ରୁପଦଙ୍କ ସହିତ ସମ୍ବନ୍ଧ ହୋଇଯିବାରୁ ଓ ପାଣ୍ଡବଙ୍କର ବୈଭବ ବଢ଼ିଯିବାରୁ କୌରବ ଡରିଗଲେ । ଧୃତରାଷ୍ଟ୍ର ପାଣ୍ଡବଙ୍କୁ ସତ୍କାର ପୂର୍ବକ ଡକାଇଲେ ଓ ଅଧା ରାଜ୍ୟ ଦେଇଦେଲେ । ପାଣ୍ଡବ ଇନ୍ଦ୍ରପ୍ରସ୍ଥରେ ନିଜର ରାଜଧାନୀ ନିର୍ମାଣ କରାଇ ରହିବାକୁ ଲାଗିଲେ ।

କେବଳ କଥାରେ ପାଣ୍ଡବଙ୍କୁ ଅଧାରାଜ୍ୟ ଦେଲେ ସିନା, ବାସ୍ତବରେ ତାଙ୍କ ପାଖରେ କିଛି ବି ନଥିଲା । ଇନ୍ଦ୍ରପ୍ରସ୍ଥ ଏକ ଘୋର ଅରଣ୍ୟ ଥିଲା । ଧର୍ମରାଜ ସେଠାରେ ଏକ କିଲ୍ଲା ନିର୍ମାଣ କରାଇଥିଲେ । ଏ ଖବର ପାଇବା ମାତ୍ରେ ପାଣ୍ଡବଙ୍କୁ ଦେଖିବା ପାଇଁ ଭଗବାନ ଦ୍ୱାରକାପୁରୀରୁ ଖୁବ୍ ଶୀଘ୍ର ଇନ୍ଦ୍ରପ୍ରସ୍ଥ ଆସିଥିଲେ । ଭଗବାନଙ୍କ ସହିତ ସାତ୍ୟକି ଆଦି ଅନ୍ୟାନ୍ୟ ଅନେକ ଯାଦବ ମଧ୍ୟ ଆସିଥିଲେ ।

ଭଗବାନଙ୍କୁ ଆସିବାର ଦେଖି ପାଣ୍ଡବଙ୍କର ଶରୀର ଆନନ୍ଦରେ ରୋମାଞ୍ଚିତ ହୋଇ ଉଠିଲା । ଯେପରି ଶବ ଦେହରେ ହଠାତ୍ ପ୍ରାଣ ସଞ୍ଚାର ହେଲେ ଶବ ଜୀଇଁଉଠି ଅତି ପ୍ରସନ୍ନ ହୁଏ, ସେହିପରି ସମସ୍ତଙ୍କ ମୁଖ ମଣ୍ଡଳରେ ପ୍ରସନ୍ନତା ଫୁଟି ଉଠିଲା । ପ୍ରଧାନ ପ୍ରାଣ ଶରୀରରେ ପ୍ରବେଶ କଲେ ପଞ୍ଚେନ୍ଦ୍ରିୟ ଯେପରି ସଚେଷ୍ଟ ହୋଇ ଉଠନ୍ତି, ସେହିପରି ସର୍ବେଶ୍ୱର ଶ୍ୟାମସୁନ୍ଦରଙ୍କୁ ଦର୍ଶନ କରି ପାଣ୍ଡବ ସମ୍ଭ୍ରମର ସହିତ ଉଠି ଠିଆହୋଇ ପଡ଼ିଲେ । ଧର୍ମରାଜ ଓ ଭୀମ ବୟୋଜ୍ୟେଷ୍ଠ ହୋଇଥିବାରୁ ଭଗବାନ୍ ତାଙ୍କ ପାଦ ଛୁଇଁଲେ, ଅର୍ଜ୍ଜୁନଙ୍କୁ ଆଲିଙ୍ଗନ କଲେ ଓ ନକୁଳ ଏବଂ ସହଦେବ ଭଗବାନଙ୍କୁ ପ୍ରଣାମ କଲେ । ସମସ୍ତେ ଭଗବାନଙ୍କୁ ଗାଢ଼ ଆଲିଙ୍ଗନ କଲେ । ଭଗବାନଙ୍କର ଅଙ୍ଗ ସଙ୍ଗ ଲଭି ପାଣ୍ଡବଙ୍କର ସମସ୍ତ ଅଶୁଭ ନଷ୍ଟ ହୋଇଗଲା । ମଦନମୋହନଙ୍କର ମନ୍ଦ ମନ୍ଦ ହାସପୂର୍ଣ୍ଣ ମଧୁର ମୁଖାରବିନ୍ଦକୁ ଗ୍ରହିଁ ତଥା ତାଙ୍କ ପ୍ରଣୟପୂର୍ଣ୍ଣ ଚାଉଁଣିକୁ ଦେଖି ପାଣ୍ଡବଙ୍କର ଆନନ୍ଦର ସୀମା ରହିଲା ନାହିଁ । ସଙ୍ଗେ ସଙ୍ଗେ ଘର ଭିତରକୁ ଖବର ପଠାଇଲେ । ଦ୍ରୌପଦୀ ଅଳ୍ପ ଦିନ ହେଲା ବିବାହ କରି ଆସିଥାଆନ୍ତି । ନବବଧୂ ଯେପରି ସଙ୍କୁଚିତ ହୁଅନ୍ତି, ଲଜ୍ଜା କରନ୍ତି ଓ ଓଢ଼ଣା ଟାଣି ଆସନ୍ତି, ଦ୍ରୌପଦୀ ମଧ୍ୟ ସେହିପରି ନମ୍ରତାର ସହିତ ଘର ଭିତରୁ ପଦାକୁ ଆସିଲେ । ସେ ଲଜ୍ଜାବଶତଃ ଧୀରେ ଧୀରେ ଆସି ସିଂହାସନରେ ବିରାଜମାନ କରିଥିବା ଶ୍ୟାମସୁନ୍ଦରଙ୍କ ଆଗକୁ ଯାଇ ତାଙ୍କୁ ସାଦର ପ୍ରଣାମ କଲେ । ଭଗବାନ ମଧ୍ୟ ମନ୍ଦ ମନ୍ଦ ହସି ତାଙ୍କୁ ସମ୍ମାନିତ କଲେ ।

ଧର୍ମରାଜ ସାତ୍ୟକି ଆଦି ସମସ୍ତ ଯାଦବଙ୍କୁ ଯଥା ସମ୍ମାନ ପ୍ରଦର୍ଶନ କଲେ । ପାଣ୍ଡବଙ୍କ ଦ୍ୱାରା ସତ୍କାର ପାଇ ସମସ୍ତେ ଯଥା ଯୋଗ୍ୟ ସୁନ୍ଦର ସୁନ୍ଦର ଆସନରେ ଭଗବାନଙ୍କ ଚତୁଃପାର୍ଶ୍ୱରେ ବସିଗଲେ । ହଠାତ୍ ଭଗବାନ୍ ନିଜ ଆସନରୁ ଉଠିପଡ଼ି ଠିଆ ହେଲେ ଓ କହିଲେ—"ପିଉସୀ ମା ଭିତରେ ନା ? ମୁଁ ତାଙ୍କୁ ପ୍ରଣାମ କରିବା ପାଇଁ ଭିତରକୁ ଯିବି ।"

ଧର୍ମରାଜ ଅତ୍ୟନ୍ତ ସ୍ନେହରେ କହିଲେ—"ଯଦୁନନ୍ଦନ ! ଏଥିରେ ପଚାରିବାର କ'ଣ ଅଛି ? ଏଇଟି ତ ଆପଣଙ୍କର ଘର, ଚାଲନ୍ତୁ ନା ଭିତରକୁ ।"

ଏହା କହି ଧର୍ମରାଜ ଆଗେ ଆଗେ ଚାଲିଲେ । ସମସ୍ତ ପାଣ୍ଡବଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଯାଦବେନ୍ଦ୍ର ତାଙ୍କ ପଛରେ ଚାଲିଲେ । ଅନ୍ତଃପୁରରେ ପହଞ୍ଚି ଭଗବାନ୍ ନିଜର ପିଉସୀ ମା କୁନ୍ତୀଙ୍କ ପାଦ ସ୍ପର୍ଶ କରି ତାଙ୍କୁ ପ୍ରଣାମ କଲେ । ଶ୍ୟାମ-ସୁନ୍ଦରଙ୍କର କଳାକଳା କୁଟିଳ ଅଳକାବଳୀ ସ୍ପର୍ଶରେ କୁନ୍ତୀଙ୍କର ଲୋମମୂଳ ଶିହରିତ ହୋଇ ଉଠିଲା । ତାଙ୍କ ନେତ୍ରରୁ ଝର ଝର ହୋଇ ଅଶ୍ରୁ ବହିବାକୁ ଲାଗିଲା । ସେ ଭଗବାନଙ୍କୁ ନିଜ ହୃଦୟରେ କରି ସମସ୍ତ ଆଲିଙ୍ଗନ କରି ରଖିଲେ । ତାହାପରେ ଅଶ୍ରୁ ପୋଛି କହିଲେ—"ଶ୍ୟାମସୁନ୍ଦର ! ଦ୍ୱାରକାରୁ ତୁମେ କେବେ ବାହାରିଥିଲ ? ସେଠାରେ ସମସ୍ତ କୁଶଳ ତ ? ମୋର ଭାଇ, ଅନ୍ୟ ସମସ୍ତ ଭାଇ, ତୁମ ବୋହୂମାନେ ଓ ଅନ୍ୟ ସମସ୍ତେ କୁଶଳ ତ ? ଆମର ସମସ୍ତ ବନ୍ଧୁ ପରିବାର ଓ କୁଳପରିବାରମାନେ କୁଶଳ ତ ?"

ଭଗବାନ କହିଲେ—"ହଁ ମା ! ଆପଣଙ୍କ ଆଶୀର୍ବାଦରୁ ସମସ୍ତ କୁଶଳ । ଆପଣଙ୍କ ସ୍ୱାସ୍ଥ୍ୟ ତ ଠିକ୍ ଅଛି ? ବୋହୂଙ୍କର ସ୍ୱାସ୍ଥ୍ୟ ତ ଠିକ୍ ଅଛି ? ବୋହୂ ଆପଣଙ୍କ କଥା ମାନୁଛନ୍ତି ନା ନାହିଁ ? ଅନ୍ୟ ସମସ୍ତ ପରିଜନ କୁଶଳ ତ ?"

ଭଗବାନଙ୍କର ଏହି କଥା ଶୁଣିବାମାତ୍ରେ କୁନ୍ତୀଙ୍କ ହୃଦୟ ଆନନ୍ଦରେ ଭରିଗଲା । ପ୍ରେମ ଓ ଶୋକର ଆକୁଳତା କାରଣରୁ ତାଙ୍କ କଣ୍ଠ ଅବରୁଦ୍ଧ ହୋଇଗଲା । ନେତ୍ରରୁ ଅବିରତ ସ୍ନେହାଶ୍ରୁ ବହିବାକୁ ଲାଗିଲା । କୌରବଙ୍କ ଯୋଗୁଁ ଏ ବୃଦ୍ଧାବସ୍ଥାରେ ପୁତ୍ରଙ୍କ ସହିତ ଯେଉଁ ଯେଉଁ କ୍ଲେଶ ପାଇଥିଲେ, ସେ ସମସ୍ତ ସ୍ମରଣ କରି କୁନ୍ତୀ କେଶୀସୂଦନ କ୍ଲେଶହାରୀ ଶ୍ରୀକୃଷ୍ଣଙ୍କ ଆଗରେ କରୁଣସ୍ୱରରେ ରୋଦନ କରି କହିବାକୁ ଲାଗିଲେ । ସେ କହିଲେ—"ହେ ବାସୁଦେବ ! କ୍ଲେଶ ତ ଆମର ବନ୍ଧୁ ଓ ସହୋଦର । ମୁଁ ଯେଉଁ-ଦିନଠାରୁ ମାତାଙ୍କ ଗର୍ଭରୁ ଉତ୍ପନ୍ନ ହୋଇଛି, ସେହିଦିନଠାରୁ କ୍ଲେଶ ମୋ ସହିତ ବି ଜନ୍ମ ଲଭିଛି । ଏ କ୍ଲେଶ ଏତେ ସ୍ନେହୀ ଯେ, ସେ କେବେହେଲେ ମୋ ସଙ୍ଗ ଛାଡ଼ୁନାହିଁ । ଜନ୍ମରୁ ମାତା ପିତାଙ୍କୁ ଛାଡ଼ି ମୋତେ ଅନ୍ୟତ୍ର ଯିବାକୁ ପଡ଼ିଲା । ସେଠାରେ ମଧ୍ୟ ନାନା ପ୍ରକାର କ୍ଲେଶ ଭୋଗ କଲି । ଯେତେବେଳେ ବିବାହ କରି ହସ୍ତିନାପୁର ଆସିଲି, ସେଠାରେ ମଧ୍ୟ କ୍ଲେଶ ମୋତେ ଛାଡ଼ି ଚାଲିପାରିଲା ନାହିଁ । ପତିଙ୍କ ସହିତ ଗନ୍ଧମାର୍ଦନ ପର୍ବତରେ ଯାଇ ରହିଲି, ସେଠାରେ ମଧ୍ୟ କ୍ଲେଶ ମୋ ସହିତ ବସା ବାନ୍ଧିଲା । ପତି ଦେବତା କ୍ଲେଶ ହସ୍ତରେ ମୋତେ ସମର୍ପଣ କରି ପରଲୋକ ପ୍ରସ୍ଥାନ କଲେ । ଏ ପିଲା-ମାନଙ୍କୁ ମଧ୍ୟ କ୍ଲେଶ ଛାଡ଼ି ପାରିଲା ନାହିଁ । ଦୟାଳୁ ମୁନିଗଣ ଆମ୍ଭମାନଙ୍କ ଉପରେ କୃପା କରି ଆମ୍ଭମାନଙ୍କୁ ହସ୍ତିନାପୁରରେ ଆଣି ଛାଡ଼ିଗଲେ । କୌରବଙ୍କ ଦ୍ୱାରା ଆମ୍ଭେମାନେ

କ୍ଳେଶ ଭୋଗିଲୁ, ତାହା ସ୍ମରଣ ହେବା ମାତ୍ରେ ଲୋମ ଟାଙ୍କୁରି ଉଠୁଛି । କିନ୍ତୁ ସେହି କ୍ଳେଶରେ ଭିତ୍ତି ଅମ୍ଭମାନଙ୍କ ଏକ ଅଂଶର ଆଲୋକ ଦେଖା ଯାଉଛି । ଆପଣ ମୋ ଭାଇ ଅକ୍ରୂରଙ୍କୁ ପଠାଇ ଅମ୍ଭମାନଙ୍କ କୁଶଳ ବୁଝିଥିଲେ । ସେହି ଦିନଠାରୁ ମୁଁ ବୁଝିଯାଇଥିଲି ଯେ, ମୋର କଷ୍ଟ ଶେଷ ହୋଇ ଆସିଲା । କ୍ଳେଶକୁ ମୁଁ ବାରମ୍ବାର ଧନ୍ୟବାଦ ଦେଉଛି, କାରଣ ତାହାର ଯୋଗୁଁ ହିଁ ଅମ୍ଭେମାନେ ସର୍ବଦା ତୁମ କଥା ଭାବୁଛୁ । ଏବେ ଆମ୍ଭମାନଙ୍କର କ୍ଳେଶ ସହିବାର ଅଭ୍ୟାସ ହୋଇ ଗଲାଣି । ତୁମେ ଏ ଚରାଚରର ବିଶ୍ୱର ସ୍ୱାମୀ । ସମସ୍ତ ଭୂତ ଓ ପ୍ରାଣୀଙ୍କର ବାସ୍ତବ ସୁହୃଦ୍, ସମସ୍ତଙ୍କର ଆତ୍ମା ଅଟ । ଏଥି ପାଇଁ ଲୋକେ ତୁମକୁ ପରମାତ୍ମା ବୋଲି କହନ୍ତି । ତୁମପାଇଁ କେହି ଆପଣାର ନୁହନ୍ତି କିମ୍ବା ପର ମଧ୍ୟ ନୁହନ୍ତି । ଯେଉଁ ବ୍ୟକ୍ତି ସର୍ବଦା ତୁମକୁ ସ୍ମରଣ କରେ, ତୁମେ ତା ହୃଦୟରେ ବିରାଜମାନ୍ ହୋଇ ତାହାର ଦୁଃଖ ଦୂର କରିଥାଅ । ହେ ଅପ୍ରମେୟାତ୍ମନ୍ ! ତୁମକୁ ମୁଁ ପ୍ରଣାମ କରୁଅଛି ।"

ଭଗବାନ୍ କହିଲେ—"ପିଉସୀ ମା ! ମୁଁ ଜାଣିପାରୁ ନାହିଁ, ଆପଣ କ'ଣ ଏଣୁ ତେଣୁ ମୋତେ କହୁଛନ୍ତି । ମୁଁ ଏବେ ଏତେ ଦୂରରୁ ତୁମ ନିକଟକୁ ଆସିଛି, ପ୍ରଥମେ ସ୍ନାନାଦି କରିବାକୁ ଦିଅନ୍ତୁ ।"

କୁନ୍ତୀ କହିଲେ—"ହଁ, ବାସୁଦେବ ! ତୁମେ ସମସ୍ତେ ଯାଇ ସ୍ନାନ କରିଆସ, ମୁଁ ହତଭାଗିନୀ ସେ କଥା କହିବାକୁ ଭୁଲି ଯାଇଛି । ତୁମେ ଆଗ ଯାଇ ସ୍ନାନ ସାରି ଆସ, ପ୍ରସାଦ ପାଇବ । ମୁଁ ମଧ୍ୟ ରନ୍ଧାଶାଳକୁ ଯାଉଛି ।"

ଏହା ପରେ ଭଗବାନ୍ ସ୍ନାନାଦି କରିବାକୁ ଚାଲିଗଲେ । ଏଣେ କୁନ୍ତୀ ଭଗବାନଙ୍କ ପାଇଁ ଭୋଗର ଆୟୋଜନ କଲେ । ଧର୍ମରାଜ ଯୁଧିଷ୍ଠିର ଭଲି ଶ୍ୟାମସୁନ୍ଦରଙ୍କ ସହିତ ଲାଗି ରହିଥିଲେ । ମନା କରୁଥିବା ସତ୍ତ୍ୱେ ସ୍ନେହବଶତଃ ଧର୍ମରାଜ ତାଙ୍କର ସମସ୍ତ କାର୍ଯ୍ୟ କରୁଥିଲେ । ଆମର ଆଜି ଯେତେବେଳେ କୌଣସି ସହାୟକ ନାହାନ୍ତି ଆମର କୌଣସି ସ୍ଥିତି ନାହିଁ. ସେତେବେଳେ ବିନା ଡାକରାରେ ସବୁ ପ୍ରକାର ସାହାଯ୍ୟ କରିବାପାଇଁ ଯାଦବମାନଙ୍କ ସହିତ ଯାଦବେନ୍ଦ୍ର ସ୍ୱୟଂ ଆସି ପହଞ୍ଚିଛନ୍ତି । ଏହି କଥାକୁ ଦୃଢ଼ କରି କରି ଧର୍ମରାଜଙ୍କର ହୃଦୟ ପ୍ରେମକାରଣରୁ ଉଚ୍ଛୁଳି ଉଠୁଥିଲା । ଶ୍ୟାମସୁନ୍ଦରଙ୍କର ତ୍ରୈଲୋକ୍ୟ ବିମୋହିନୀ ରୂପକୁ ଦେଖି ସେ ପ୍ରେମାଶ୍ରୁ ବୁହାଇ କହିଲେ "ହେ ଶ୍ୟାମସୁନ୍ଦର ! ହେ ସର୍ବେଶ୍ୱର ! ଏ ଜନ୍ମରେ ତ ଏପର୍ଯ୍ୟନ୍ତ ଅମ୍ଭେମାନେ କୌଣସି ପୁଣ୍ୟକର୍ମ ଏପର୍ଯ୍ୟନ୍ତ କରି ପାରିଲୁ ନାହିଁ । କିନ୍ତୁ ପୂର୍ବ ଜନ୍ମରେ ଅବଶ୍ୟ କିଛି ପୁଣ୍ୟକର୍ମ କରିଥିବାରୁ ସୁଖରେ ଘରେ ବସି ଅମ୍ଭେମାନେ ଆପଣଙ୍କ ଦର୍ଶନ ପାଇଲୁ । ବଡ଼ ବଡ଼ ଯୋଗେଶ୍ୱର ମଧ୍ୟ ହଜାର ହଜାର ଲକ୍ଷ ଲକ୍ଷ ବର୍ଷ ପର୍ଯ୍ୟନ୍ତ ଜପ, ତପ ଓ ଯଜ୍ଞାନୁଷ୍ଠାନ ଆଦି କରି ମଧ୍ୟ ନିକଟରେ ଆପଣଙ୍କ ଦର୍ଶନ ପାଇ ପାରୁ ନାହାନ୍ତି ।

ତେଣୁ ଏ କୁବୁଦ୍ଧିଗଣଙ୍କୁ ଆପଣ ନିଜର କରି ନେଇଛନ୍ତି । ଆମେ ଘରେ ବସି ଗଙ୍ଗାଙ୍କୁ ପାଖରେ ପାଇ ପାରୁଛୁ ।" ※ ଏହା କହୁ କହୁ ଧର୍ମରାଜଙ୍କ ନେତ୍ରରୁ ଶ୍ରାବଣଧାରା ପରି ଅଶ୍ରୁ ବହିବାକୁ ଲାଗିଲା ।

ଧର୍ମରାଜ ଏହିପରି ଭାବରେ ଭଗବାନଙ୍କ ପ୍ରତି ଅତ୍ୟଧିକ ପ୍ରେମ ପ୍ରଦର୍ଶନ କଲେ । ସେ ନେତ୍ରପିତୁଳା ଭଳି ଅତି ଆଦର ସହକାରେ ତାଙ୍କୁ ରଖିଲେ । ଭଗବାନ ଅନେକ ଦିନ ପର୍ଯ୍ୟନ୍ତ ଇନ୍ଦ୍ରପ୍ରସ୍ଥ ନିବାସୀଙ୍କ ନୟନକୁ ଆନନ୍ଦିତ ଓ ପବିତ୍ର କରି ବଡ଼ ସମ୍ମାନର ସହିତ ସେଠାରେ ଅବସ୍ଥାନ କଲେ । ଭଗବାନ ପୁନଶ୍ଚ କହିଲେ—"ହେ ଧର୍ମରାଜ ! ଆପଣଙ୍କର ଯଦି ଆଜ୍ଞା ହୁଏ, ତାହାହେଲେ ମୁଁ ଏବେ ଦ୍ୱାରକାପୁରୀ ପ୍ରତ୍ୟାବର୍ତ୍ତନ କରିବି ।"

ଛଳ ଛଳ ନେତ୍ରରେ ଧର୍ମରାଜ କହିଲେ—"ହେ ବାସୁଦେବ ! ଆପଣ ହିଁ ଆମ୍ଭମାନଙ୍କର ଏକମାତ୍ର ସହାୟକ, ଆପଣ ଆମ୍ଭମାନଙ୍କର ପ୍ରାଣ । ମୋର ଇଚ୍ଛା, ବର୍ଷା ଚାରିମାସ ଆପଣ ଏଠାରେ ଅବସ୍ଥାନ କରନ୍ତୁ । ଆମର ତ ଏ ସ୍ଥାନରେ ଏପର୍ଯ୍ୟନ୍ତ କୌଣସି ସ୍ଥିତି ନାହିଁ ।"

ଭଗବାନ କହିଲେ—"ମହାରାଜ ! ମୋ ଦ୍ୱାରା ଯଦି ଆପଣଙ୍କର କିଛି ସେବା ହୋଇପାରେ, ତାହାହେଲେ ମୁଁ ତାହାକୁ ମୋର ସୌଭାଗ୍ୟ ବୋଲି ମନେ କରିବି । ମୋ ପାଇଁ ଦ୍ୱାରକା ଯେପରି, ଇନ୍ଦ୍ରପ୍ରସ୍ଥ ମଧ୍ୟ ସେହିପରି । ଏଠାରେ ମୋତେ ତ ଆପଣଙ୍କର ପ୍ରେମ ଓ ଅର୍ଜୁନଙ୍କର ବନ୍ଧୁତ୍ୱ ଏ ଦୁଇଟି ଅପୂର୍ବ ବସ୍ତୁ ମିଳିଛି, ଆପଣ ଯେତେବେଳେ ଆଜ୍ଞା କରୁଛନ୍ତି, ମୁଁ ତାହା ଅବଶ୍ୟ ପାଳନ କରିବି ।"

ଏହା କହି ଭଗବାନ କେତେକ ଯାଦବଙ୍କୁ ଦ୍ୱାରକା ପଠାଇ ଦେଇ ବର୍ଷା ଚାରିମାସ ସାତ୍ୟକି ଆଦିଙ୍କ ସହିତ ଇନ୍ଦ୍ରପ୍ରସ୍ଥରେ ରହିଗଲେ । ଏହି ଚାରି ମାସରେ ଭଗବାନ ପାଣ୍ଡବଙ୍କର ରାଜଧାନୀକୁ ସର୍ବଶ୍ରେଷ୍ଠ ରାଜଧାନୀ ରୂପେ ଗଢ଼ିଦେଲେ । ତାଙ୍କର ରାଜଧାନୀ ନିକଟରେ ଖାଣ୍ଡବପ୍ରସ୍ଥ ନାମକ ଏକ ବିରାଟ ଅରଣ୍ୟ ଥିଲା । ସେଥିରେ ବଡ଼ ବଡ଼ ସର୍ପ, ଦାନବ ଓ ଅନ୍ୟାନ୍ୟ ବନ୍ୟଜନ୍ତୁ ରହୁଥିଲେ । ଦିନେ ଅଗ୍ନିଦେବ ବ୍ରାହ୍ମଣ ବେଶରେ ଆସି ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କୁ ସେହି ବନ ଜାଳିଦେବା ପାଇଁ ପ୍ରାର୍ଥନା କଲେ । ଭଗବାନ ତାହା ଜାଳିଦେବା ପାଇଁ ଆଜ୍ଞା ଦେଇ ଦେଲେ । ସମଗ୍ର ଅରଣ୍ୟ ଜଳିବାକୁ ଲାଗିଲା ।

※ ଧର୍ମ ନନ୍ଦନ କୃଷ୍ଣ ଚାହିଁ । ବୋଲନ୍ତି ପିଣ୍ଡୁଭାବ ବହି ॥
ଅନେକ ଅଛି ପୁଣ୍ୟବଳ । ତୋତେ ଭେଟିଲୁ ଅବମୂଳ ॥
ହେ ନାଥ ମହିମା ତୋହର । ଯୋଗେଶ୍ୱରଙ୍କ ଅଗୋଚର ॥
ଆମ୍ଭେ କଳ୍ପିତ ବୁଦ୍ଧିହୀନ । ପାଇଲୁ ତବ ଦରଶନ ॥

( ଭାଗବତ : ଜଗନ୍ନାଥ ଦାସ : ସ୍କ ୧୦, ଅ ୬୨ )

ଏଥିପାଇଁ ଇନ୍ଦ୍ର ଲଢ଼ିବାକୁ ଆସିଲେ । ଭଗବାନଙ୍କ ସହାୟତାରେ ଅର୍ଜୁନ ତାଙ୍କୁ ପରାସ୍ତ କରିଦେଲେ । ଧୂମ୍ରକେତୁ ଅଗ୍ନିଦେବ ସମସ୍ତ ଅରଣ୍ୟକୁ ଜଳାଇ ସନ୍ତୁଷ୍ଟ ହେଲେ । ସେ ଅର୍ଜୁନଙ୍କ ଉପରେ ପ୍ରସନ୍ନ ହୋଇ ଗାଣ୍ଡିବଧନୁ, ଚାରିଟି ଶ୍ୱେତବର୍ଣ୍ଣର ଅଶ୍ୱ, ସୁବର୍ଣ୍ଣ ମଣ୍ଡିତ ଏକ ଦିବ୍ୟରଥ, ଦୁଇଟି ଅକ୍ଷୟ ତୂଣୀର ଓ ଶସ୍ତ୍ରଧାରୀଙ୍କୁ କୌଣସି ଅସ୍ତ୍ର ଶସ୍ତ୍ର ବିଦ୍ଧ ନ କରିବା ପାଇଁ ଏକ କବଚ ଆଦି ଦିବ୍ୟବସ୍ତୁ ପ୍ରଦାନ କଲେ ।

ଯେଉଁ ସମୟରେ ଖାଣ୍ଡବ ବନ ଦହନ ହେଉଥିଲା, ସେହି ସମୟରେ ଭଗବାନଙ୍କ କହିବା ଅନୁସାରେ ଅର୍ଜୁନ 'ମୟ' ନାମକ ଦାନବକୁ ରକ୍ଷା କରିଥିଲେ । ସେହି ମୟ ଦାନବ ଅସୁରଙ୍କର ଶିଳ୍ପୀ ଥିଲା । ସେ ଅର୍ଜୁନଙ୍କୁ ପ୍ରାର୍ଥନା କଲା—''ଆପଣ ମୋର ପ୍ରାଣରକ୍ଷା କଲେ । ସେଥିଯୋଗୁଁ ଆପଣ ଆଜ୍ଞା ଦିଅନ୍ତୁ ମୁଁ ଆପଣଙ୍କର କ'ଣ ସେବା କରିବି ?''

ଅର୍ଜୁନ କହିଲେ—''ମୁଁ ତ ତୁମଠାରୁ କୌଣସି ସେବା ଚାହୁଁନାହିଁ, ଯଦି ତୁମେ ବହୁତ ଆଗ୍ରହ ପ୍ରକାଶ କରୁଛ, ତାହାହେଲେ ଭଗବାନଙ୍କ ନିକଟକୁ ଯାଇ ତାଙ୍କର କିଛି ପ୍ରିୟକାର୍ଯ୍ୟ କର ।''

ମୟଦାନବ ଭଗବାନଙ୍କ ନିକଟକୁ ଗଲା ଓ ତାଙ୍କୁ ମଧ୍ୟ ଏହି ପ୍ରାର୍ଥନା କଲା । ଭଗବାନ୍ ହସି ହସି ତାକୁ କହିଲେ—''ମୋର ସବୁଠାରୁ ଅତ୍ୟନ୍ତ ପ୍ରିୟକାର୍ଯ୍ୟ ଏହି ଯେ, ମୁଁ ଧର୍ମରାଜଙ୍କୁ ଅତ୍ୟନ୍ତ ସମୃଦ୍ଧିଶାଳୀ ଓ ପ୍ରସନ୍ନ ହେବାର ଦେଖିବାକୁ ଚାହୁଁଛି । ତାଙ୍କର ଏଠାରେ କୌଣସି ସୁନ୍ଦର ରାଜସଭା ନିର୍ମିତ ହୋଇ ନାହିଁ । ତେଣୁ ତାଙ୍କ ପାଇଁ ତୁମେ ଯେତେ ସୁନ୍ଦର ହୋଇ ନିର୍ମିତ ହୋଇପାରେ, ସେତେ ସୁନ୍ଦର ଏକ ସଭାଗୃହ ନିର୍ମାଣ କରିଦିଅ ।''

ଭଗବାନଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଶୁଭ ମୁହୂର୍ତ୍ତରେ ମୟାସୁର ସଭା ଭବନର ନିଅଁ ପକାଇଲା । ଦୂର ଦୂରାନ୍ତରରୁ ମଣି ମାଣିକ୍ୟ ଆଣାଇ ସେହି ଗୃହରେ ତାହା ଲଗାଇଲା । ସେହି ସମ୍ପୂର୍ଣ୍ଣ ସଭାଗୃହ ଦଶହଜାର ହାତ ଆକାରରେ ନିର୍ମିତ ହେଲା । ଏହା ଏପରି ଗୃହ ହେଲା ଯେ ତାହା ସମ୍ମୁଖରେ ଇନ୍ଦ୍ର, ବରୁଣ, କୁବେର, ଯମ, ଚନ୍ଦ୍ର ଓ ବ୍ରହ୍ମାଙ୍କର ସଭାଗୃହଗୁଡ଼ିକ ମଧ୍ୟ ଫିକା ପଡ଼ିଯିବ । ଏପରିକି ଶ୍ରୀକୃଷ୍ଣଙ୍କର ସୁଧର୍ମା ସଭାଗୃହ ଅପେକ୍ଷା ଏହା ମଧ୍ୟ ସୁନ୍ଦର ଥିଲା । ତାହା ଏତେ ଉଚ୍ଚା ଥିଲା, ସତେ ଯେପରି ତାହା ଆକାଶ ସହିତ କଥା କହୁଛି । ଆଠ ହଜାର ଦାନବ ତାହାର ରକ୍ଷାକାରୀ ରୂପେ ନିଯୁକ୍ତ ହୋଇଥିଲେ ଓ ତାକୁ ଯେଉଁଠାକୁ ଇଚ୍ଛା ସେଠାକୁ ନେଇ ଯାଇ ପାରୁଥିଲେ । ତହିଁରେ ନଳିନୀ କମଳର ଏକ ସରୋବର ନିର୍ମିତ ହୋଇଥିଲା । ତାହାର ସୋପାନ ସ୍ଫଟିକ ମଣିର ଥିଲା । ଏପରି ଗୋଟିଏ ସ୍ଥାନ ନୀଳମଣିରେ ନିର୍ମିତ ହୋଇଥିଲା ଯେ, ସେଠାରେ ଜଳ ନ ଥାଇ ମଧ୍ୟ ଜଳର ଭ୍ରମ ହେଉଥିଲା । ସେହିପରି ଅନ୍ୟ

ଏକ ସ୍ଥାନ ଥିଲା, ଯେଉଁଠାରେ କି ଜଳପୂର୍ଣ୍ଣ ମାଝାରେ ଥିଲା; କିନ୍ତୁ ତାହା ସମତଳ ଭୂମିପରି ଦେଖା ଯାଉଥିଲା । ସେହି ସ୍ଥାନରେ ଦୁର୍ଯ୍ୟୋଧନଙ୍କୁ ଜଳରେ ସ୍ଥଳ ଓ ସ୍ଥଳରେ ଜଳ ଭ୍ରମ ହୋଇଥିବାରୁ ସେ ଜଳରେ ପଡ଼ି ବୁଡ଼ି ଯାଇଥିଲେ । ସେହି ସଭାଗୃହକୁ ଦେଖି ସମସ୍ତେ ଚକିତ ହେଉଥିଲେ । ଖାଣ୍ଡବପ୍ରସ୍ଥର ସମ୍ପୂର୍ଣ୍ଣ ସଘନ ବନ ଜଳି ଯାଇ ସେଠାରେ ଏପରି ସୁନ୍ଦର ସ୍ଥାନ ନିର୍ମିତ ହୋଇ ପାରିଥିଲା । ସେହି ବନ ମଧ୍ୟରେ ଖେତ ମାନ ହେଲା । ଧର୍ମରାଜଙ୍କ ରାଜଧାନୀ ଭଗବାନଙ୍କ ରହିବା ଯୋଗୁଁ ପରମ ସମୃଦ୍ଧିଶାଳୀ ହୋଇଗଲା ।

ଭଗବାନଙ୍କର ଅର୍ଜୁନଙ୍କ ସହିତ ପରମ ମୈତ୍ରୀ ଥିଲା । ଉଭୟେ ସାଙ୍ଗ ହୋଇ ଖାଉଥିଲେ, ସାଙ୍ଗ ହୋଇ ରହୁଥିଲେ ଓ ସାଙ୍ଗ ହୋଇ ଭ୍ରମଣ କରୁଥିଲେ । ଏପରି ବୋଧ ହେଉଥିଲା, ସତେ ଯେପରି ଏକ ପ୍ରାଣ ଦୁଇ ଶରୀର ଏକ ସଙ୍ଗେ ସଞ୍ଚାରିତ ହେଉଅଛି । ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଅତ୍ୟଧିକ ଭଲ ପାଉଥିଲେ ଓ ଅର୍ଜୁନ ମଧ୍ୟ ଶ୍ୟାମସୁନ୍ଦରଙ୍କୁ ନିଜର ସର୍ବସ୍ୱ ସମର୍ପଣ କରି ଦେଇଥିଲେ । ଉଭୟେ ପରସ୍ପର ମଧ୍ୟରେ ହସଖୁସି ହେଉଥିଲେ, ଖେଳୁଥିଲେ ଓ ଯମୁନା ତଟକୁ ଯାଇ ବହୁ ସମୟ କଟାଉଥିଲେ ।

ଦିନକର ଘଟଣା, ଭଗବାନ୍ ତାଙ୍କୁ କହିଲେ—"ଅର୍ଜୁନ ! ଚାଲ, ଆଜି ଦୂର ଯମୁନା ତଟକୁ ଶିକାର କରିବାକୁ ଯିବା ।"

ଅର୍ଜୁନ ତ ଏହା ସର୍ବଦା ଇଚ୍ଛା କରୁଥିଲେ, ଶ୍ରୀକୃଷ୍ଣଙ୍କ ସହିତ ଏକାନ୍ତରେ ବସି ପ୍ରେମପୂର୍ଣ୍ଣ ମଧୁର ମଧୁର କଥାମାନ କହୁଥିଲେ । ଭଗବାନଙ୍କ ଆଜ୍ଞା ହେବାମାତ୍ରେ ସେ ଶୀଘ୍ର ସାରଥୀକୁ ନିଜର ବିଶାଳ ବାନରଧ୍ୱଜ ବିଶିଷ୍ଟ ରଥକୁ ଆଣିବାପାଇଁ ଆଦେଶ ଅର୍ଜୁନଙ୍କର ହେବା କ୍ଷଣି ସାରଥୀ ଅଗ୍ନିଙ୍କ ପ୍ରଦତ୍ତ ସୁବର୍ଣ୍ଣ ମଣ୍ଡିତ ଦିବ୍ୟ ରଥ ସଜାଇ ତାଙ୍କ ଆଦେଶ ସମ୍ମୁଖରେ ଆଣି ରଖିଲେ । ଏହାପରେ ଶତ୍ରୁ ଦମନକାରୀ ବୀରବର ଅର୍ଜୁନ ଦିବ୍ୟ କବଚ ଧାରଣ କରି ନିଜର ଗାଣ୍ଡିବଧନୁ ଓ ଅକ୍ଷୟବାଣପୂର୍ଣ୍ଣ ଦୁଇ ତୂଣୀରକୁ ଧରି ହସି ହସି ଭଗବାନଙ୍କ ସହିତ ରଥରେ ଆସି ବସିଲେ । ଆହୁରି ଅନେକ ସେବକ ସୈନିକ ମଧ୍ୟ ତାଙ୍କ ସଙ୍ଗରେ ଗଲେ । ସମସ୍ତଙ୍କୁ ସଙ୍ଗରେ ନେଇ ଭଗବାନ୍ ଅଳ୍ପ ସମୟ ମଧ୍ୟରେ ଯମୁନା ତଟବର୍ତ୍ତୀ ଅରଣ୍ୟରେ ଯେଉଁଥିରେ କି ବହୁତ ସିଂହ ବ୍ୟାଘ୍ରାଦି ରହୁଥିଲେ, ସେହି ଘୋର ଅରଣ୍ୟରେ ଯାଇ ପହଞ୍ଚିଲେ । ସେଠାରେ ସେ ବହୁ ବ୍ୟାଘ୍ର, ଶୂକର, ଗବୟଳ, କୃଷ୍ଣମୃଗ, ଶରଭ, ଗଣ୍ଡା, ହରିଣ, ଶଶକ, ଆଦି ଅନେକ ପ୍ରାଣୀଙ୍କୁ ଶରବିଦ୍ଧ କରି ବଧ କଲେ । ସେମାନଙ୍କ ମଧ୍ୟରୁ ପବିତ୍ର ମାଂସ ବିଶିଷ୍ଟ ପଶୁମାନଙ୍କୁ ସେବକଗଣ ଆଣି ଶ୍ରାଦ୍ଧ ପାଇଁ ଧର୍ମରାଜ ଯୁଧିଷ୍ଠିରଙ୍କୁ ଦେଲେ ।

ଶିକାରରେ ଅତ୍ୟନ୍ତ ପରିଶ୍ରମ କରି କରି ଅର୍ଜୁନ ଥକି ପଡ଼ିଲେ । ତାଙ୍କୁ ଶୋଷ ମଧ୍ୟ ହେଉଥିଲା । ସେଥିପାଇଁ ସେ ଭଗବାନଙ୍କ ସହିତ ଯମୁନା ତଟକୁ ଆସିଲେ । ଅନ୍ୟ

ସମସ୍ତ ସେବକ ସୈନ୍ୟ ଅନ୍ୟ ଏକ ସ୍ଥାନରେ ବସି ବିଶ୍ରାମ କରିବାକୁ ଲାଗିଲେ । ଯମୁନା ତଟକୁ ଆସି ଏ ଦୁହେଁ ହାତ ଗୋଡ଼ ଧୋଇ ନିର୍ମଳ କାଚ ସଦୃଶ ସୁନ୍ଦର ସ୍ୱଚ୍ଛ କାଳନ୍ଦୀର ଜଳ ଉଭୟେ ପାନ କଲେ ଓ ଗୋଟିଏ ଗହଳପତ୍ର ବିଶିଷ୍ଟ ବୃକ୍ଷ ମୂଳରେ ବସି ପ୍ରେମାଳାପ କରିବାରେ ଲାଗିଲେ । ସେହି ସମୟରେ ଦୁହେଁ ଦେଖିଲେ – ଗୋଟିଏ ଅତି ସୁନ୍ଦରୀ ଯୁବତୀ ଯମୁନା ତଟରେ ଏକା ହୋଇ ବୁଲୁଛି । ଶ୍ୟାମ ସୁନ୍ଦରଙ୍କ ଦୃଷ୍ଟି ତ ସଦା ଚଞ୍ଚଳ, ତାକୁ ଦେଖିବାମାତ୍ରେ ସେ ବୁଝିଗଲେ ଯେ ଏହାକୁ କେହି ତାଡ଼ନା କରୁଛି । ତେଣୁ ସେ ଗମ୍ଭୀର ହୋଇ ଅର୍ଜ୍ଜୁନଙ୍କୁ କହିଲେ— "ଭାଇ ! ଏ ଝିଅଟି ଏପଟ ସେପଟ ହୋଇ କାହିଁକି ଘୂରୁଛି ? ସେ କିଏ ? ଏ ଅରଣ୍ୟ ମଧ୍ୟରେ ଏକୁଟିଆ କାହିଁକି ବୁଲୁଛି ? ଟିକିଏ ତୁମେ ଯାଇ ଦେଖିଆସ ତ । ତାକୁ ଯାଇ ପଚାର ସେ କିଏ ?"

ଅର୍ଜ୍ଜୁନ ତ ଭଗବାନଙ୍କ ମନକଥା ଜାଣିଯାଇଥିଲେ, ସେ ହସି ହସି କହିଲେ— "ସେ ଯେ କେହି ହୋଇଥାଉ ନା କାହିଁକି, ଆମର ତା'ଠାରେ କି ପ୍ରୟୋଜନ ? ସେ ତ ତାର ଆନନ୍ଦରେ ମଗ୍ନ ହୋଇ ବୁଲୁଛି ?"

ଭଗବାନ କହିଲେ— "ନା ଭାଇ ! ନିଜ ଶରୀରରେ ଯାହାର ହେଉ ନା କାହିଁକି, ଯଦି କିଛି ଉପକାର କରିହୋଇ ପାରେ, ତାହାହେଲେ ଖୁବ୍ ଉତ୍ତମ । ପ୍ରତୀତ ହେଉଛି, ସେ ଝିଅଟି କିଛି ଆବଶ୍ୟକ କରୁଛି । ତେଣୁ ସେ ଏପାଖ ସେପାଖ ହୋଇ ବୁଲୁଛି ।"

ଅର୍ଜ୍ଜୁନ ନିଜର ମିତ୍ରଙ୍କୁ ଚାହିଁରହି କହିଲେ -"ଅଚ୍ଛା, ଠିକ୍ ଅଛି ମହାରାଜ ! ମୁଁ ଯାଉଛି, ଆପଣ ଏଇଠାରେ ବସିଥାଆନ୍ତୁ ।" ଏହା କହି ଅର୍ଜ୍ଜୁନ ସେହି କନ୍ୟା ନିକଟରେ ଯାଇ ପହଞ୍ଚିଲେ । ସେ ଅତ୍ୟନ୍ତ ସୁନ୍ଦରୀ ଥିଲା । ତାହାର ଅଙ୍ଗପ୍ରତ୍ୟଙ୍ଗରୁ ଯୌବନର ଆଭା ଝଲସି ଉଠୁଥିଲା । ତାହାର ଦନ୍ତପଙ୍କ୍ତି ଅତ୍ୟନ୍ତ ସୁନ୍ଦର ଓ ସ୍ୱଚ୍ଛ ଥିଲା । ତାହାର ମୁଖ ପୂର୍ଣ୍ଣଚନ୍ଦ୍ର ସଦୃଶ ବିକଶିତ ହେଉଥିଲା । ସେ ବରବର୍ଣ୍ଣିନୀ ପରମ ସୁକୁମାରୀ ଓ ସୁଶୀଳା ଥିଲା । ଅର୍ଜ୍ଜୁନ ତା ନିକଟକୁ ଯାଇ ତାକୁ ପଚାରିଲେ—"ହେ ସୁଶ୍ରୋଣି ! ତୁମେ କିଏ ?"

ଲାଜ ଲାଜ ହୋଇ ସେହି ରମଣୀଟି କହିଲା —"ହେ ବୀର ! ମୁଁ ଭଗବାନ ଭୁବନଭାସ୍କର ଶ୍ରୀ ସୂର୍ଯ୍ୟଦେବଙ୍କ କନ୍ୟା ଅଟେ ।"

ଅର୍ଜ୍ଜୁନ ପଚାରିଲେ—"ଆପଣ ବିବାହିତା ନା ଅବିବାହିତା ?"

ସେହି ସୁକୁମାରୀ ଅତ୍ୟନ୍ତ ଲାଜ ଲାଜ ହୋଇ ଏ କଥା ଶୁଣି ମୁଣ୍ଡ ହଲାଇଲେ । ମୁହଁରେ କିଛି କହିଲେ ନାହିଁ । ସେ ନିଜ ନଖରେ ଭୂମିକୁ ଖୋଳି ନତମସ୍ତକ ହୋଇ ଠିଆ ହୋଇ ରହିଲେ ।

କଥାର ଟିକିଏ ମୋଡ଼ ଦେଇ ଅର୍ଜୁନ ପଚାରିଲେ—"ଆଚ୍ଛା, ଏ କନ୍ୟାଟିଏ ବନ ମଧ୍ୟରେ ଆପଣ କାହିଁକି ଏପରି ବୁଲୁଛନ୍ତି ? ଏଠାରେ ଆପଣଙ୍କର ଏପରି ବୁଲିବା କି ଆବଶ୍ୟକ ?"

କନ୍ୟାଟି କହିଲା—"ମୋର ପିତା ଏହି ଯମୁନା ଜଳ ମଧ୍ୟରେ ମୋ ପାଇଁ ଗୋଟିଏ ଭବନ ନିର୍ମାଣ କରାଇଛନ୍ତି । ସେଥିରେ ରହି ମୁଁ ତପସ୍ୟା କରୁଛି । ଏହି ଯେଉଁ ଯମୁନାର ଜଳ ଦେଖା ଯାଉଛି, ଏହା ମଧ୍ୟ ମୋର ରୂପ । ମୁଁ ଏହି ଯମୁନାର ଅଧିଷ୍ଠାତ୍ରୀ ଦେବୀ । ମୋର ପିତା ନିର୍ମାଣ କରିଥିବା ଭବନରେ ମୁଁ ରହି ସହସ୍ର ବର୍ଷ ହେଲା ଘୋର ତପସ୍ୟା କରୁଛି ।"

ଅର୍ଜୁନ କହିଲେ—"ମୁଁ ଏହା ପଚାରି ପାରେ କି ଆପଣଙ୍କ ତପସ୍ୟା କରିବାର ଉଦ୍ଦେଶ୍ୟ କ'ଣ ? କେଉଁଥିପାଇଁ ଆପଣ ଏତେ ବର୍ଷ ହେଲା ଏହି ଯମୁନା ଜଳ ଭିତରେ ରହି ତପସ୍ୟା କରୁ ଅଛନ୍ତି ?"

କନ୍ୟା କହିଲେ—"ମୁଁ ବଡ଼ ହୋଇ ଯିବାରୁ ମୋର ପିତା ସୂର୍ଯ୍ୟଦେବ ମୋତେ ବିବାହ ଦେବାପାଇଁ ଚାହିଁଲେ । ମୁଁ ଲଜ୍ଜାଗୁଡ଼ି ତାଙ୍କୁ କହିଦେଲି, 'ପିତା ! ମୁଁ ତ ଲକ୍ଷ୍ମୀଙ୍କର ଆଶ୍ରୟ ସ୍ଥଳ ଶ୍ରୀମନ୍ନାରାୟଣଙ୍କ ବ୍ୟତୀତ ଅନ୍ୟ କାହାରିକୁ ନିଜର ପତିରୂପେ ବରଣ କରି ପାରିବି ନାହିଁ । ମୋର ପତି ସେହି ବିଷ୍ଣୁ ହିଁ ହେବେ ।"

ମୋର ପିତା କହିଲେ—"ମା ! ଭଗବାନଙ୍କୁ ପାଇବା ତ ଅତ୍ୟନ୍ତ କଠିନ, ତୁ ଘୋର ତପସ୍ୟା କର, ସେହି ଭକ୍ତବତ୍ସଳ ଭଗବାନ ତୋ ଉପରେ ନିଶ୍ଚୟ କୃପା କରିବେ ।" ପିତାଙ୍କର ଆଜ୍ଞା ପାଳନ କରି ମୁଁ ସେହି ଦିନଠାରୁ ଅଚ୍ୟୁତଙ୍କୁ ପାଇବା ପାଇଁ ଘୋର ତପସ୍ୟା କରୁଅଛି । ଯେ ପର୍ଯ୍ୟନ୍ତ ମୋତେ ସେ ନ ମିଳିଛନ୍ତି ସେ ପର୍ଯ୍ୟନ୍ତ ଏହି ଯମୁନାଜଳ ମଧ୍ୟରେ ରହି ମୁଁ ତପସ୍ୟା କରୁଥିବି । ସେହି ଶରଣାଗତବତ୍ସଳ ଦୀନବନ୍ଧୁ ଦୀନନାଥ ପ୍ରଭୁ ମୋ ଠାରେ ପ୍ରସନ୍ନ ହୁଅନ୍ତୁ ।"

ଏହାଶୁଣି ଅର୍ଜୁନ କହିଲେ -"ଭଗବାନଙ୍କୁ ପାଇବା ତ ଅତ୍ୟନ୍ତ କଠିନ !"

କନ୍ୟା କହିଲେ "କଠିନ ହେଉ ଅବା ସରଳ ହେଉ, ମୋର ତ ଏହା ଦୃଢ଼ ପ୍ରତିଜ୍ଞା ଯେ, ଯେ ପର୍ଯ୍ୟନ୍ତ ମୋତେ ଅପହାରୀ ଅଚ୍ୟୁତ ଦର୍ଶନ ନ ଦେଇଛନ୍ତି, ସେ ପର୍ଯ୍ୟନ୍ତ ମୋତେ ସେ ଶରଣ ନ ଦେଇଛନ୍ତି, ସେ ପର୍ଯ୍ୟନ୍ତ ମୁଁ ଏହି ପ୍ରକାର ଏହି ଭବନରେ ତପସ୍ୟା କରୁଥିବି । ଅନ୍ୟ କେହି ମୋର ପତି ହୋଇ ନ ପାରନ୍ତି ।"

ଏହା ଶୁଣି ଅର୍ଜୁନ ଭଗବାନଙ୍କ ନିକଟକୁ ଫେରିଆସି କହିଲେ—"ମହାରାଜ ! ଆପଣଙ୍କର ତ ଏବେ ପଞ୍ଚମ ବୃହସ୍ପତି । ଆପଣ ବିବାହ ଉପରେ ବିବାହ କରି ଚାଲନ୍ତୁ । ସେହି କନ୍ୟାଟି ହେଉଛନ୍ତି ଆପଣଙ୍କର ଭାବୀ ପତ୍ନୀ । ଏଥର ବିବାହର ଆୟୋଜନ କରନ୍ତୁ । ଏହି ଇନ୍ଦ୍ରପ୍ରସ୍ଥରେ ହିଁ ଧୁମ୍ ଧାମ୍‌ରେ ବିବାହ ଉତ୍ସବ ହେବ ।"

ଏହାଶୁଣି ଅର୍ଜୁନଙ୍କୁ ଭଗବାନ କହିଲେ—"ଆରେ ଭାଇ ! ମୋର ତ ବିବାହ ହୋଇ ସରିଛି । ଯେତେବେଳେ ଏହାଙ୍କର ଏତେ ଆଗ୍ରହ ତାହାହେଲେ ମୋର ଆପତ୍ତି କରିବାର କିଛି ନାହିଁ । ମୋତେ ତାଙ୍କ ସହିତ ବିବାହ କରିବାକୁ ହିଁ ପଡ଼ିବ । ଚାଲ, ତାଙ୍କୁ ରଥରେ ବସାଅ ।" ଏହା ଶୁଣି ଅର୍ଜୁନ ଠୋ ଠୋ ହୋଇ ହସିଲେ ଓ କାଳିନ୍ଦୀଙ୍କୁ ଯାଇ କହିଲେ—'କଲ୍ୟାଣି ! ତୁମର ମନୋକାମନା ପୂର୍ଣ୍ଣ ହୋଇଛି । ତୁମେ ତୁମ ତପସ୍ୟାର ମୂର୍ତ୍ତିମାନ ଫଳ ପାଇଛ । ଆସ ଏ ରଥ ଉପରେ ବସିଯାଅ ।' ଏହା ଶୁଣି କାଳିନ୍ଦୀ ରଥ ନିକଟକୁ ଆସିଲେ । ସେ ଶ୍ୟାମସୁନ୍ଦରଙ୍କୁ ଦର୍ଶନ କରିବା ମାତ୍ରେ ତାଙ୍କର ଲୋମମୂଳ ଶିହରି ଉଠିଲା । ଭଗବାନଙ୍କ ଆଜ୍ଞା ପାଇ ସେ ରଥ ଉପରେ ଆସି ବସିଲେ । ଏହାପରେ ଭଗବାନ ସୂର୍ଯ୍ୟତନୟାଙ୍କୁ ରଥରେ ବସାଇ ଧର୍ମରାଜ ଯୁଧିଷ୍ଠିରଙ୍କ ସମୀପରେ ଆସି ଉପସ୍ଥିତ ହେଲେ ଓ ତାଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ । ଏହା ଶୁଣିବାମାତ୍ରେ ଧର୍ମରାଜ ଖୁସି ହେଲେ ଓ କହିଲେ—"ମୁଁ ଏହା ଚିନ୍ତା କରୁଥିଲି ଯେ, ଯେପରି ଏଠାରୁ ଭଗବାନଙ୍କୁ ଶକ୍ତ ହସ୍ତରେ ଫେରିଯିବାକୁ ନ ପଡ଼େ । ତେଣୁ ସବକର୍ମର ସାକ୍ଷୀ ଜଗତ୍‌-ପତି ଭଗବାନ ମରୀଚମାଳୀ ମୋର ପ୍ରାର୍ଥନା ଶୁଣିଲେ । ଏହାପରେ ହିଁ ବିବାହକାର୍ଯ୍ୟ ସମ୍ପାଦନ ହେବ ।"

ଭଗବାନ ସଙ୍କୋଚ ପ୍ରକାଶ କରି କହିଲେ—"ଏବେ ତ କାର୍ତ୍ତିକ ମାସ । ଏଥିରେ ବିବାହ ତିଥି ନାହିଁ । ଆଗାମୀ ମାର୍ଗଶିର ଓ ପୌଷ ମାସରେ ମଧ୍ୟ ବିବାହ ନାହିଁ । ତେଣୁ ମାଘ ମାସରେ ଦେଖିବା । ମୋର ଏଠାରେ ରହିବା ବହୁଦିନ ହୋଇଗଲାଣି । ଆପଣଙ୍କର ମଧ୍ୟ ସମସ୍ତ କାର୍ଯ୍ୟ ହୋଇଗଲା । ଏବେ ମୋତେ ଯିବାପାଇଁ ଆଜ୍ଞା ଦିଅନ୍ତୁ ।"

ଭଗବାନଙ୍କ ଯିବା କଥା ଶୁଣି ସମସ୍ତଙ୍କ ମନରେ ଅତ୍ୟନ୍ତ ଦୁଃଖ ହେଲା । କିନ୍ତୁ ତାଙ୍କୁ ତ ବିବାହ କରିବା ଲାଗିଛି, ତେଣୁ ନିଶ୍ଚୟ ଯିବାକୁ ପଡ଼ିବ । ସେ ଧର୍ମରାଜ, ଅର୍ଜୁନ ଓ ଅନ୍ୟାନ୍ୟ ସୁହୃଦଙ୍କର ଅନୁମତି ନେଇ ସାତ୍ୟକି ଆଦିଙ୍କ ସହିତ ଦ୍ୱାରକାପୁରୀ ପ୍ରତ୍ୟାବର୍ତ୍ତନ କଲେ । ନବବଧୂଙ୍କ ସହିତ ଭଗବାନଙ୍କୁ ଦେଖି ସମସ୍ତେ ଅତି ଆନନ୍ଦିତ ହେଲେ । ଶୁଭଲଗ୍ନ ଓ ଶୁଭମୁହୂର୍ତ୍ତ ଆସିବାରୁ ସୁନ୍ଦର ଋତୁ, ପୁଣ୍ୟନକ୍ଷତ୍ର ଦେଖି ଖୁବ୍ ଆଡ଼ମ୍ବର ସହକାରେ ଭଗବାନ କାଳିନ୍ଦୀଙ୍କର ପାଣିଗ୍ରହଣ କଲେ । ସମଗ୍ର ଦ୍ୱାରକାପୁରୀ ଆନନ୍ଦ ଉତ୍ସବରେ ମୁଖରିତ ହୋଇ ଉଠିଲା । ବ୍ରାହ୍ମଣ, ଗାୟକ ଓ ଆଶ୍ରିତଙ୍କୁ ଦାନ ଦିଆଗଲା ।

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ଚତୁର୍ଥ ବିବାହ ଏହିପରି ସୂର୍ଯ୍ୟକନ୍ୟା କାଳିନ୍ଦୀଙ୍କ ସହିତ ସମ୍ପନ୍ନ ହେଲା । ଏବେ ପଞ୍ଚମ ଓ ଷଷ୍ଠ ବିବାହ ଯେପରି ହେଲା, ସେହି ବୃତ୍ତାନ୍ତ ଶ୍ରବଣ କରନ୍ତୁ ।"

## ଛପ୍ପୟ

କୃଷ୍ଣଚନ୍ଦ୍ର ସର୍ବଙ୍କ ଜାଣି ତାଙ୍କି ଅଭିଳାଷା ।
ଅର୍ଜୁନ ଠାରେ ବୁଲିବାକୁ ପୂର୍ଣ୍ଣ କୀହ୍ନି ତହିଁ ଆଶା ॥
ରଥମହଁ ସଙ୍ଗ ବିଠାଇ ସୁଦୃଷ୍ଟିର ଏକ ଦିଂଗ ଆସେ ।
କାଳନ୍ଦୀ ରବିସୁତା ନିରଖି ସବ ଜନ ହରଷାବୟେ ॥
ଆଇ ଦ୍ୱାରକାମହଁ ବର୍ଣ୍ଣି, ଲଭିୟେ ବ୍ୟାହ ଯେହିଂ ସୁର ଅବ ।
ଛଠେଁ ପାଁଚବେ ବ୍ୟାହ ମୋ, ମୁନି ! ବରଣୌଂ ବୃତ୍ତାନ୍ତ ସବ ॥

—※—

# ଭଗବାନଙ୍କର ପଞ୍ଚମ ଓ ଷଷ୍ଠ ବିବାହ

ରାଜାଧିଦେବ୍ୟାସ୍ତନୟାଂ ମିତ୍ରବିନ୍ଦାଂ ପିତୃଷ୍ୱସୁଃ ।
ପ୍ରସହ୍ୟ ହୃତବାନ୍ କୃଷ୍ଣୋ ରାଜନ୍ ରାଜ୍ଞାଂ ପ୍ରପଶ୍ୟତାମ୍ ॥
( ଶ୍ରୀ ଭା: ୧୦ସ୍କ, ୫୮, ୩୧ ଶ୍ଳୋକ )

## ଛପ୍ପୟ

ଦେଶ ଅବନ୍ତି ପ୍ରସିଦ୍ଧ ଭୂପ ଜୟସେନ ବହାଁକେ ।
ପରମ ରମ୍ୟ ବନ, ନଗର, ଶୈଳ, ସର ଦୁର୍ଗ ତହାଁକେ ॥
ହରି ଫୁଆକେ। ବ୍ୟାହ ଭୟୋ। ଜୟସେନ ନୃପତି ତେଂ ।
ବିଂଦ ଔର ଅନୁବିଂଦ ଭୟେ ଦ୍ୱୌ ଖଲ ସୁତ ତିନି ତେଂ ॥
ସୁତା ମିତ୍ର ବିଂଦା ହତୀ, ହରିକେ ମନ ପୈ ଚଢି ଗଈ ।
କିନ୍ତୁ ସୁଯୋଧନ ମାନି ସିଖ, ଭାଇନି ନାହୀଂ କରି ଦଈ ॥

ଭଗବାନ ଯାହାକୁ ବରଣ କରି ନିଅନ୍ତି, ସେ କୃତକୃତ୍ୟ ହୋଇଯାଏ । ସେ ଯାହାକୁ ବରଣ କରିବାକୁ ଚାହାନ୍ତି, ସେହି ହିଁ ତାଙ୍କୁ ପାଇପାରେ । ପ୍ରଭୁଙ୍କ ପ୍ରାପ୍ତିରେ ବଡ଼ ବଡ଼ ବିଘ୍ନ ଉପସ୍ଥିତ ହୁଏ । ଅନ୍ୟ ଲୋକ ଯେ ଆସି ବିଘ୍ନ କରୁଥାନ୍ତି, ତାହା ନୁହେଁ, ନିଜର ବୋଲିଥିବା ଲୋକ ମଧ୍ୟ ଆସି ପଥ ଅବରୋଧ କରନ୍ତି ଓ ଅନେକ ବାଧା ଉପସ୍ଥିତ କରନ୍ତି । କିନ୍ତୁ ଭଗବାନ ସେ ସମସ୍ତ ବାଧା ବିଘ୍ନକୁ ହଟାଇ ଦିଅନ୍ତି । ସେ ସ୍ୱୟଂ ଆସି ସମସ୍ତ ଶତ୍ରୁଙ୍କ ଶିର ଉପରେ ପାଦରଖି ନିଜେ ବରଣ କରି ନିଅନ୍ତି ।

ସୂତ କହିଲେ—"ମୁନିଗଣ ! ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କର କୁନ୍ତୀ, ଶ୍ରୁତଦେବା, ଶ୍ରୁତକୀର୍ତ୍ତି, ଶ୍ରୁତଶ୍ରବା ଓ ରାଜାଧିଦେବୀ ଏହି ପାଞ୍ଚଟି ପିଉସୀ ଥିଲେ । ଏମାନଙ୍କ

ମଧ୍ୟରୁ କୁନ୍ତୀ ମହାରାଜ ପାଣ୍ଡୁଙ୍କୁ ବିବାହ କରିଥିଲେ ଓ ତାଙ୍କର ପୁତ୍ର ଥିଲେ ପଞ୍ଚପାଣ୍ଡବ । ଶ୍ରୁତଦେବା କରୁଷ ଦେଶର ରାଜା ବୃଦ୍ଧଶର୍ମାଙ୍କୁ ବିବାହ କରିଥିଲେ । ତାଙ୍କଠାରୁ ମହାଖଳ ପୁତ୍ର ଦନ୍ତବକ୍ର ଜାତ ହୋଇଥିଲେ, ଯେ କି ପୂର୍ବ ଜନ୍ମରେ ହିରଣ୍ୟାକ୍ଷ ଥିଲେ । ତୃତୀୟ ପିଉସୀ ଶ୍ରୁତକୀର୍ତ୍ତି କେକୟ ଦେଶର ରାଜା ଧୃଷ୍ଟକେତୁଙ୍କୁ ବିବାହ କରିଥିଲେ ଓ ତାଙ୍କର ସନ୍ତର୍ଦ୍ଦନ ଆଦି ପାଞ୍ଚପୁତ୍ର ଓ ଭଦ୍ରା ନାମ୍ନୀ ଏକ କନ୍ୟା ହୋଇଥିଲେ । ଚତୁର୍ଥ ଶ୍ରୁତଶ୍ରବା ଚେଦୀ ଦେଶର ରାଜା ଦମଘୋଷଙ୍କୁ ବିବାହ କରିଥିଲେ ଓ ତାଙ୍କର ପୁତ୍ର ଥିଲେ ଶିଶୁପାଳ । ଯାହାଙ୍କ ସହିତ ରୁକ୍ମିଣୀଙ୍କର ବିବାହ ସ୍ଥିର ହୋଇଥିଲା । ପଞ୍ଚମ ପିଉସୀ ରାଜାଧିଦେବୀ ଅବନ୍ତୀ ଦେଶର ରାଜା ଜୟସେନଙ୍କୁ ବିବାହ କରିଥିଲେ । ତାଙ୍କର ବିନ୍ଦ ଓ ଅନୁବିନ୍ଦ ଏହି ଦୁଇପୁତ୍ର ଥିଲେ ଓ ମିତ୍ରବିନ୍ଦା ନାମକ ଏକ କନ୍ୟା ଥିଲା ।

ଦକ୍ଷିଣ ଦେଶର ଲୋକାଚାର ଏହି ଯେ, ସେଠାରେ ମାମୁଁ ଓ ମାଉସୀର ପୁତ୍ର ଓ କନ୍ୟାଙ୍କ ମଧ୍ୟରେ ପରସ୍ପର ବିବାହ ହୋଇଥାଏ । କେବଳ ସେତିକି ନୁହେଁ, ପିଉସୀପୁଅ ଓ ମାମୁଁ ଝିଅ ପରସ୍ପର ବିବାହ କରିବାର ଅଧିକାର ରହିଛି । ଯେ ପର୍ଯ୍ୟନ୍ତ ଭଉଣୀର ପୁଅ ମିଳୁଥିବ, ସେ ପର୍ଯ୍ୟନ୍ତ ଭାଇ ନିଜର ଝିଅକୁ ଅନ୍ୟ କାହାରି ପୁଅ ସହିତ ବାହା କରିବା ଉଚିତ୍ ନୁହେଁ ବୋଲି ସେମାନଙ୍କର ଲୋକାଚାର । ମାମୁଁଙ୍କ ପୁଅ ମଧ୍ୟ ନିଜ ପିଉସୀ ଝିଅ ସହିତ ବିବାହ କରିବାର ଅଧିକାର ଅଛି । ଅବନ୍ତୀ ନରେଶ ମହାରାଜ ଜୟସେନ ନିଜର ପୁଅ ଓ ଝିଅଙ୍କୁ ପିଲା ଅବସ୍ଥାରୁ ଛାଡ଼ି ପରଲୋକ ହୋଇ ଯାଇଥିଲେ । ତାଙ୍କର ଦୁଇ ପୁତ୍ର ବିନ୍ଦ ଓ ଅନୁବିନ୍ଦ ସେ ପର୍ଯ୍ୟନ୍ତ ପ୍ରାପ୍ତ ବୟସ୍କ ମଧ୍ୟ ହୋଇ ନଥିଲେ । ସେଥିପାଇଁ ଦୁର୍ଯ୍ୟୋଧନ ଅବନ୍ତୀ ରାଜ୍ୟକୁ ନିଜର ଅଧୀନ କରି ନେଇଥିଲେ । ବିନ୍ଦ ଓ ଅନୁବିନ୍ଦଙ୍କୁ ନିଜର ମଣ୍ଡଳିକ ରାଜା ବା କରଦ ରାଜା ରୂପେ ରଖିଥିଲେ । ଏ ଦୁହେଁ ଅଧିକ ସମୟ ଦୁର୍ଯ୍ୟୋଧନଙ୍କ ପାଖରେ ରହି ତାଙ୍କ ଆଜ୍ଞା ପାଳନ କରୁଥିଲେ । ତାଙ୍କର ଶ୍ରେଷ୍ଠ ଭଉଣୀ ମିତ୍ରବିନ୍ଦାଙ୍କର ବିବାହ ବୟସ ହୋଇଯିବାରୁ ସେ ନିଜର ମାମୁଁ ବସୁଦେବଙ୍କର ପୁତ୍ର ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ଦର୍ଶନ କଲେ । ତାଙ୍କର ରୂପ ଲାବଣ୍ୟକୁ ଦେଖି ମିତ୍ରବିନ୍ଦା ମନେ ମନେ ତାଙ୍କୁ ଆତ୍ମସମର୍ପଣ କରି ଦେଲେ । ସେ ପ୍ରତିଦିନ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ ଯେ, ଭଗବାନ ବାସୁଦେବ ମୋର ପତି ହୁଅନ୍ତୁ ।

ଭଗବାନ ତ ଅନ୍ତର୍ଯ୍ୟାମୀ । ସମସ୍ତଙ୍କ ଅନ୍ତର କଥା ତାଙ୍କୁ ଜଣା । ମିତ୍ରବିନ୍ଦାଙ୍କ ସ୍ନେହ ଭାବ ବୁଝିପାରି ସେ ମଧ୍ୟ ମନେ ମନେ ତାଙ୍କୁ ବରଣ କରିନେଲେ । ଅଙ୍ଗରେ ଲଗାଯାଉଥିବା ଅତର ଓ ମନରେ ଉତ୍ପନ୍ନ ପ୍ରେମ ଯେତେ ଲୁଚାଇଲେ ମଧ୍ୟ ତାହା ଲୁଚେ ନାହିଁ । ଏହା ସର୍ବତ୍ର ପ୍ରଚାରିତ ହୋଇଗଲା ଯେ, ଭଗବାନ ମିତ୍ରବିନ୍ଦାଙ୍କ ସହିତ ବିବାହ କରିବାକୁ ଚାହାନ୍ତି । ମିତ୍ରବିନ୍ଦା ଏତେ ସୁନ୍ଦରୀ ଥିଲେ ଯେ, ତାଙ୍କର ଉପମା କାହାରି ସହିତ ଦିଆଯାଇ ପାରୁନଥିଲା । ଦୁର୍ଯ୍ୟୋଧନ ଚାହୁଁଥିଲା, ସେ ମିତ୍ରବିନ୍ଦାଙ୍କୁ ବିବାହ କରିବ । ଏଥିପାଇଁ ସେ ବିନ୍ଦ ଓ ଅନୁବିନ୍ଦଙ୍କୁ କହିଥିଲା—"ଦେଖ, ତୁମେ ତୁମ ଭଉଣୀଙ୍କ ସ୍ୱୟଂବର

କରି, ସେଥିରେ ଶ୍ରୀକୃଷ୍ଣଙ୍କୁ ଆଦୌ ବରଣ କରନାହିଁ । ଏହା ମିତ୍ରବିନ୍ଦାଙ୍କୁ କହିଦେବ ଓ ତାଙ୍କୁ କଡ଼ାକଡ଼ି ଭାବରେ ମନା କରି ଦେବ ।"

ବିନ୍ଦ ଓ ଅନୁବିନ୍ଦ ତାହାର ଅଭିପ୍ରାୟକୁ ବୁଝିଗଲେ ଓ ଚିନ୍ତା କଲେ— "ଦୁର୍ଯ୍ୟୋଧନ ରାଜା, ତେଣୁ ସେ ଯଦି ଆମ ଭଉଣୀକୁ ବିବାହ କରେ, ତାହା ହେଲେ ଖୁବ୍ ଭଲ ହେବ ।" ଏହା ସ୍ଥିର କରି ସେ ନିଜର ଭଉଣୀକୁ ଜୋର ଦେଇ କହିଲେ ଯେ, ଏହି ସ୍ୱୟଂବରରେ ଦୁର୍ଯୋଧନଙ୍କୁ ହିଁ ତୁ ବରଣ କରିବୁ । ଶ୍ରୀକୃଷ୍ଣଙ୍କୁ କଦାପି ବରଣ କରିବୁ ନାହିଁ ।

ସେ କଥା ମିତ୍ରବିନ୍ଦାଙ୍କ ମନକୁ ପାଇଲା ନାହିଁ । ସେ ତ ପ୍ରଥମରୁ ନିଜର ସର୍ବସ୍ୱ ଶ୍ୟାମସୁନ୍ଦରଙ୍କ ଚରଣାରବିନ୍ଦରେ ଅର୍ପଣ କରି ସାରିଛି । ପ୍ରାଣ ଥିବା ପର୍ଯ୍ୟନ୍ତ ସେ ଅନ୍ୟକୁ ଅବା କିପରି ବରଣ କରନ୍ତା । ଏଣେ ସେ ଭାଇଙ୍କ ଆଜ୍ଞାକୁ ଉଲଙ୍ଘନ କରିପାରୁ ନାହିଁ । ତେଣୁ ସେ ବଡ଼ ଧର୍ମ ସଙ୍କଟରେ ପଡ଼ି ଯାଇଥାଏ ଓ ମନେ ମନେ ଭଗବାନଙ୍କୁ ପ୍ରାର୍ଥନା କରୁଥାଏ । ଭଗବାନ୍ ତାହାର ପ୍ରାର୍ଥନା ସ୍ୱୀକାର କରି ସ୍ୱୟମ୍ବର ସଭାକୁ ଗଲେ । ସେ ସ୍ୱୟମ୍ବର ତ ନାମକୁ ମାତ୍ର ହେଉଥିଲା । ପ୍ରଥମରୁହିଁ ସ୍ଥିର ହୋଇଥିଲା ଯେ ମିତ୍ରବିନ୍ଦାର ବିବାହ ଦୁର୍ଯ୍ୟୋଧନ ସହିତ ହେବ । ତେଣୁ ତାହାର ପକ୍ଷପାତୀ ବହୁତ ରାଜା ସୈନ୍ୟ ସାମନ୍ତ ଧରି ଆସିଥିଲେ । ଏଣେ ଭଗବାନ ମଧ୍ୟ ନିଜର ଦିବ୍ୟ ରଥରେ ବସି ଅବନ୍ତୀପୁରକୁ ଆସିଥିଲେ । ସମସ୍ତ ରାଜା ଭଗବାନଙ୍କୁ ଦେଖି ସଚେତ ହୋଇଗଲେ ଓ ନିଜ ନିଜ ଭିତରେ ଆଲୋଚନା କଲେ ଯେ, "ହେଇ ଦେଖ ଆସିଗଲେ ନାରୀଙ୍କୁ ଅପହରଣ କରି ନେଇ ଯିବାଲା ।" ଶିଶୁପାଳର ସ୍ତ୍ରୀକୁ ସେ ବଳପୂର୍ବକ ନେଇ ପଳାଇଥିଲେ । ଶତଧନ୍ୱା ସହିତ ସତ୍ୟଭାମାଙ୍କର ବିବାହ ସ୍ଥିର ହୋଇଥିବା ସତ୍ତ୍ୱେ ତାଙ୍କୁ ମଧ୍ୟ ନିଜ ସ୍ତ୍ରୀ କରି ରଖିଲେ । ଏବେ ଏଠାକୁ ଆସିଛନ୍ତି ସ୍ୱୟମ୍ବର ସଭାରୁ ମିତ୍ରବିନ୍ଦାଙ୍କୁ ହରଣ କରି ନେବେ । ଆମେ ତାହା କଦାପି କରାଇ ଦେବା ନାହିଁ । ଏହା କହି ସମସ୍ତେ ଅସ୍ତ୍ରଶସ୍ତ୍ର ଧରି ସାବଧାନ ହୋଇଗଲେ । ଭଗବାନ୍ ତ କେବଳ ସେଇଥିପାଇଁ ଆସିଥିଲେ । ସେ ମଧ୍ୟ ପ୍ରସ୍ତୁତ ହୋଇ ରହିଲେ ।

ପରଦିନ ଯେତେବେଳେ ମିତ୍ରବିନ୍ଦା ଜୟମାଳା ନେଇ ସଭା ମଧ୍ୟକୁ ଆସିଲେ, ସେତେବେଳେ ଭଗବାନ୍ ତାଙ୍କୁ ଶୀଘ୍ର ଧରି ନେଲେ ଓ ରଥରେ ବସାଇ ନେଇ ଚାଲିଗଲେ । ସମସ୍ତ ରାଜା ଏହା ଦେଖି ଦେଖି ରହିଗଲେ । କେହି କିଛି କରି ପାରିଲେ ନାହିଁ । ଭଗବାନଙ୍କୁ କେହି ଧରି ମଧ୍ୟ ପାରିଲେ ନାହିଁ, ଲଢ଼ିବା ତ ଦୂରର କଥା । ଦ୍ୱାରକାକୁ ଆସି ଭଗବାନ୍ ମିତ୍ରବିନ୍ଦାଙ୍କୁ ବିଧି ବିଧାନରେ ବିବାହ କଲେ ।

ଏହି କଥା ଭଗବାନଙ୍କ ତୃତୀୟ ପିଉସୀ ଶ୍ରୁତକୀର୍ତ୍ତିଙ୍କ କନ୍ୟା ଭଦ୍ରା ଶୁଣିବାକୁ ପାଇଲା । ସେ ମଧ୍ୟ ଭଗବାନଙ୍କ ଅନୁପମ ରୂପକୁ ଦେଖି ତାଙ୍କଠାରେ ଅନୁରକ୍ତ ହେଲା ।

ଏହା ଶୁଣି ସେ ଅତ୍ୟନ୍ତ ପ୍ରସନ୍ନ ହେଲେ ଯେ, ଭଗବାନ ଏବେ ନିଜର ପିଉସୀ
ଭଉଣୀଙ୍କୁ ବିବାହ କରୁ ଅଛନ୍ତି । ଯଦି କେହି ସ୍ୱେଚ୍ଛାରେ ଦେଉ ନାହାନ୍ତି, ତାହାଙ୍କ
ସେ ବଳପୂର୍ବକ ନେଇ ଯାଇ ବିବାହ କରୁଛନ୍ତି । ଯେତେବେଳେ ଏହି କଥା ତ
ଭାଇ ସନ୍ତର୍ଦନ ଆଦିଙ୍କୁ ବିଦିତ ହେଲା, ସେତେବେଳେ ସେମାନେ ଚିନ୍ତାକଲେ
"ଭଗବାନ ତ ସତ୍ୟ ସଂକଳ୍ପ, ସେ ତ ଭକ୍ତ ବତ୍ସଳ, ଯଦି ଆମ ଭଉଣୀ ତାଙ୍କୁ ବି
କରିବାକୁ ଚାହୁଁଛି ଓ ଭଗବାନ ମଧ୍ୟ ତାକୁ ବିବାହ କରିବାକୁ ଇଚ୍ଛା କରୁ
ତାହାହେଲେ ଏହାକୁ ଅନ୍ୟଥା କରିବାର କ୍ଷମତା କାହାର ଅଛି ? ଆମେ ପ୍ରସ
ପୂର୍ବକ ଯଦି ତାଙ୍କୁ ଭଉଣୀଙ୍କୁ ବିବାହ ନ ଦେବା, ତାହାହେଲେ ସେ ବଳପୂର୍ବକ କ
ଅପହରଣ କରି ନେବେ । ତେଣୁ ଏହି ଅବସରରେ କାହିଁକି ତାଙ୍କୁ ବିବାହ ନ ଦେବା
ଆମେ ପ୍ରସନ୍ନତାପୂର୍ବକ ନିଜେ ଭଗବାନଙ୍କ ସହିତ ନିଜ ଭଉଣୀର ବିବାହ କରିବା ।
ଏହାଦ୍ୱାରା ଆମ୍ଭର ମଧ୍ୟ ଖ୍ୟାତି ବଢ଼ିବ । ଭଗବାନଙ୍କର ମଧ୍ୟ ସ୍ୱାଗତ ସତ୍କାର
ସମ୍ମାନ ହେବ ।" ଏହା ଚିନ୍ତାକରି ସେ ଦୁହେଁ ଅତି ଆଦର ପୂର୍ବକ ଶୁଭ ପତ୍ର
ଭଗବାନଙ୍କୁ କେକୟ ଦେଶକୁ ଡକାଇଲେ । ଭଗବାନ ମଧ୍ୟ ବରଯାତ୍ରୀଙ୍କୁ ସଙ୍ଗେ
ନେଇ ଅତି ଆଡ଼ମ୍ବର ସହକାରେ ଶିର ଦେଶରେ ମୁକୁଟ ପିନ୍ଧି ବର ବେଶରେ ସେଠା
ଯାଇ ପହଞ୍ଚିଗଲେ । ସମସ୍ତ କେକୟ ଦେଶବାସୀ ତାଙ୍କର ବହୁ ଆଦର ସତ୍କାର କଲେ
ଶୁଭ ମୁହୂର୍ତ୍ତ ଓ ଶୁଭଲଗ୍ନ ଦେଖି ଭଦ୍ରାଙ୍କ ସହିତ ଭଗବାନଙ୍କର ବିବାହ ହୋଇ
ଏହିପରି ରୁକ୍ମିଣୀ, ଜାମ୍ବବତୀ, ସତ୍ୟଭାମା, କାଳିନ୍ଦୀ, ମିତ୍ରବିନ୍ଦା ଓ ଭଦ୍ରା ଏହି
ପାଟରାଣୀ ଏବେ ଭଗବାନଙ୍କର ହୋଇଗଲେ ।

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କୁ ଏହିପରି ଭଗବା
ଛଅ ବିବାହ ବୃତ୍ତାନ୍ତ ଶୁଣାଇଲି । ଏବେ ତାଙ୍କର ସପ୍ତମ ବିବାହ ଯେପରି ହେଲା,
ପରବର୍ତ୍ତୀ ପ୍ରସଙ୍ଗରେ କହିବି ଓ ଆପଣମାନେ ଶ୍ରଦ୍ଧା ପୂର୍ବକ ତାହା ଶ୍ରବଣ କରିବେ

## ଛପ୍ପୟ

ଗୟେ ସ୍ୱୟଂବର ମାଁହି ଡରେଯା ସୁନି କେଂ ଦୁର୍ଯ୍ୟୋଧନ ।
କନ୍ୟା ଲେ ହରି ଭଗେ ଲଖେ ବିସ୍ମିତ ହ୍ୱୈ ନୃପଗନ ॥
ବିଧିବତ୍ କରେଯା ବିବାହ ଭଈ ବୋ ପଞ୍ଚମ ରାନୀ ।
କେଯା ଭଦ୍ରା ସଙ୍ଗ ବ୍ୟାହ ଭୟୋ ସୋ କହୁଁ କହାନୀ ॥
ଭଦ୍ରା ଫୁଆକୀ ସୁତା, କେକୟ ନୃପ ତନୟା ସୁଧର
ଭାଇନି ଦୀହ୍ନୀଂ ମୁଦିତମନ, ସ୍ୱୀକାରୀ ତବ ଗଦାଧର

୧୨୧୦

—:*:—